# ସମସ୍ୟା ଓ ସମାଧାନ

ଡକ୍ଟର ବିମଳେନ୍ଦୁ ମହାନ୍ତି

ପ୍ରକାଶକ :
**ତଥାଗତ ପବ୍ଲିଶର୍ସ**
୪୭, ମଧୁସୂଦନ ନଗର
ଭୁବନେଶ୍ୱର-୭୫୧୦୦୧

ଅକ୍ଷର ସଜ୍ଜା :
**ବି.ଏନ୍. ଗ୍ରାଫିକ୍ସ**
ଆଇ.ଆର.ସି. ଭିଲେଜ
ଭୁବନେଶ୍ୱର-୭୫୧୦୧୫

ମୁଦ୍ରକ :
**ପ୍ରିଣ୍ଟ-ଟେକ୍ ଅଫ୍‌ସେଟ୍ ପ୍ରା.ଲି.**
ଏଫ୍-୬୬/୧ ଓ ୬୬/୨
ଚନ୍ଦକା ଇଣ୍ଡଷ୍ଟ୍ରିଆଲ ଇଷ୍ଟେଟ୍
ଭୁବନେଶ୍ୱର-୭୫୧୦୨୪

ପ୍ରକାଶ କାଳ :
**ଫେବୃଆରୀ ୨୦୧୮**

**ମୂଲ୍ୟ : ଟ୧୬୦/-**

**SAMASYA O SAMADHANA**

**Dr. Bimalendu Mohanty**

Publisher :
**Tathagata Publishers**
47, Madhusudan Nagar
Bhubaneswar-751001

Type Setting :
**B.N. Graphics**
IRC Village
Bhubaneswar-751015

Printer :
**Print-Tech Offset Pvt. Ltd.**
F-66/1 & 66/2
Chandaka Industrial Estate
Bhubaneswar-751024

Year of Publication :
**February 2018**

**Price : Rs.160/-**



# ଉତ୍ସର୍ଗ

ଭୁବନେଶ୍ୱର ଏ.ଜି. ଅଫିସ୍‌ରେ ୩୯ ବର୍ଷ ଦକ୍ଷତାର ସହିତ କାର୍ଯ୍ୟ କରି ୱେଲଫେୟାର ଅଫିସର ପଦବୀରୁ ଅବସର ଗ୍ରହଣ କରିଥିବା ମୋର ଶାଳକ **ଶ୍ରୀଯୁକ୍ତ ରାମନାରାୟଣ ପଟ୍ଟନାୟକ** ଓ ଶଳାଭାଉଜ **୰ସୌନ୍ଦର୍ଯ୍ୟମଣି ପଟ୍ଟନାୟକଙ୍କୁ** ଏହି ପୁସ୍ତକଟି ସମର୍ପି ଦେଉଛି ।

- ବିମଳେନ୍ଦୁ ମହାନ୍ତି



# ଅଭିମତ

ବୌଦ୍ଧଧର୍ମ ବିଷୟରେ ଅପରିସୀମ ଜ୍ଞାନ ଯୋଗୁଁ ଡକ୍ଟର ବିମଳେନ୍ଦୁ ମହାନ୍ତି ସୁପରିଚିତ। ସେ ଅନେକଙ୍କୁ ଏ ଧର୍ମର ତତ୍ତ୍ୱ ଓ ସ୍ୱାତନ୍ତ୍ର୍ୟ ବିଷୟରେ ସଚେତନ କରିଛନ୍ତି। ଏ ବହିର ପ୍ରଥମ ଚାରୋଟି ପ୍ରବନ୍ଧ ବୌଦ୍ଧଧର୍ମ ବିଷୟରେ। ପ୍ରଥମ ପ୍ରବନ୍ଧ (ଶାନ୍ତି ଓ ସମତାର ଆଲୋକବର୍ତ୍ତିକା)ରେ ସେ ଦର୍ଶାଇଛନ୍ତି ଯେ ବୌଦ୍ଧଧର୍ମରେ ଭଗବାନଙ୍କୁ ବା ଭାଗ୍ୟକୁ ନୁହେଁ, ମଣିଷର ନିଜର କର୍ମ ଓ ଚେତନାକୁ ପ୍ରାଧାନ୍ୟ ଦିଆଯାଏ। ବିଶ୍ୱଶାନ୍ତି ଓ ବିଶ୍ୱପ୍ରେମର ଆବଶ୍ୟକତା ଓ ମଣିଷମାନଙ୍କ ଭିତରେ ଭେଦଭାବର ଅବାନ୍ତରତା ବୌଦ୍ଧଧର୍ମର ବାର୍ତ୍ତା ବୋଲି ଦ୍ୱିତୀୟ ପ୍ରବନ୍ଧରେ କୁହାଯାଇଛି। ଗୁରୁ ପଦ୍ମସମ୍ଭବ ଓ ଅନଗାରିକ ଧର୍ମପାଳଙ୍କ ସହିତ ଆମକୁ ସେ ପରିଚିତ କରାଇଛନ୍ତି ତୃତୀୟ ଓ ଚତୁର୍ଥ ପ୍ରବନ୍ଧରେ।

ପରବର୍ତ୍ତୀ ଆଲେଖ୍ୟଗୁଡ଼ିକରୁ ବର୍ତ୍ତମାନ ସମୟରେ ଦେଶର ବିଭିନ୍ନ ସମସ୍ୟା ବିଷୟରେ ଲେଖକଙ୍କର ବ୍ୟାପକ ଜ୍ଞାନ ଓ ବୁଦ୍ଧିଦୀପ୍ତ ତର୍ଜମାର ପ୍ରମାଣ ମିଳେ। ଏତେ ଗୁଡ଼ିଏ ଅଲଗା ଅଲଗା ବିଷୟରେ ଏତେ ଜ୍ଞାନଥିବା ବ୍ୟକ୍ତି ବିରଳ। ଆମ ରାଜ୍ୟର ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ବିଷୟରେ (ଉତ୍କଳମଣି ଗୋପବନ୍ଧୁ, ଗୌରୀଶଙ୍କର ରାୟ, ମୁକୁନ୍ଦପ୍ରସାଦ ଦାସ, ପ୍ରାଣନାଥ ପଟ୍ଟନାୟକ ଓ ବିଜୁ ପଟ୍ଟନାୟକ) ତାଙ୍କର ବିବରଣୀ ତଥ୍ୟଭିତ୍ତିକ ତଥା ଅନ୍ତର୍ଦୃଷ୍ଟିସମ୍ପନ୍ନ। ସଂକ୍ଷିପ୍ତ ଆଲେଖ୍ୟଟିଏରେ ଗୋପବନ୍ଧୁଙ୍କ ବିଷୟରେ ସବୁ ଜ୍ଞାତବ୍ୟ ତଥ୍ୟ ଦିଆଯାଇଛି। ଆମ ସମୟରେ ଦେଶର ଅନେକ ସମସ୍ୟା ବିଷୟରେ ତାଙ୍କର ଅନୁଶୀଳନ ଅକାଟ୍ୟ ତଥ୍ୟ ଉପରେ ଆଧାରିତ ତଥା ଅନୁଶୀଳନରେ ସମୃଦ୍ଧ। ଦୁର୍ନୀତି ବିଷୟରେ ତାଙ୍କର ଆଲୋଚନାରେ ଉଚ୍ଚତମ ନ୍ୟାୟାଳୟଙ୍କ ରାୟ ତଥା ଅନେକ ଅନ୍ୟାନ୍ୟ ତର୍ଜମା ସ୍ଥାନିତ। କେବଳ ଅମଲାତନ୍ତ୍ର ନୁହେଁ, ଆଇନ୍ ପ୍ରଣୟନ ସଂସ୍ଥା ଓ ନ୍ୟାୟାଳୟମାନଙ୍କରେ ଦୁର୍ନୀତିର ଅନୁପ୍ରବେଶ ତାଙ୍କର ଆଲୋଚନାର ପରିସରଭୁକ୍ତ। ନ୍ୟାୟାଳୟମାନଙ୍କରେ ହଜାର ହଜାର ବିଚାରପତି ପଦବୀ ଖାଲି

ପଡ଼ିଥିବାରୁ ନ୍ୟାୟ ପ୍ରଦାନ ବ୍ୟବସ୍ଥା ବିପର୍ଯ୍ୟସ୍ତ ହୋଇପଡ଼ିଥିବା ଓ ନ୍ୟାୟପ୍ରାର୍ଥୀ ଅସଂଖ୍ୟ ଲୋକେ ଭୋଗୁଥିବା ଅସୁବିଧା ବିଷୟରେ ସେ ଆମକୁ ସଚେତନ କରିଛନ୍ତି । କଳାଧନ ବିଷୟରେ ତାଙ୍କର ବିବରଣୀ ପାଠକକୁ ସଚେତନ ଓ ଉଦ୍‌ବିଗ୍ନ କରେ ।

ଡକ୍ଟର ମହାନ୍ତିଙ୍କର ଆଲୋଚନାର ପରିସର ବ୍ୟାପ୍ତ । ଏତେଗୁଡ଼ିଏ ବିଷୟରେ ତାଙ୍କର ଜ୍ଞାନ ଓ ଅନୁଶୀଳନ ଦକ୍ଷତା ପାଠକଙ୍କୁ ଆଶ୍ଚର୍ଯ୍ୟ କରିବା ସହିତ ଲେଖକଙ୍କ ପ୍ରତି ଅକୁଣ୍ଠ ସମ୍ମାନ ଅର୍ପଣ କରିବାକୁ ଉଦ୍‌ବୁଦ୍ଧ କରିବ । ଆମେ ଜାଣିନଥିଲୁ ଯେ ଆମ ରାଜ୍ୟରେ ୧୦୪ଟି ଶୀତଳ ଭଣ୍ଡାର ମଧ୍ୟରୁ କାର୍ଯ୍ୟକ୍ଷମ ମାତ୍ର ୭ଟି, ଜନସଂଖ୍ୟାର ପ୍ରାୟ ଏକ ତୃତୀୟାଂଶଙ୍କୁ ପିଇବା ପାଣି ଆଣିବା ପାଇଁ ଅଧକିଲୋମିଟର ଚାଲିବାକୁ ପଡ଼େ । ଡକ୍ଟର ମହାନ୍ତି ଉପସ୍ଥାପିତ କରିଥିବା ସମସ୍ୟାଗୁଡ଼ିକର ଆଶୁସମାଧାନ ଆମେ ଆଶା କରିବା ସଙ୍ଗେସଙ୍ଗେ ଆମକୁ ସଚେତନ କରିଥିବାରୁ ତାଙ୍କୁ ଧନ୍ୟବାଦ ଓ କୃତଜ୍ଞତା ଜ୍ଞାପନ କରୁଛୁ ।

ରମାକାନ୍ତ ରଥ

(ରମାକାନ୍ତ ରଥ)

କେନ୍ଦ୍ର ସାହିତ୍ୟ ଏକାଡେମୀର ପୂର୍ବତନ ସଭାପତି

ସରସ୍ୱତୀ ସମ୍ମାନ ବିଜେତା କବି

# ଲେଖକୀୟ

କହିବାରେ ମୋର ସଙ୍କୋଚ ନାହିଁ ଯେ ଖବରକାଗଜରେ କେବଳ ପ୍ରକାଶ ନିମନ୍ତେ ମୁଁ ପ୍ରବନ୍ଧମାନ ଲେଖେ ନାହିଁ। ଦେଶର ବା ରାଜ୍ୟର କୌଣସି ସମସ୍ୟା ମୋତେ ବ୍ୟତିବ୍ୟସ୍ତ କଲେ ମୁଁ ତା ଉପରେ ଲେଖେ। ଏହାର ଉଦ୍ଦେଶ୍ୟ ହେଲା ଯେ ସମାଜରେ ଘଟୁଥିବା ଅନେକ ଘଟଣା ଯାହା ଅଜଣା ରହିଯାଉଛି, ତାହା ସମସ୍ତେ ଜାଣନ୍ତୁ। ମୋ ଲିଖିତ ପ୍ରବନ୍ଧମାନ ବିଭିନ୍ନ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇବା ପରେ ସେଗୁଡ଼ିକ ପାଠକମାନଙ୍କୁ ଚର୍ଚ୍ଚାର ଖୋରାକ ଯୋଗାଇଛି। ସେମାନଙ୍କ ମଧ୍ୟରୁ କେତେକ ମୋତେ ଟେଲିଫୋନ୍ ମାଧ୍ୟମରେ ନୂତନ ପ୍ରବନ୍ଧ ଲେଖିବା ପାଇଁ ପ୍ରବର୍ତ୍ତାଇଥାନ୍ତି ଏବଂ ଆଉ କେତେକ ଲେଖାଗୁଡ଼ିକୁ ସଂକଳନ କରି ପୁସ୍ତକ ପ୍ରକାଶନ କରିବାକୁ ଅନୁରୋଧ କରିଥାନ୍ତି। ଚାକିରିରୁ ଅବସର ପରେ ଚୁପ୍ ବସି ରହିବା ଅପେକ୍ଷା ସଭାସମିତିକୁ ଯାଇ ସେଠାରେ ସମାଜର ହିତ ଉଦ୍ଦେଶ୍ୟରେ କିଛି ମତ ବ୍ୟକ୍ତ କରିବା ଓ ଲେଖାଲେଖି କରିବାକୁ ଉଚିତ ମଣିଛି।

ବର୍ତ୍ତମାନ ସବୁଆଡ଼େ ଚର୍ଚ୍ଚା ହେଉଛି ଯେ ଓଡ଼ିଶାରେ ବୁଦ୍ଧିଜୀବୀମାନଙ୍କ ଉପରେ ସମାଜକୁ ଠିକ୍ ମାର୍ଗରେ ଚଳାଇବା ପାଇଁ ଦିଗ୍‌ଦର୍ଶନ ଦେବାର ଦାୟିତ୍ୱ ରହିଛି। ସମାଜରେ ଯେଉଁ ବହୁବିଧ ସମସ୍ୟା ଅଛି ସେଗୁଡ଼ିକର ସମାଧାନର ପଥପ୍ରଦର୍ଶନ କରିବା ଆମ ସମସ୍ତଙ୍କର ଦାୟିତ୍ୱ। କିନ୍ତୁ ଅନେକ କ୍ଷେତ୍ରରେ ବୁଦ୍ଧିଜୀବୀମାନେ ଅବସର ଜୀବନରେ ଆତ୍ମକୈନ୍ଦ୍ରିକ ଓ ସ୍ୱାର୍ଥସର୍ବସ୍ୱ ହୋଇ ସମୟ ବିତାଇବାକୁ ଶ୍ରେୟ ମନେ କରିଥାନ୍ତି। ଓଡ଼ିଶା ପ୍ରଦେଶ ଗଠନ ପରଠାରୁ ଏଠାରେ ଯେଉଁଳି ଭାବରେ ଲାଞ୍ଚ, ମିଛ, ମାନବିକ ମୂଲ୍ୟବୋଧର ଅବକ୍ଷୟ ଘଟୁଛି ତାହା ଦେଖି ଚୁପ୍ ହୋଇ ବସିବା ମୋତେ ମାନସିକ ଆଘାତ ଦେଇଥାଏ। ସବୁଠାରୁ ଶ୍ରେଷ୍ଠ ବିବେଚିତ ହେଉଥିବା ଶିକ୍ଷକତା, ଚିକିତ୍ସା, ଆଇନ ବ୍ୟବସାୟ ଓ ସାମ୍ବାଦିକତା ଆଦି ବୃତ୍ତିକୁ ଆଉ ପବିତ୍ର ବୋଲି ବିବେଚନା କରାଯାଉନାହିଁ। ସାଧାରଣ ଲୋକ ଭାବୁଛନ୍ତି ଯେ ଏ ରାଜ୍ୟରେ ଶିକ୍ଷିତ ଓ ବିଭିନ୍ନ ପଦପଦବୀରେ ରହିଥିବା ଲୋକମାନଙ୍କ ମଧ୍ୟରୁ ମଣିଷତ୍ୱ ଲୋପ

ପାଇଯାଉଛି। ତେବେ ମଧ୍ୟ କେତେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ପାଇଁ ଏକ ସାମାଜିକ ଓ ସାଂସ୍କୃତିକ ବିପ୍ଳବ ଧୀରେ ଧୀରେ ସଂଗଠିତ ହେଉଛି ବୋଲି ଅନୁଭବ କରି ନିଜର ଯତ୍‌କିଞ୍ଚିତ୍ ସହଯୋଗ ସେଥିରେ ପ୍ରଦାନ କରୁଛନ୍ତି। ଉତ୍କଳ ଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ ଓ ବିଜୁ ପଟ୍ଟନାୟକଙ୍କ ପରେ ଓଡ଼ିଶାରେ ଦୁଇଜଣ ବ୍ୟକ୍ତି, ଯେଉଁମାନଙ୍କୁ ମୁଁ ଆଦର୍ଶ ବ୍ୟକ୍ତି ଭାବେ ପରିଗଣିତ କରେ, ଜଣେ ହେଲେ ଇଷ୍ଟର୍ଣ୍ଣ ମିଡିଆ ପ୍ରାଇଭେଟ୍ ଲିମିଟେଡ୍‌ର ଅଧ୍ୟକ୍ଷ ଓ 'ସମ୍ବାଦ'ର ସମ୍ପାଦକ ଶ୍ରୀଯୁକ୍ତ ସୌମ୍ୟରଂଜନ ପଟ୍ଟନାୟକ ଯିଏ ରାଜ୍ୟସାରା ବୁଲି ବୁଲି ଲୋକଙ୍କର ଦୁଃଖଦୁର୍ଦ୍ଦଶା ଅନୁଭବ କରି 'ଆମ ଓଡ଼ିଶା' ଭଳି ଅନୁଷ୍ଠାନ ଗଢ଼ି ବିଭିନ୍ନ ସମସ୍ୟାରୁ କିଭଳି ନିସ୍ତାର ମିଳିବ ସେଥିପାଇଁ ସାମାଜିକ ସଚେତନତାର ସୂତ୍ରପାତ କରୁଛନ୍ତି ଏବଂ ଦ୍ୱିତୀୟ ବ୍ୟକ୍ତି ହେଲେ ଡକ୍ଟର ଅଚ୍ୟୁତ ସାମନ୍ତ ଯେ କି କିଟ୍ ବିଶ୍ୱବିଦ୍ୟାଳୟ ଓ କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସୋସିଆଲ ସାଇନ୍ସେସ୍ (କିସ୍) ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରି ରାଜ୍ୟକୁ ବିଶ୍ୱଦରବାରରେ ପରିଚିତ କରାଉଛନ୍ତି।

ପୂର୍ବରୁ ମୋର ତିନୋଟି ପ୍ରବନ୍ଧ ସଂକଳନ 'ଆମେ ଓଡ଼ିଆ ଏବଂ ଅନ୍ୟାନ୍ୟ', 'ବ୍ୟକ୍ତି, ସଂସ୍କୃତି ଓ ସାଂପ୍ରତିକୀ' ଏବଂ 'ସମୟର ସ୍ୱରଲିପି' ପ୍ରକାଶ ପାଇ ପାଠକଙ୍କ ଦ୍ୱାରା ଆଦୃତ ହୋଇଛି। ଏଗୁଡ଼ିକର ଦ୍ୱିତୀୟ ସଂସ୍କରଣମାନ ପ୍ରକାଶ ପାଇଲାଣି। ଏହି 'ସମସ୍ୟା ଓ ସମାଧାନ' ସଂକଳନରେ ବୌଦ୍ଧଧର୍ମ, ଓଡ଼ିଶାକୁ ଗଢ଼ି ତୋଳିବାକୁ ଉଦ୍ୟମ କରିଥିବା କିଛି ମହାନ୍ ବ୍ୟକ୍ତି ଓ ସମାଜରେ ଘଟୁଥିବା ସମସାମୟିକ ସମସ୍ୟା ସମ୍ବନ୍ଧୀୟ ପ୍ରବନ୍ଧମାନ ଉପସ୍ଥାପିତ ହୋଇଛି। ମୁଁ କେବଳ ସମସ୍ୟା ସବୁ ଉତ୍‌ଥାପନ କରିନାହିଁ, ତା'ର ସମାଧାନର ଉପାୟ ମଧ୍ୟ ଦର୍ଶାଇଅଛି। ଆଶା, ଏହି ପ୍ରବନ୍ଧଗୁଡ଼ିକ ମଧ୍ୟ ପାଠକମାନଙ୍କ ଦ୍ୱାରା ଆଦୃତ ହେବ।

ଓଡ଼ିଶାର ପୂର୍ବତନ ମୁଖ୍ୟ ଶାସନ ସଚିବ, ବିଶିଷ୍ଟ ସାହିତ୍ୟିକ ପଦ୍ମଭୂଷଣ ଶ୍ରୀଯୁକ୍ତ ରମାକାନ୍ତ ରଥ ଏହି ସଂକଳନର ପ୍ରବନ୍ଧଗୁଡ଼ିକ ପଢ଼ି ତାଙ୍କର 'ଅଭିମତ' ଦେଇଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ। ମୋର ବନ୍ଧୁ ବିଶିଷ୍ଟ ସାହିତ୍ୟିକ ବିଭୁତି ପଟ୍ଟନାୟକ ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶ ପାଇଥିବା ବହୁ ପ୍ରବନ୍ଧ ମଧ୍ୟରୁ ଏହି ପୁସ୍ତକରେ ସଂକଳିତ ୩୪ଟି ପ୍ରବନ୍ଧକୁ ଚୟନ କରିବାରେ ସହାୟତା କରିଥିବାରୁ ତାଙ୍କୁ ମୁଁ ଅଶେଷ ଧନ୍ୟବାଦ ଜ୍ଞାପନ କରୁଛି।

'ସମସ୍ୟା ଓ ସମାଧାନ' ପୁସ୍ତକଟି ପ୍ରକାଶ ପାଇବା ଅବସରରେ କିଟ୍ ଓ କିସ୍‌ର ପ୍ରତିଷ୍ଠାତା ଡକ୍ଟର ଅଚ୍ୟୁତ ସାମନ୍ତ ଏବଂ ଏଭଳି ପ୍ରବନ୍ଧ ସବୁ ଲେଖିବା ଦିଗରେ ଉତ୍ସାହିତ କରିଥିବା ମୋର ଶୁଭେଚ୍ଛୁମାନଙ୍କୁ ମୁଁ କୃତଜ୍ଞତା ଜଣାଉଅଛି। ଏହି ଶୁଭେଚ୍ଛୁମାନଙ୍କ ମଧ୍ୟରେ ମୋର କଲେଜରେ ପଢୁଥିଲାବେଳର ବନ୍ଧୁ ଓ ମୁଗ୍‌ଧ ପାଠକ କୃଷି ବିଭାଗର ପୂର୍ବତନ ଅତିରିକ୍ତ ଶାସନ ସଚିବ ଡକ୍ଟର ରୁଦ୍ରପ୍ରସନ୍ନ ଦ୍ୱିବେଦୀ ଅଗ୍ରଗଣ୍ୟ। ମୋର ସହଧର୍ମିଣୀ ଡକ୍ଟର ବେଦବତୀ ମହାନ୍ତି, ଲବ୍ଧ ପ୍ରତିଷ୍ଠିତ ଲେଖିକା ସୁନନ୍ଦା ପ୍ରଧାନ, ପ୍ରକାଶକ ତଥାଗତ ପବ୍ଲିଶର୍ସ ଓ ଆଡ୍‌ଭୋକେଟ୍ ସରୋଜ କୁମାର ମିଶ୍ର ଏହି ପ୍ରବନ୍ଧ ସଂକଳନର ପ୍ରକାଶନ ନିମନ୍ତେ ଅକ୍ଳାନ୍ତ ପରିଶ୍ରମ କରିଥିବାରୁ ମୁଁ ସେମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି।

ବିମଳେନ୍ଦୁ ମହାନ୍ତି

(ବିମଳେନ୍ଦୁ ମହାନ୍ତି)

# ସୂଚୀ

- ୦ -

# ଶାନ୍ତି ଓ ସମତାର ଆଲୋକବର୍ତ୍ତିକା

ମାନବ ସମାଜରେ ଅନ୍ଧବିଶ୍ୱାସ, ଜାତିବାଦୀ, ରୁଢ଼ିବାଦୀ ବ୍ୟବସ୍ଥା, ଯଜ୍ଞ ଓ ଧର୍ମ ନାମରେ ହିଂସା ଇତ୍ୟାଦି ପ୍ରବଳ ମାତ୍ରାରେ ବଢ଼ି ଚାଲିଥିବା ବେଳେ ଖ୍ରୀ.ପୂ. ୫୪୪ରେ ଉତ୍ତର ଭାରତର କପିଳବାସ୍ତୁ ନଗରର ଲୁମ୍ବିନୀ ଗ୍ରାମରେ ଶାକ୍ୟବଂଶୀ ରାଜା ଶୁଦ୍ଧୋଦନ ଓ ରାଣୀ ମାୟାଦେବୀଙ୍କ ଔରସରୁ ଗୌତମ ବୁଦ୍ଧ ଜନ୍ମଗ୍ରହଣ କରିଥିଲେ। ତାଙ୍କର ବାଲ୍ୟ ନାମ ହେଲା ସିଦ୍ଧାର୍ଥ ଗୌତମ। ମାତ୍ର ୧୬ ବର୍ଷ ବୟସରେ ଯଶୋଧାରା ନାମୀ ଜଣେ ସୁନ୍ଦରୀ ଏବଂ ସମର୍ପିତା ରାଜକୁମାରୀଙ୍କ ସହିତ ତାଙ୍କର ବିବାହ ହେଲା। ଭୋଗବିଳାସ ଓ ପ୍ରାଚୁର୍ଯ୍ୟ ମଧ୍ୟରେ ଥାଇ ମଧ୍ୟ ମଣିଷର ଦୁଃଖ, ରୋଗ, ଶୋକ ଓ ଜରା ମରଣ ତାଙ୍କୁ ବ୍ୟଥିତ କରୁଥାଏ। ତେଣୁ ଏଥିରୁ ମୁକ୍ତି ପାଇବାର ବାଟ ଖୋଜିବା ପାଇଁ ଏକମାତ୍ର ପୁତ୍ର ରାହୁଲ ଜନ୍ମ ହେବା ପରେ ୨୯ ବର୍ଷ ବୟସରେ ସେ ରାଜ୍ୟ ତ୍ୟାଗ କରି ସନ୍ନ୍ୟାସୀ ହୋଇଗଲେ। ଛଅ ବର୍ଷ କାଳ ସାଧୁସନ୍ଥଙ୍କ ସତ୍‌ସଂଗ, ଶାସ୍ତ୍ର ପଠନ ଓ କୃଚ୍ଛ୍ର ସାଧନା କରିବା ପରେ ବି ସେ ଏହାର କୌଣସି ସମାଧାନ ନ ପାଇ ଗଭୀର ଭାବେ ଧ୍ୟାନମଗ୍ନ ହେଲେ। ଦିନେ ସନ୍ଧ୍ୟାରେ ବୁଦ୍ଧଗୟାଠାରେ ନିରଞ୍ଜନା ନଦୀ ତଟରେ ଗୋଟିଏ ଅଶ୍ୱତ୍ଥ ବୃକ୍ଷ ମୂଳରେ ତପସ୍ୟାରତ ଅବସ୍ଥାରେ ସେ ଦିବ୍ୟଜ୍ଞାନ ପ୍ରାପ୍ତ ହେଲେ, ଯାହା ଫଳରେ ସେ ବୁଦ୍ଧ ଭାବେ ପରିଚିତ ହେଲେ। ବୁଦ୍ଧ କୌଣସି ବ୍ୟକ୍ତିର ନାମ ନୁହେଁ, ଯେ ନିଜ ମୁକ୍ତିର ଜ୍ଞାନ ଲାଭ କରି ଅନ୍ୟମାନଙ୍କୁ ମୁକ୍ତିର ବାଟ ଦେଖାଇପାରେ ସେ ହିଁ କେବଳ ବୁଦ୍ଧ। ବୁଦ୍ଧ ଦୀର୍ଘ ୪୫ ବର୍ଷ ଧରି ସମାଜର ବିଭିନ୍ନ ବର୍ଗର ଲୋକଙ୍କୁ ଧର୍ମୋପଦେଶ ପ୍ରଦାନ କରିବା ପରେ ୮୦ ବର୍ଷ ବୟସରେ ଦେହତ୍ୟାଗ କଲେ। ତାଙ୍କ ଶିଷ୍ୟମାନଙ୍କ ମଧ୍ୟରେ ରାଜା, କୃଷକ, ବ୍ରାହ୍ମଣ, ମହିଳା, ଅଛୁଆ, ଧନୀ, ଦରିଦ୍ର, ସାଧୁସନ୍ଥ ଓ ଏପରିକି ଦସ୍ୟୁ ମଧ୍ୟ ଥିଲେ। ଏମାନଙ୍କ ଲାଗି ବୁଦ୍ଧଦେବଙ୍କ ମନରେ କୌଣସି ଭେଦଭାବ ନଥିଲା।

ବୁଦ୍ଧଙ୍କ ମତବାଦ କୌଣସି ପୂଜା ଉପାସନାଭିତ୍ତିକ ଆଧ୍ୟାତ୍ମିକ ମାର୍ଗ ବା ଆଧିଭୌତିକ ରହସ୍ୟମୟ ଅତିମାନସ ଶକ୍ତିକୈନ୍ଦ୍ରିକ ନୁହେଁ, ବରଂ ଏକ ନିଛକ ବାସ୍ତବବାଦୀ ଜୀବନଦର୍ଶନ କହିଲେ ଅତ୍ୟୁକ୍ତି ହେବନାହିଁ। ଏହାର ଜୀବନଦର୍ଶନ ଅତି

ସରଳ ଓ ନିରାଡ଼ମ୍ବର। ପରବର୍ତ୍ତୀ କାଳରେ ଏହି ଦର୍ଶନ ବୌଦ୍ଧଧର୍ମ ଭାବରେ ବିପୁଳ ଆଦୃତି ଲାଭ କରି ଅନେକ ଦେଶର ରାଜଧର୍ମରେ ପରିଣତ ହେଲା ଓ ତତ୍କାଳୀନ ସମାଜରେ ବୈପ୍ଳବିକ ପରିବର୍ତ୍ତନ ଆଣିବାରେ ସମର୍ଥ ହୋଇପାରିଥିଲା। କୌଣସି ପ୍ରକାର ହିଂସାତ୍ମକ ଆଚରଣ ବୁଦ୍ଧଙ୍କ ଉପଦେଶର ପରିପନ୍ଥୀ। ବୌଦ୍ଧ ସଂସ୍କୃତି ଓ ସଭ୍ୟତାରେ ସହନଶୀଳତା ଓ ବୁଝାମଣାର ଚେତନା ଏକ ବହୁପୋଷିତ ଆଦର୍ଶ। ତେଣୁ ବୌଦ୍ଧଧର୍ମର ଦୀର୍ଘ ଅଢ଼େଇ ହଜାର ବର୍ଷର ଇତିହାସରେ ବୌଦ୍ଧ ଧର୍ମାନ୍ତରୀକରଣ ପ୍ରକ୍ରିୟାରେ ଅନ୍ୟାୟ ଅତ୍ୟାଚାରର କୌଣସି ପ୍ରକାର ଅଭିଯୋଗ ଶୁଣାଯାଏ ନାହିଁ କିମ୍ବା ଏଥିପାଇଁ କେବେ ବିନ୍ଦୁଏ ହେଲେ ରକ୍ତପାତ ବି ହୋଇନାହିଁ। ବୌଦ୍ଧଧର୍ମ ଆଜି ପ୍ରଧାନତଃ ସିଂହଳ, ବର୍ମା, ଥାଇଲାଣ୍ଡ, କାମ୍ବୋଡ଼ିଆ, ଲାଓସ୍, ଭିଏତ୍‌ନାମ, ତିବ୍‌ବତ, ଚୀନ୍, ଜାପାନ, ମଙ୍ଗୋଲିଆ, କୋରିଆ, ଫର୍ମୋଜା, ଭାରତ, ବଙ୍ଗଳାଦେଶ, ପାକିସ୍ତାନ ଓ ନେପାଳରେ ଦେଖାଯାଏ। ଭାରତରେ ଲୁପ୍ତପ୍ରାୟ ଏହି ଧର୍ମ ୧୯୫୬ ମସିହା ଅକ୍ଟୋବର ୧୪ ତାରିଖରେ ବାବାସାହେବ ଡକ୍ଟର ଭୀମରାଓ ଆମ୍ବେଦକରଙ୍କର ବୌଦ୍ଧଧର୍ମ ଗ୍ରହଣ ପରେ ପୁନର୍ଜୀବିତ ହୋଇଛି। ବର୍ତ୍ତମାନ ଭାରତରେ ପ୍ରାୟ ଏକ କୋଟି ବୌଦ୍ଧଧର୍ମାବଲମ୍ବୀ ଅଛନ୍ତି। ପୂର୍ବତନ ସୋଭିଏତ୍ ୟୁନିଅନ୍‌ର କେତେକ ଅଞ୍ଚଳରେ, ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ ଓ ପୃଥିବୀର ୧୭୭ଟି ଦେଶରେ ମଧ୍ୟ ଏହି ଧର୍ମ ବ୍ୟାପିବାରେ ଲାଗିଛି। ସମଗ୍ର ପୃଥିବୀରେ ବୌଦ୍ଧଧର୍ମାବଲମ୍ବୀଙ୍କ ସଂଖ୍ୟା ପ୍ରାୟ ୫୫ କୋଟିରୁ ଅଧିକ।

ବିଶ୍ୱର ଅନ୍ୟ ଧର୍ମାଚାର୍ଯ୍ୟମାନେ ହୁଏତ ଈଶ୍ୱରଙ୍କ ଅବତାର ବା ତାଙ୍କ ଦ୍ୱାରା ପ୍ରେରିତ ଦୂତ ବା ଈଶ୍ୱରଙ୍କ ପୁତ୍ର ଥିଲେ, କିନ୍ତୁ ବୁଦ୍ଧ ହେଉଛନ୍ତି ଏକମାତ୍ର ଧର୍ମାଚାର୍ଯ୍ୟ, ଯିଏ ନିଜକୁ ଜଣେ ସାଧାରଣ ମଣିଷଠାରୁ ପୃଥକ୍ କିମ୍ବା ଅଧିକ ନୁହଁନ୍ତି ବୋଲି କହୁଥିଲେ। ସେ ନିଜର ଅନୁଭବ, ସଫଳତା ଓ ସିଦ୍ଧି ଲାଗି ମାନବିକ ବୁଦ୍ଧି ଓ ପ୍ରଚେଷ୍ଟାକୁ ଶ୍ରେୟ ପ୍ରଦାନ କରୁଥିଲେ। ପ୍ରତ୍ୟେକ ମଣିଷର ଅନ୍ତରରେ ବୁଦ୍ଧ ହେବାର ବୀଜ ନିହିତ; ଏଥିପାଇଁ ଇଚ୍ଛା ଓ ଉଦ୍ୟମ କଲେ ଯେ କେହି ବୁଦ୍ଧ ବା ତଥାଗତ ହୋଇପାରିବ। 'ତଥାଗତ'ର ଅର୍ଥ ହେଉଛି ଯିଏ ସତ୍ୟ ଉପଲବ୍ଧି କରିଛି ବା ଯିଏ ସତ୍ୟକୁ ଆବିଷ୍କାର କରିଛି। ଏହି ଶବ୍ଦକୁ ବୁଦ୍ଧ ନିଜ ପ୍ରସଙ୍ଗରେ ଏବଂ ସାଧାରଣ ଅର୍ଥରେ 'ସତ୍ୟ'କୁ ଆବିଷ୍କାର କରି ଜ୍ଞାନାଲୋକ ପାଇପାରିଥିବା ଅନ୍ୟ ସମସ୍ତ 'ବୁଦ୍ଧ'ଙ୍କ ପାଇଁ ମଧ୍ୟ ବ୍ୟବହାର କରିଛନ୍ତି। ବୁଦ୍ଧଙ୍କୁ ପ୍ରାଣକର୍ତ୍ତା ବୋଲି କୁହାଯାଉଥିଲେ ମଧ୍ୟ

ଏହାର ପ୍ରକୃତ ଅର୍ଥ ହେଉଛି, ସେ ମୁକ୍ତିର ମାର୍ଗ ଆବିଷ୍କାର ଓ ପ୍ରଦର୍ଶନ କରିଛନ୍ତି; ମାତ୍ର ସେ ପଥରେ ଆମକୁ ହିଁ ଆଗେଇ ଯିବାକୁ ପଡିବ।

ବୁଦ୍ଧଙ୍କ ପ୍ରତିପାଦିତ ମାର୍ଗରେ ଜାତି, ଭାଗ୍ୟ, କର୍ମଫଳ, ଈଶ୍ୱର ବା ଆତ୍ମା ଇତ୍ୟାଦିର କୌଣସି ସ୍ଥାନ ନାହିଁ। ମଣିଷ ନିଜେ ନିଜର ପ୍ରଭୁ। ତା' ଭାଗ୍ୟ ଉପରେ ଅନ୍ୟ କୌଣସି ଶକ୍ତି ବା ସତ୍ତାର ନିୟନ୍ତ୍ରଣ ନଥାଏ। ସେ କହୁଥିଲେ, "ଅତ୍ତା ହି ଅତ୍ତନୋ ନାଥୋ", ଅର୍ଥାତ୍ ମଣିଷ ନିଜେ ନିଜର ଆଶ୍ରୟ। ବ୍ୟକ୍ତିଗତ ଉଦ୍ୟମ ଓ ବୁଦ୍ଧି ସାହାଯ୍ୟରେ ସମସ୍ତ ପ୍ରକାର ବନ୍ଧନରୁ ନିଜକୁ ମୁକ୍ତ କରିବା ପାଇଁ ମଣିଷର ନିଜସ୍ୱ ଶକ୍ତି ରହିଛି। ସବୁବେଳେ ଜ୍ଞାନ ଓ ପ୍ରଜ୍ଞା ବଳରେ ଦେଖିବା 'ନ୍ୟାନ୍ ଦଶ୍‌ଶନ' ହିଁ ଏହାର ମୂଳତତ୍ତ୍ୱ, ବିଶ୍ୱାସ ବଳରେ ଆସ୍ଥା ପ୍ରକଟ କରିବା ନୁହେଁ। ରୁଢ଼ିବାଦୀ ଓ ଭିନ୍ନମତ ପ୍ରତି ଅସହିଷ୍ଣୁ ଧର୍ମାଚାର୍ଯ୍ୟମାନେ ସମାଜରେ ନିଜର କର୍ତ୍ତୃତ୍ୱ ଜାହିର କରିବା ନିମନ୍ତେ ବିନା ପ୍ରଶ୍ନରେ ନିଜର ମତବାଦ ଓ ପରମ୍ପରାକୁ ଏକମାତ୍ର ସତ୍ୟ ଭାବରେ ଗ୍ରହଣ କରିବାକୁ ବାଧ୍ୟ କରନ୍ତି, କିନ୍ତୁ ବୁଦ୍ଧ କହିଲେ ବିଶ୍ୱାସ କରନା, ବରଂ ନିଜେ ଦେଖ, ଅନୁଭବ କର। ଜୀବନ ଚେତନାର ଏକ ନିରନ୍ତର ପ୍ରବାହ ସ୍ୱରୂପ, ଯାହା ଦୀପଶିଖା ବା ନଦୀର ପ୍ରବାହ ଭଳି କ୍ଷଣକୁକ୍ଷଣ ପରିବର୍ତ୍ତନଶୀଳ। ଏହାକୁ ହିଁ ଲୋକେ ଆତ୍ମା ବୋଲି କହନ୍ତି। ଆତ୍ମା ବା ଏହାର ଅଧୀଶ୍ୱର ଈଶ୍ୱର ବୋଲି କିଛି ଗୋଟାଏ ଶକ୍ତିର କୌଣସି ସ୍ଥିତି ନାହିଁ। ଏହା ପ୍ରକୃତରେ ବ୍ୟକ୍ତିର ଅସ୍ମିତା ଓ ମହତ୍ତ୍ୱକୁ କ୍ଷୁଣ୍ଣ କରିବା ପାଇଁ ଉଦ୍ଦିଷ୍ଟ ଏକ କାଳ୍ପନିକ ମତବାଦ ମାତ୍ର। ଭାଗ୍ୟବାଦୀ ବ୍ୟକ୍ତି କ୍ଷେତ୍ରରେ ସ୍ୱାଧୀନ ଚିନ୍ତନ ବାଧା ପାଏ ଓ ତା'ଠାରେ ପୁରୁଷାର୍ଥ ପରାହତ ହୁଏ। ଭାଗ୍ୟରେ ଥିଲେ ଆପେ ଆପେ ହେବ ଓ ଯେତେ ପୁରୁଷାର୍ଥ କଲେ ବି ଭାଗ୍ୟରେ ନଥିଲେ ହେବନି ଭାବି ସେ କର୍ମବିମୁଖ ହୁଏ। ବ୍ୟକ୍ତି ନିଜର ସ୍ୱତ୍ୱ ଓ ମହତ୍ତ୍ୱକୁ ବୁଝିପାରି ତଦନୁଯାୟୀ ଆଚରଣ କଲେ ତାହା ବିପ୍ଳବକୁ ଜନ୍ମ ଦିଏ। ବିପ୍ଳବ ବ୍ୟକ୍ତିକୁ ନିଜର ଅଧିକାର ପ୍ରତି ସଚେତନ କରେ ଓ ଏକ ନବ୍ୟ ପ୍ରଗତିଶୀଳ ବ୍ୟବସ୍ଥାକୁ ଜନ୍ମ ଦିଏ, ଅନୁପଯୋଗୀ ପୁରାତନକୁ ନଷ୍ଟ କରି ଉପଯୁକ୍ତ ନୂତନ ମାର୍ଗ ଅନ୍ୱେଷଣ କରେ।

ବୁଦ୍ଧ ଯେଉଁଳି ବ୍ୟକ୍ତି ସ୍ୱାଧୀନତାର ଅବତାରଣା କରିଛନ୍ତି, ସେଭଳି ଅନ୍ୟ କୌଣସିଠାରେ ଶୁଣାଯାଏ ନାହିଁ। ଏହି ସ୍ୱାଧୀନତାର ଆବଶ୍ୟକତା ରହିଛି, କାରଣ ବୁଦ୍ଧଙ୍କ ଅନୁଯାୟୀ, ମଣିଷର ମୁକ୍ତି ତା' ସତ୍ୟର ଉପଲବ୍ଧି ଉପରେ ନିର୍ଭର କରେ। କୌଣସି ବାହ୍ୟ ଶକ୍ତିର ଆଜ୍ଞାନୁବର୍ତ୍ତୀ ହେବାଦ୍ୱାରା ବା ଉତ୍ତମ ବ୍ୟବହାର କରିବା

ଫଳରେ ପୁରସ୍କାର ସ୍ୱରୂପ ଏହି ମୁକ୍ତି ମଣିଷକୁ ମିଳେନାହିଁ। ମୃତ୍ୟୁ ପରେ କାହା ଦରବାରରେ ବିଚାର ହୁଏନା କି ସ୍ୱର୍ଗ-ନର୍କ ପ୍ରଦାନ କରାଯାଏନା। ଭଲ-ମନ୍ଦ ଓ ନ୍ୟାୟ-ଅନ୍ୟାୟ ଏସବୁ ସାପେକ୍ଷିକ ଶବ୍ଦ ଯାହାର କୌଣସି ନିର୍ଦ୍ଦିଷ୍ଟ ପରିଭାଷା ନାହିଁ। କର୍ମ ସିଦ୍ଧାନ୍ତ ହେଉଛି କ୍ରିୟା ଓ ପ୍ରତିକ୍ରିୟାର ସିଦ୍ଧାନ୍ତ। ଏହା ଏକ ପ୍ରାକୃତିକ ନିୟମ। ନ୍ୟାୟ ବା ପୁରସ୍କାର ଓ ଶାସ୍ତି ସହିତ ଏହାର କିଛି ଯାଏ ଆସେ ନାହିଁ। ପ୍ରତ୍ୟେକ ଇଚ୍ଛାକୃତ କାର୍ଯ୍ୟ ଏହାର ପ୍ରଭାବ ଜାତ କରେ। ଭଲ କାମ ଦ୍ୱାରା ଭଲ ଫଳ କିମ୍ବା ମନ୍ଦ କାର୍ଯ୍ୟ ଦ୍ୱାରା ମନ୍ଦ ଫଳ ମିଳେ, ହେଲେ ତାହା ନ୍ୟାୟ ନୁହେଁ। ଏହା ଆମେ କରୁଥିବା କାର୍ଯ୍ୟାବଳୀକୁ ଜଗି ବସିଥିବା କୌଣସି ଶକ୍ତି ଦ୍ୱାରା ଦିଆଯାଇଥିବା ପୁରସ୍କାର ବା ଶାସ୍ତି ନୁହେଁ; ବରଂ ତାହା ସେହି କର୍ମର ନିଜସ୍ୱ ଅନ୍ତର୍ନିହିତ ସ୍ୱଭାବ ବା ନିୟମ ଯୋଗୁଁ ହିଁ ସଂଘଟିତ ହୁଏ।

ପୁନର୍ଜନ୍ମକୁ ବୁଦ୍ଧ ସ୍ୱୀକାର କରିଛନ୍ତି। ଦୃଢ଼ ଇଚ୍ଛା, ମାନସିକ ଶକ୍ତି, ଅଭିଳାଷ ଓ ବଞ୍ଚି ରହିବାର କାମନା ଏକ ପ୍ରଚଣ୍ଡ ବଳ ଯାହା କେବଳ ଜୀବନ ନୁହେଁ, ସମ୍ପୂର୍ଣ୍ଣ ଜୀବସତ୍ତା ଓ ଏହା ସାରା ଜଗତକୁ ମଧ୍ୟ ଚଳମାନ କରେ। ଏହା ଜଗତରେ ସବୁଠାରୁ ବଡ଼ ବଳ, ବଡ଼ ଶକ୍ତି। ବୌଦ୍ଧଧର୍ମ ଅନୁଯାୟୀ ଶରୀରର କ୍ରିୟା ବନ୍ଦ ହୋଇଯିବା ପରେ ଏହି ଶକ୍ତି ପ୍ରତିହତ ହୁଏ ନାହିଁ, ବରଂ ଆଉ ଗୋଟିଏ ରୂପରେ ଏହାର ଅଭିବ୍ୟକ୍ତି ଘଟେ ଯାହାକୁ ଆମେ ପୁନର୍ଜନ୍ମ କହୁ। ପ୍ରାଣୀର ଚେତନା ଶକ୍ତି ମୃତ୍ୟୁ ବେଳକୁ ମରିଯାଏନା ବରଂ ତାହା ପୁନର୍ଜନ୍ମ ଭାବେ ଆତ୍ମପ୍ରକାଶ କରେ। ଚେତନାରୁ କାମନା, କାମନାରୁ ଇଚ୍ଛାଶକ୍ତି ଓ ତହିଁରୁ  କର୍ମଶକ୍ତି ଜାତ ହୁଏ। ପ୍ରାଣୀ କୌଣସି ବସ୍ତୁ ବା ସୁଖର ଲାଳସା ରଖିଲେ ତାକୁ ତୃଷ୍ଣା ବା କାମନା କୁହାଯାଏ। କାମନା ଚରିତାର୍ଥ ହେଲେ ବା ନ ହେଲେ ତାହା ବଢ଼ି ବଢ଼ି ଯାଏ। ଏହାଦ୍ୱାରା ଏକ ଭବଚକ୍ର ସୃଷ୍ଟି ହୁଏ, ଯାହା ପୁନର୍ଜନ୍ମର କାରଣ। ତେଣୁ ମଣିଷ ଯଦି ଏହି ତୃଷ୍ଣା ବା କାମନାକୁ ସୃଷ୍ଟି ହେବାକୁ ନ ଦିଏ, ତେବେ ସେ ପୁନର୍ଜନ୍ମରୁ ମଧ୍ୟ ମୁକ୍ତି ପାଇପାରିବ, ଯାହାକୁ ବୁଦ୍ଧ ନିର୍ବାଣ ବୋଲି କହିଛନ୍ତି।

ବୌଦ୍ଧଧର୍ମ ଆତ୍ମା-ପରମାତ୍ମା, ଈଶ୍ୱର ଓ ଭାଗ୍ୟବାଦୀ ସିଦ୍ଧାନ୍ତ ଉପରେ କୁଠାରାଘାତ କରୁଥିବାରୁ ଏହି ବଦ୍ଧମୂଳ ଧାରଣାକୁ ପରିତ୍ୟାଗ କରିପାରୁ ନ ଥିବା ଚିନ୍ତକମାନେ ଅତି ସନ୍ତର୍ପଣରେ ନିରୀଶ୍ୱରବାଦୀ ବୁଦ୍ଧଙ୍କ ନାମରେ ଭଗବାନ ଶବ୍ଦକୁ ଯୋଡ଼ି ବୌଦ୍ଧଧର୍ମକୁ ବୈଦିକ ଧର୍ମର ଏକ ଶାଖା ଭାବରେ ଅଭିହିତ କଲେ। ଭାଗବତ

ଓ ଅଗ୍ନିପୁରାଣ ଭଳି ଗ୍ରନ୍ଥଗୁଡ଼ିକରେ ତଥାଗତ ବୁଦ୍ଧଙ୍କୁ ବୈଦିକ ମତର ସମର୍ଥକ ଓ ଉଦ୍ଧାରକ ଭାବେ ବର୍ଣ୍ଣନା କରି ତାଙ୍କୁ ବିଷ୍ଣୁଙ୍କ ନବମ ଅବତାର ଭାବେ ସ୍ଥାନିତ କରାଯାଇଛି ।

ସଂସାରରେ ବିବିଧ ସେବାମୂଳକ କାର୍ଯ୍ୟକୁ ବି 'ବୌଦ୍ଧ ବା ଖ୍ରୀଷ୍ଟିଆନ୍ ବଦାନ୍ୟତା' ଭଳି ବିଭିନ୍ନ ପ୍ରକାର ମାର୍କା ଦିଆଯାଉଛି । ସେବା ବା ଉଦାରତା କଦାପି ଗୋଷ୍ଠୀନିଷ୍ଠ ବା ସାମ୍ପ୍ରଦାୟିକ ହୋଇନପାରେ । ଏହା ବୌଦ୍ଧ ବା ଖ୍ରୀଷ୍ଟୀୟ ନୁହେଁ, ହିନ୍ଦୁ କି ମୁସଲମାନୀ ନୁହେଁ । ସୁତରାଂ ପ୍ରେମ, ଦାନ, ଦୟା, ସହୃଦୟତା, ସହିଷ୍ଣୁତା, ଧୈର୍ଯ୍ୟ, ବନ୍ଧୁତା, ଅଭିଳାଷ, ବିଦ୍ୱେଷ, ଘୃଣା, ଅଜ୍ଞତା ଓ ପ୍ରତାରଣା ଆଦି ମଣିଷର ତମାମ ଗୁଣ ଦୋଷ ଓ ଭାବପ୍ରବଣତାକୁ କୌଣସି ଗୋଷ୍ଠୀଭୁକ୍ତ କରାଯାଇ ପାରିବ ନାହିଁ; ଏଗୁଡ଼ିକ କୌଣସି ନିର୍ଦ୍ଦିଷ୍ଟ ସମ୍ପ୍ରଦାୟଭୁକ୍ତ ମଧ୍ୟ ନୁହନ୍ତି । ଜଣେ ସତ୍ୟାନ୍ୱେଷୀ ପାଇଁ କୌଣସି ଚିନ୍ତାସ୍ରୋତର ଉତ୍ପତ୍ତିସ୍ଥଳ ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ; ବରଂ ଯାହା ଆବଶ୍ୟକ, ତା' ହେଲା ତାକୁ ଠିକ୍ ଭାବରେ ଦେଖିବା ଓ ବୁଝିବା ।

ଜୀବନ ଓ ଜଗତ ସମ୍ପର୍କରେ ବୁଦ୍ଧଙ୍କ ବସ୍ତୁନିଷ୍ଠ ବିଶ୍ଳେଷଣ ଓ କାମନା ରହିତ ସରଳ ଜୀବନଯାପନରୁ ନିର୍ବାଣ ଲାଭର ପ୍ରଦର୍ଶିତ ମାର୍ଗ ମାନବ ସମାଜର ଆଲୋକବର୍ତ୍ତିକା କହିଲେ ଅତ୍ୟୁକ୍ତି ହେବନି । ବୁଦ୍ଧଙ୍କ ବାର୍ତ୍ତାକୁ ହୃଦୟଙ୍ଗମ ଓ ଅନୁକରଣ କଲେ ମାନବ ସମାଜରେ ଚିରଶାନ୍ତି ସାଙ୍ଗକୁ ସୁଖ ସମୃଦ୍ଧି ପ୍ରତିଷ୍ଠିତ ହୋଇପାରିବ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

*ସମ୍ବାଦ - ୧୪.୫.୨୦୧୪*

# ଗୌତମ ବୁଦ୍ଧଙ୍କ ବିଶ୍ୱପ୍ରେମ ଓ ଆଶୀର୍ବଚନ

ବର୍ତ୍ତମାନ ସାରାବିଶ୍ୱରେ ବୌଦ୍ଧଧର୍ମ ଏକ ଆଦୃତ ଓ ଲୋକପ୍ରିୟ ଧର୍ମ ଭାବରେ ପ୍ରତିଷ୍ଠା ଲାଭ କରିଛି । ସଂପ୍ରତି ବୌଦ୍ଧଧର୍ମାବଲମ୍ବୀମାନେ ପୃଥିବୀର ୧୭୭ଟି ଦେଶରେ ବସବାସ କରୁଛନ୍ତି ଏବଂ ସେମାନଙ୍କ ସଂଖ୍ୟା ପାଖାପାଖି ୫୫ କୋଟି । ଭାରତରେ ସୀମିତ ଥିବା ବୌଦ୍ଧଧର୍ମକୁ ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀରେ କଳିଙ୍ଗଯୁଦ୍ଧ ପରେ ବିଜୟୀ ସମ୍ରାଟ ଅଶୋକ ବିଶ୍ୱର ବିଭିନ୍ନ ଦେଶରେ ପ୍ରଚାର କରାଇଥିଲେ । ପ୍ରଥମେ ରାଜପୁତ୍ର ମହେନ୍ଦ୍ର ଓ ରାଜକନ୍ୟା ସଂଘମିତ୍ରା ଓଡ଼ିଶାର ତାମ୍ରଲିପି ବନ୍ଦରରୁ ଜଳଯାତ୍ରା କରି ସିଂହଳରେ ବୌଦ୍ଧଧର୍ମକୁ ପହଞ୍ଚାଇଥିଲେ । ଏହି ଧର୍ମ ଶାନ୍ତି, ଅହିଂସା ଓ ମୈତ୍ରୀ ଭାବ ଉପରେ ପ୍ରତିଷ୍ଠିତ ବୋଲି ଲୋକମାନେ ହୃଦୟଙ୍ଗମ କରିପାରିଥିଲେ । ସିଂହଳ ବ୍ୟତୀତ ବ୍ରହ୍ମଦେଶକୁ ଅଶୋକ ଓଡ଼ିଶାରୁ ବୌଦ୍ଧ ପ୍ରଚାରକମାନଙ୍କୁ ପଠାଇଥିଲେ । ସେଠାରୁ ବୌଦ୍ଧଧର୍ମ ମାଳେସିଆ ଓ ଇଣ୍ଡୋନେସିଆ ଆଡ଼କୁ ବ୍ୟାପି ଯାଇଥିଲା । ଅଶୋକଙ୍କ ପରେ ଅଜାତଶତ୍ରୁ, ହର୍ଷବର୍ଦ୍ଧନ, କନିଷ୍କଙ୍କ ଭଳି ପରାକ୍ରମୀ ସମ୍ରାଟମାନେ ବୌଦ୍ଧଧର୍ମର ପୃଷ୍ଠପୋଷକତା କରିଥିଲେ । ନାଳନ୍ଦା, ତକ୍ଷଶିଳା, ପୁଷ୍ପଗିରି ଭଳି ବୌଦ୍ଧ ବିଶ୍ୱବିଦ୍ୟାଳୟମାନ ଗଢ଼ି ଉଠିଥିଲା । କୁଶୀନଗର, ସାରନାଥ, ବୁଦ୍ଧଗୟା, ସାଞ୍ଚି, ଉଦୟଗିରି, ଲଳିତଗିରି, ରତ୍ନଗିରି, ଲାଙ୍ଗୁଡ଼ି ପ୍ରଭୃତି ସ୍ଥାନଗୁଡ଼ିକ ପ୍ରସିଦ୍ଧ ବୌଦ୍ଧକ୍ଷେତ୍ର ଭାବରେ ପରିଗଣିତ ହୋଇଥିଲା । ବିଦେଶରୁ ବହୁ ବୌଦ୍ଧ ପଣ୍ଡିତ, ଗବେଷକ ଓ ବୌଦ୍ଧଭିକ୍ଷୁମାନେ ଭାରତର ଏହି ପବିତ୍ର ସ୍ଥଳଗୁଡ଼ିକୁ ପରିଦର୍ଶନରେ ଆସୁଥିଲେ । ହୁଏନ୍‌ସାଂ, ଫାହିୟାନ୍ ଓ ଇତ୍‌ସିଂଙ୍କ ଭଳି ପ୍ରସିଦ୍ଧ ପରିବ୍ରାଜକମାନେ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହୋଇ ଭାରତ ଆଗମନ କରିଥିଲେ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଚୀନ୍ ଦେଶର ଲୋକମାନେ ମହାଯାନ ପନ୍ଥାରେ ବିଶେଷ ଭାବରେ ଆକୃଷ୍ଟ ହୋଇ ଭାରତର ଜନସାଧାରଣଙ୍କ ପ୍ରତି ଅନ୍ତରର ସହିତ ଭକ୍ତି ଓ ଶ୍ରଦ୍ଧା ପ୍ରଦର୍ଶନ କରୁଥିଲେ । ଭାରତ ସ୍ୱର୍ଗଭୂମି ରୂପେ ପରିଗଣିତ ହୋଇଥିଲା । ହଜାର ହଜାର ଧର୍ମପ୍ରାଣ ଲୋକ ହିମାଳୟ ଅତିକ୍ରମ କରି ଚୀନ୍‌ରୁ ଧର୍ମଜ୍ଞାନ ଓ ମୁକ୍ତି ଲାଭ ଆଶାରେ ଭାରତ ପରିଭ୍ରମଣରେ ଆସିବାକୁ ଲାଗିଲେ । ଏହି ପ୍ରକ୍ରିୟା ବହୁ ଶତାବ୍ଦୀ ପର୍ଯ୍ୟନ୍ତ ଲାଗି ରହିଥିଲା । ଫାହିୟାନ୍

ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଏବଂ ହୁଏନ୍‌ସାଂ ଓ ଇତ୍‌ସିଂ ସପ୍ତମ ଶତାବ୍ଦୀରେ ଭାରତ ଭ୍ରମଣରେ ଆସିଥିଲେ। ଏ ତିନିଜଣଙ୍କ ମଧ୍ୟରୁ ହୁଏନ୍‌ସାଂ ଓଡ଼ିଶାର ଏକ ପ୍ରାନ୍ତରରୁ ଅପରପ୍ରାନ୍ତ ଯାଏ ବୁଲି ସମସ୍ତ ବୌଦ୍ଧପୀଠ ପରିଦର୍ଶନ କରିଥିଲେ। ହୁଏନ୍‌ସାଂଙ୍କ ବିବରଣୀରୁ ସୂଚିତ ହୁଏ ଯେ, ପୁଷ୍ପଗିରି ହୀନଯାନ, ମହାଯାନ ନିର୍ବିଶେଷରେ ସମସ୍ତ ବୌଦ୍ଧ ଜନତାର ଆରାଧ୍ୟ ଓ ଉପାସ୍ୟ ଥିଲା। ହୁଏନ୍‌ସାଂ ପୁଷ୍ପଗିରିରେ ଥିବା ସ୍ତୂପ ଓ ଚୈତ୍ୟରେ ବହୁ ଅଦ୍ଭୁତ କ୍ରିୟାକଳାପ ଘଟୁଥିବା ଲିପିବଦ୍ଧ କରିଛନ୍ତି। ପୁଷ୍ପଗିରିର ସ୍ତୂପ ଓ ଚୈତ୍ୟ ଏତେ ବିଶାଳ ଓ ସୁନ୍ଦର ଥିଲା ଯେ, ହୁଏନ୍‌ସାଂ ସେଗୁଡ଼ିକ ମନୁଷ୍ୟ ହସ୍ତରେ ନିର୍ମିତ ହୋଇଥିବା କଥା ବିଶ୍ୱାସ କରିପାରିନଥିଲେ। ସେହି ପୁଣ୍ୟକ୍ଷେତ୍ରର ମହିମାରେ ଆକୃଷ୍ଟ ହୋଇ ଚୀନ୍ ଓ ଆଖପାଖ ଅଞ୍ଚଳର ସହସ୍ର ସହସ୍ର ବୌଦ୍ଧଭକ୍ତ ସେଠାକୁ ଆସି ବୌଦ୍ଧସ୍ତୂପଗୁଡ଼ିକରେ ନିଜ ମନସ୍କାମନା ପୂରଣ ଉଦ୍ଦେଶ୍ୟରେ ପୂଜାର୍ଚ୍ଚନା କରୁଥିଲେ।

ଗୌତମ ବୁଦ୍ଧ ମାନବ ସମାଜର ହିତ ଉଦ୍ଦେଶ୍ୟରେ ବିଶ୍ୱପ୍ରେମ ଓ ବିଶ୍ୱଶାନ୍ତିକୁ ପ୍ରାଧାନ୍ୟ ଦେଉଥିଲେ। ସେ ଚାହୁଁଥିଲେ ଯେ, ସଂସାରର ସମସ୍ତ ପ୍ରାଣୀ ସୁଖୀ ଓ ସୁରକ୍ଷିତ ହୁଅନ୍ତୁ। ସେମାନଙ୍କ ମନ ସବୁବେଳେ ପ୍ରଫୁଲ୍ଲ ରହୁ। ସଂସାରରେ ଯେତେ ପ୍ରାଣୀ ଅଛନ୍ତି, ସେ ଦୁର୍ବଳ ହୁଅନ୍ତୁ କି ସବଳ, ଡେଙ୍ଗା, ବଳିଷ୍ଠ, ମଧ୍ୟମ ବା ଗେଡ଼ା, ସାନ ବା ବଡ଼, ଦୃଶ୍ୟମାନ ହୁଅନ୍ତୁ କି ଅଦୃଶ୍ୟ, ନିକଟରେ ଥା'ନ୍ତୁ ବା ଦୂରରେ, ଯେଉଁମାନେ ଜନ୍ମ ହୋଇଛନ୍ତି ବା ଜନ୍ମ ନେବେ, ସେ ସମସ୍ତେ ପ୍ରତ୍ୟେକେ ହୃଷ୍ଟମନା ହୁଅନ୍ତୁ। କେହି କାହାକୁ ପ୍ରତାରଣା ନ କରନ୍ତୁ। କେହି କାହାକୁ କୌଣସି ପ୍ରକାରେ ହୀନଦୃଷ୍ଟିରେ ନ ଦେଖନ୍ତୁ। କ୍ରୋଧ ଅଥବା ଅସୂୟାର ବଶବର୍ତ୍ତୀ ହୋଇ କେହି କାହାରି ଅନିଷ୍ଟ ଚିନ୍ତା ନ କରନ୍ତୁ। ସେ କହିଥିଲେ, ସମସ୍ତଙ୍କ ଚେତନାରେ ସମଗ୍ର ବିଶ୍ୱ ପ୍ରତି ଅସୀମ ଭଲପାଇବା ଜାଗ୍ରତ ହେଉ, ଏହି ବିଶ୍ୱପ୍ରେମ ବିଶ୍ୱର ଉପର-ତଳ ଓ କୋଣ-ଅନୁକୋଣକୁ ଉଦ୍‌ବୁଦ୍ଧ କରୁ; ସେଥିରେ କୌଣସି ପ୍ରକାର ବାଧା, ଘୃଣା ବା ଶତ୍ରୁତାର ଭାବ ନ ଆସୁ। ଗୌତମଙ୍କ ଉପଦେଶ ଥିଲା, କାହାରି ଭୁଲ୍ କଥାରେ ନ ପଡ଼ି ସୁଗୁଣ ଓ ଅନ୍ତର୍ଦୃଷ୍ଟିସମ୍ପନ୍ନ ହୋଇ ମନୁଷ୍ୟ ଇନ୍ଦ୍ରିୟ ସୁଖ ଓ ଆସକ୍ତିକୁ ପରିତ୍ୟାଗ କରିବା ଉଚିତ୍। ଏହା ଧ୍ରୁବ ସତ୍ୟ ଯେ, ସେ ପ୍ରଦର୍ଶନ କରିଥିବା ମାର୍ଗରେ ପରିଚ୍ଛାଳିତ ହୋଇଥିବା ବ୍ୟକ୍ତି କେବେ ବି ପୁନର୍ଜନ୍ମ ନେବନାହିଁ।

ତଥାଗତ ଉପଦେଶ ଦେଇଥିଲେ, କାହାକୁ ଠକିବ ନାହିଁ, ଘୃଣା କରିବ ନାହିଁ, କାହା ଉପରେ ରାଗିବ ନାହିଁ ବା କାହାପ୍ରତି ଅସନ୍ତୋଷ ଭାବ ରଖିବ ନାହିଁ। ଯେପରି

ମାଆ ଜୀବନ ପଣ କରି ପିଲାକୁ ଜଗିଥାଏ, ସେହିପରି ସମସ୍ତଙ୍କ ଉପରେ ତୁମର ଦୟାପୂର୍ଣ୍ଣ, କୋମଳ, ଅସରନ୍ତି ପ୍ରେମ ଝରୁଥାଉ। ଗୌତମ ମାନବଜାତିର ଐକ୍ୟ ଘୋଷଣା କରିଥିଲେ। ସେ ଜାତି ଅଥବା ସାମ୍ପ୍ରଦାୟିକ ଭେଦଭାବ ବିରୁଦ୍ଧରେ ମତ ପୋଷଣ କରୁଥିଲେ। 'ବାସେଟା ସୂତ୍ର'ରେ ବୁଦ୍ଧ ଦର୍ଶାଇଛନ୍ତି ଯେ ସବୁ ମନୁଷ୍ୟ ଗୋଟିଏ ଜୈବିକ ଗୋଷ୍ଠୀର ଅନ୍ତର୍ଭୁକ୍ତ। ମନୁଷ୍ୟଜାତି ମଧ୍ୟରେ କୌଣସି ପ୍ରକାରର ଭିନ୍ନତା ନାହିଁ। ଯେଉଁ ଜାତି, ବଂଶ ବା ଗୋଷ୍ଠୀର ମଣିଷ ହୁଅନ୍ତୁ ନା କାହିଁକି ରୋଗ, ବାର୍ଦ୍ଧକ୍ୟ ଓ ମୃତ୍ୟୁ ସମସ୍ତଙ୍କ ପାଇଁ ସମାନ। ତେଣୁ ଜାତି, ଗୋଷ୍ଠୀ ବା ବଂଶଗତ କାରଣରୁ ମଣିଷ ଭିତରେ ପ୍ରଭେଦ ରହିବା ଅନୁଚିତ୍। ମଣିଷ ତା'ର କର୍ମ ହେତୁ ପରସ୍ପରଠାରୁ ଭିନ୍ନ, ମାତ୍ର ତା'ର ଜନ୍ମ ହେତୁ ପରସ୍ପରଠାରୁ ଭିନ୍ନ ହେବାର କୌଣସି କାରଣ ନାହିଁ। 'ବାସଲ ସୂତ୍ର'ରୁ ଶିକ୍ଷା ମିଳେ ଯେ, ଜଣେ ବ୍ୟକ୍ତିର ବଂଶ ପରିଚୟରୁ ସେ ନୀଚ ହୁଏ ନାହିଁ; ଜଣେ ବ୍ୟକ୍ତିର ବଂଶ ପରିଚୟରୁ ମଧ୍ୟ ସେ ବ୍ରାହ୍ମଣ ହୁଏ ନାହିଁ। ବ୍ୟକ୍ତି ତା'ର କର୍ମରୁ ଯେପରି ନୀଚ ଜାତି ବୋଲି ପରିଚିତ ହୁଏ; ସେହିପରି ତା'ର କର୍ମରୁ ବ୍ରାହ୍ମଣ ବୋଲି ପରିଚିତ ହୁଏ। ବୁଦ୍ଧ ମଣିଷର ନୈତିକ ଚରିତ୍ର ଉପରେ ଗୁରୁତ୍ୱ ଦେଇଥିଲେ। ଚରିତ୍ର, ଶକ୍ତି ଓ ଦୃଢ଼ତା ଉପରେ ମଣିଷର ବିକାଶ ନିର୍ଭର କରେ। ବୌଦ୍ଧଧର୍ମରେ ପୂଜାପାଠ, ଉପାସନା ବା ଈଶ୍ୱରଙ୍କୁ ପ୍ରାର୍ଥନା ପ୍ରଭୃତି ଗୁରୁତ୍ୱ ପାଇନାହାନ୍ତି। ମଣିଷକୁ ନିଜ ଚେଷ୍ଟା, ସାଧନା ବଳରେ ଉପରକୁ ଉଠିବାକୁ ହେବ। ତଥାଗତଙ୍କର ଉପଦେଶ, ନିଜେ ନିଜର ଆଲୋକ ହୁଅ। ବୁଦ୍ଧଙ୍କର ସ୍ପଷ୍ଟ ନିର୍ଦ୍ଦେଶ, "ଅନେକଙ୍କ ମୁକ୍ତି ପାଇଁ ଚେଷ୍ଟା କର। ଅନେକଙ୍କ ସୁଖ ପ୍ରତି ଧ୍ୟାନ ଦିଅ। ସମସ୍ତଙ୍କ ପ୍ରତି କରୁଣା ରଖ। ସମସ୍ତଙ୍କ ମଙ୍ଗଳ ମନାସୁ ଥାଅ।"

୧୮୮୫ ମସିହାରେ ବୁଦ୍ଧଙ୍କର ଜୀବନୀ ଓ ଦର୍ଶନକୁ ନେଇ ସାର୍ ଏଡ୍‌ୱିନ୍ ଆର୍‌ନଲ୍ଡଙ୍କ 'ଲାଇଟ୍ ଅଫ୍ ଏସିଆ' ପୁସ୍ତକ ପ୍ରକାଶିତ ହେବାପରେ ଏହା ଆମେରିକା, ଇଂଲଣ୍ଡ ଓ ସାରା ପାଶ୍ଚାତ୍ୟ ଜଗତରେ ଶହଶହ ଥର ପୁନର୍ମୁଦ୍ରିତ ହୋଇଛି। ଏଡ୍‌ୱିନ୍‌ଙ୍କ ଲେଖା ଦ୍ୱାରା ପ୍ରଭାବିତ ହୋଇ ଅନଗାରିକ ଧର୍ମପାଳ ଭାରତ ଆସିଥିଲେ ଓ କେତେକ ଭାରତୀୟଙ୍କ ସହାୟତାରେ ଅବହେଳିତ ହୋଇପଡ଼ିଥିବା ବୁଦ୍ଧଗୟା, ସାରନାଥ ପ୍ରଭୃତି ବୌଦ୍ଧଧର୍ମପୀଠଗୁଡ଼ିକୁ ପୁନରୁଦ୍ଧାର କରିଥିଲେ। ଭାରତବର୍ଷରେ ବୌଦ୍ଧଧର୍ମ ଲୁପ୍ତପ୍ରାୟ ହୋଇଯାଇଥିଲେ ମଧ୍ୟ ଭାରତ କେବେ ବୁଦ୍ଧଙ୍କ ଆଦର୍ଶରୁ ବିଚ୍ୟୁତ ହୋଇନାହିଁ। ସ୍ୱାମୀ ବିବେକାନନ୍ଦ, ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର, ମହାତ୍ମା ଗାନ୍ଧୀ, ଜବାହରଲାଲ ନେହେରୁ,

ଆମ ରାଜ୍ୟର ନିତ୍ୟାନନ୍ଦ କାନୁନ୍‌ଗୋ, ଡକ୍ଟର ରାଧାନାଥ ରଥ, କବି ମାୟାଧର ମାନସିଂହ, ପ୍ରଫେସର ନବୀନ କୁମାର ସାହୁ, ଡକ୍ଟର ଜାନକୀ ବଲ୍ଲଭ ପଟ୍ଟନାୟକ, ପ୍ରଫେସର ପ୍ରହଲ୍ଲାଦ ପ୍ରଧାନ, ପ୍ରଫେସର ପ୍ରଭାତ ମୁଖାର୍ଜୀ, ପ୍ରଫେସର କରୁଣାସାଗର ବେହେରା ପ୍ରମୁଖ ବହୁ ବ୍ୟକ୍ତି ବୁଦ୍ଧଙ୍କ ଉପଦେଶ ଉପରେ ଆସ୍ଥା ସ୍ଥାପନ କରିଛନ୍ତି, କିନ୍ତୁ ୧୯୫୬ ମସିହା ଅକ୍ଟୋବର ୧୪ ତାରିଖରେ ଡକ୍ଟର ଭୀମରାଓ ଆମ୍ବେଦକର ନାଗପୁରଠାରେ ବୌଦ୍ଧଧର୍ମରେ ଦୀକ୍ଷିତ ହେଲାପରେ ଧୀରେ ଧୀରେ ବୌଦ୍ଧଧର୍ମାବଲମ୍ବୀଙ୍କ ସଂଖ୍ୟା ଭାରତରେ ବୃଦ୍ଧି ପାଇବାରେ ଲାଗିଛି । ଆଜି ବୌଦ୍ଧଧର୍ମ ଏକ ବିଶ୍ୱଧର୍ମରେ ପରିଣତ ହୋଇଛି ଏବଂ ବୁଦ୍ଧଙ୍କ ବିଶ୍ୱପ୍ରେମ ଓ ମାନବ ସମାଜକୁ ଆଶୀର୍ବଚନ ସବୁଠାରେ ଆଦୃତ ହୋଇଛି ।

*ସମାଜ - ୦୪.୫.୨୦୧୫*

# ଗୁରୁ ପଦ୍ମସମ୍ଭବ ଓ ଓଡ଼ିଶା

ଜୁନ୍ ୧୪ ଓ ୧୫ ତାରିଖ ଭୁଟାନ୍‌ର ପାରୋଠାରେ ଗୁରୁ ପଦ୍ମସମ୍ଭବଙ୍କ ସମ୍ପର୍କରେ ଏକ ଆନ୍ତର୍ଜାତିକ ସମ୍ମିଳନୀ ଆୟୋଜିତ ହୋଇଥିଲା । ଗୁରୁ ପଦ୍ମସମ୍ଭବଙ୍କ ଶୁଭ ଆବିର୍ଭାବ ଦିବସ ଅବସରରେ ଆୟୋଜିତ ଏହି ସମ୍ମିଳନୀର ଆୟୋଜକ ଥିଲେ ସେଣ୍ଟର ଫର୍ ଭୁଟାନ୍ ଷ୍ଟଡିଜ୍ ଓ ଗ୍ରସ ନ୍ୟାସନାଲ୍ ହାପିନେସ୍ ରିସର୍ଚ୍ଚର ନିର୍ଦ୍ଦେଶକ ଦାସୋ କର୍ମା ଉରା । ଅନ୍ୟତମ ଆୟୋଜକ ଥିଲେ ଦିଲ୍ଲୀସ୍ଥିତ 'ସେଣ୍ଟର ଫର୍ ଏସ୍କାଲେସନ୍ ଅଫ୍ ପିସ୍‌ର ସଭାପତି ଡଃ ଅରୁଣ କପୁର । ଆୟୋଜକମାନଙ୍କ ନିମନ୍ତଣ କ୍ରମେ 'ମହାବୋଧି ସୋସାଇଟି ଅଫ୍ ଇଣ୍ଡିଆ'ର ଓଡ଼ିଶା ଶାଖା ତରଫରୁ ମୋତେ ଓ ଅନ୍ୟ ତିନିଜଣ ଡକ୍ଟର ସୌରେନ୍ଦ୍ର କୁମାର ମହାପାତ୍ର, ଆର୍ଯ୍ୟ କୁମାର ଜ୍ଞାନେନ୍ଦ୍ର ଓ ପ୍ରଫେସର ଦୁଃଖୀଶ୍ୟାମ ପଟ୍ଟନାୟକଙ୍କୁ ଏହି ସମ୍ମିଳନୀରେ ଯୋଗଦେବାର ସୁଯୋଗ ମିଳିଥିଲା ।

ମୋ ଦ୍ୱାରା ସମ୍ପାଦିତ ଏବଂ ୨୦୧୨ ମସିହାରେ କିଟ୍‌ର ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ 'ଗୁରୁ ପଦ୍ମସମ୍ଭବ ଅଫ୍ ଉଡ୍‌ଡିୟାନ-ଓଡ଼ିଶା' ଦେଶ ବିଦେଶରେ, ବିଶେଷ କରି ଗୁରୁ ପଦ୍ମସମ୍ଭବଙ୍କ ବିଷୟରେ ଗବେଷଣା କରୁଥିବା ଗବେଷକମାନଙ୍କ ଦୃଷ୍ଟି ଆକର୍ଷଣ କରିଛି । ଏହି ପରିପ୍ରେକ୍ଷୀରେ ପଦ୍ମସମ୍ଭବଙ୍କ ଜନ୍ମ, ଦର୍ଶନ, ସାଧନାସ୍ଥଳ ଏବଂ ଓଡ଼ିଶା ସମେତ ଭାରତର ଅନ୍ୟାନ୍ୟ ସ୍ଥାନଗୁଡ଼ିକରେ ଉପଲବ୍ଧ ଶିଳାଲିପିରେ ଥିବା ତଥ୍ୟ ପ୍ରମାଣର ଉଲ୍ଲେଖ କରି ସେ ସମ୍ବନ୍ଧରେ ଆମ୍ଭେମାନେ ପ୍ରବନ୍ଧ ପାଠ କରିଥିଲୁ । ଗୁରୁ ପଦ୍ମସମ୍ଭବଙ୍କର ଜନ୍ମସ୍ଥାନ 'ଉଡ୍‌ଡିୟାନ' ବୋଲି ଗବେଷକମାନେ ନିଶ୍ଚିତ ହୋଇଥିଲେ ମଧ୍ୟ ଏହାର ଅବସ୍ଥିତି ସମ୍ପର୍କରେ ସେମାନଙ୍କ ମଧ୍ୟରେ ମତଭେଦ ରହିଛି । କେତେକ ଐତିହାସିକ ଯଥା ଇଟାଲିର ଜୀ. ଟୁସି, ଭାରତର ଡି.ସି ସରକାର ଓ ପି.ସି ବାଗ୍‌ଚି ଉଡ୍‌ଡିୟାନ ବର୍ତ୍ତମାନ ପାକିସ୍ଥାନର ସ୍ୱାତ୍ ଉପଦେଶ ବୋଲି କହୁଥିଲା ବେଳେ ତିବ୍‌ବତର ପ୍ରସିଦ୍ଧ ଐତିହାସିକ ଲାମା ତାରାନାଥଙ୍କ ବର୍ଣ୍ଣିତ ଓଡ଼ିଭିଷା ଓ ଉଡ୍‌ଡିୟାନ ଗୋଟିଏ ସ୍ଥାନର ନାମ ଏବଂ ଏହା ବର୍ତ୍ତମାନର ଓଡ଼ିଶା ବୋଲି କହିଛନ୍ତି । ଏହାକୁ ହରପ୍ରସାଦ ଶାସ୍ତ୍ରୀ, ନିକ୍ ଡଗଲାସ୍, ନବୀନ କୁମାର ସାହୁ ଏବଂ ରେଭେନ୍ସା

ବିଶ୍ୱବିଦ୍ୟାଳୟର ଡଃ ଉମାକାନ୍ତ ମିଶ୍ର ତାଙ୍କ ଗବେଷଣା ଭିତ୍ତିରେ ଦୃଢ଼ ସମର୍ଥନ କରିଛନ୍ତି ।

ସମ୍ମିଳନୀରେ ଭୁଟାନର ପ୍ରଧାନମନ୍ତ୍ରୀ ସେରିଙ୍ଗ ଟବ୍‌ଗେ ଅଂଶ ଗ୍ରହଣ କରି ପ୍ରତିନିଧିମାନଙ୍କୁ ଉଦ୍‌ବୋଧନ ଦେଇଥିଲେ । ସେ ଗୁରୁ ପଦ୍ମସମ୍ଭବଙ୍କୁ ଦ୍ୱିତୀୟ ବୁଦ୍ଧ ରୂପେ ବର୍ଣ୍ଣନା କରି ତାଙ୍କ ଦ୍ୱାରା ବିଶ୍ୱବାସୀଙ୍କର ଅଶେଷ ମଙ୍ଗଳ ସାଧିତ ହୋଇଛି ବୋଲି କହିଥିଲେ । ଆମେ ଓଡ଼ିଶାରୁ ଯାଇଥିବା ଚାରିଜଣ ଓ ଭୁଟାନ ଦୂତାବାସରେ ଅବସ୍ଥାପିତ ଭାରତୀୟ ବୈଦେଶିକ ସେବାର ବରିଷ୍ଠ ଅଧିକାରୀ ସୁବ୍ରତ ଦାସଙ୍କ ସହିତ ମିଶି ଓଡ଼ିଶାରୁ ନେଇଥିବା ତାରକସି କାମର କୋଣାର୍କ ଚକ୍ର ଓ ଉତ୍ତରୀୟ ଭୁଟାନ ପ୍ରଧାନମନ୍ତ୍ରୀଙ୍କୁ ପ୍ରଦାନ କରିଥିଲୁ । ତାଙ୍କ ସହିତ ବାର୍ତ୍ତାଳାପ ସମୟରେ ଓଡ଼ିଶା ଏକ ଶାନ୍ତିପ୍ରିୟ ରାଜ୍ୟ ବୋଲି ସେ କହିଥିଲେ ଏବଂ ତାଙ୍କ ଦେଶରୁ ଛାତ୍ରଛାତ୍ରୀମାନେ ଆସି ଏଠାରେ କିଟ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବାରୁ ଆନନ୍ଦ ପ୍ରକାଶ କରିଥିଲେ । ସେ କିଟ୍ ଓ କିସ୍‌ର ପ୍ରତିଷ୍ଠାତା ଡ. ଅଚ୍ୟୁତ ସାମନ୍ତଙ୍କ ଭଳି ବ୍ୟକ୍ତି ବିଶ୍ୱଦରବାରରେ ଓଡ଼ିଶାକୁ ଗର୍ବିତ କରାଇଛନ୍ତି ବୋଲି କହିଥିଲେ ଓ ଓଡ଼ିଶା ଆସିବାକୁ ଆଗ୍ରହ ପ୍ରକାଶ କରିଥିଲେ । ସେ ଗୁରୁ ପଦ୍ମସମ୍ଭବଙ୍କ ସାଧନାପୀଠ ରତ୍ନଗିରି, ଉଦୟଗିରି, ଲଳିତଗିରି ଏବଂ ଲାଙ୍ଗୁଡ଼ି ପାହାଡ଼ର ବୌଦ୍ଧକୀର୍ତ୍ତି ବିଷୟରେ ପଚାରି ବୁଝିଥିଲେ । ମୋ ଦ୍ୱାରା ସମ୍ପାଦିତ 'ଗୁରୁ ପଦ୍ମସମ୍ଭବ ଅଫ୍ ଉଡ୍‌ଡିୟାନ - ଓଡ଼ିଶା' ପୁସ୍ତକ ପୂର୍ବରୁ ପଢ଼ିଥିବା କଥା କହି ଏ ସମ୍ପର୍କରେ ଅଧିକ ଆଲୋଚନା ଓ ଗବେଷଣା ହେବା ଆବଶ୍ୟକ ବୋଲି ସେ କହିଥିଲେ ।

ସାରନାଥରେ ଅବସ୍ଥିତ ସେଣ୍ଟ୍ରାଲ ୟୁନିଭରସିଟି ଫର୍ ହାୟର ତିବ୍‌ବତାନ୍ ଷ୍ଟଡିଜ୍‌ର କୁଳପତି ହେଉଛନ୍ତି ପଦ୍ମଶ୍ରୀ ପ୍ରଫେସର ଜି.ଏନ୍. ସାମାଟେ । ଓଡ଼ିଶାର ଚନ୍ଦ୍ରଗିରିଠାରେ ସେ ତାଙ୍କର ବାଲ୍ୟକାଳ କଟାଇଥିଲେ ଓ ତାଙ୍କ ସହିତ ଆଲୋଚନା ସମୟରେ ସେଠାରେ କେନ୍ଦ୍ରୀୟ ବିଦ୍ୟାଳୟରେ ପାଠ ପଢ଼ିବା ସମୟର ଅନୁଭୂତି ମନେପକେଇ ଓଡ଼ିଆମାନେ ଅତ୍ୟନ୍ତ ସ୍ନେହୀ ଓ ବନ୍ଧୁଭାବାପନ୍ନ ଜାତି ବୋଲି କହି ସେ ଆନନ୍ଦ ପ୍ରକାଶ କରିଥିଲେ । ସେ ପୁନର୍ବାର କହିଥିଲେ ଯେ କିଟ୍ ବିଶ୍ୱବିଦ୍ୟାଳୟରେ ୨୦୧୪ ଫେବୃଆରୀ ୨୫-୨୭ ତାରିଖ ମଧ୍ୟରେ ହୋଇଥିବା ବିଶ୍ୱବିଦ୍ୟାଳୟ କୁଳପତିମାନଙ୍କ ସମ୍ମିଳନୀରେ ସେ ଯୋଗ ଦେଇଥିଲେ । ଏହି ଅବସରରେ ସେ ଓ ଅନ୍ୟ କୁଳପତିମାନେ କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସୋସିଆଲ୍ ସାଇନ୍ସେସ୍ (କିସ୍)ରେ

ପଢୁଥିବା ପ୍ରାୟ ୨୫ ହଜାର ଗରିବ ଆଦିବାସୀ ଛାତ୍ରଛାତ୍ରୀମାନଙ୍କୁ ଦେଖି ବିସ୍ମୟ ଓ ଆନନ୍ଦ ପ୍ରକାଶ କରିଥିଲେ। କିଟ୍ ଓ କିସ୍‌ର ପ୍ରତିଷ୍ଠାତା ଡଃ ଅଚ୍ୟୁତ ସାମନ୍ତଙ୍କ ବ୍ୟକ୍ତିତ୍ୱ, ସଂଗଠନ ଶକ୍ତି ଓ ନିଃସ୍ୱାର୍ଥପର ସେବା ସେମାନଙ୍କୁ ଅଭିଭୂତ କରିଥିଲା ବୋଲି କହିଥିଲେ। କିସ୍ ଭଳି ଅନୁଷ୍ଠାନ ବିଶ୍ୱରେ ଅଦ୍ୱିତୀୟ ବୋଲି ସେ ଦୃଢ଼ତାର ସହିତ କହିଥିଲେ। ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ପଦ୍ମଶ୍ରୀ ଡଃ ଦିନେଶ ସିଂ ସମ୍ମିଳନୀରେ 'ପ୍ରୋକ୍ଲେମିଂ ଦ ଟ୍ରୁଥ୍ ଦି ୱେ ଅଫ୍ ବୁଦ୍ଧ' ବିଷୟରେ ବକ୍ତବ୍ୟ ପ୍ରଦାନ କରିଥିଲେ ଏବଂ ଗୁରୁ ପଦ୍ମସମ୍ଭବଙ୍କର ଜନ୍ମ ସମ୍ପର୍କରେ ଆମେ ଚାରିଜଣ ସନ୍ଦର୍ଭ ଉପସ୍ଥାପନା କରିଥିବା ଅଧିବେଶନରେ ପୌରୋହିତ୍ୟ କରିଥିଲେ। ଭୁଟାନର ସର୍ବୋଚ୍ଚ ନ୍ୟାୟାଳୟର ପୂର୍ବତନ ମୁଖ୍ୟ ବିଚାରପତି ଲ୍ୟୋନ୍‌ପୋ ସୋନମ୍ ଟବ୍‌ଗେ ଏହି ସମ୍ମିଳନୀର ଆଲୋଚନାରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ଏହି ଗସ୍ତର ଅନୁଭୂତି ଏବଂ ଅନ୍ୟ ଦେଶର ପ୍ରତିନିଧିମାନଙ୍କ ସହିତ ଆଳାପ, ଆଲୋଚନାରୁ ଆମର ହୃଦ୍‌ବୋଧ ହୋଇଥିଲା ଯେ ଐତିହାସିକ କୀର୍ତ୍ତିରାଜି ଓ ପ୍ରାକୃତିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ହେଲେ ହେଁ ଆମ ରାଜ୍ୟ ଓଡ଼ିଶାର ଉପଯୁକ୍ତ ପ୍ରଚାର ପ୍ରସାର ହୋଇପାରୁ ନଥିବାରୁ ପର୍ଯ୍ୟଟକମାନଙ୍କୁ ଯଥେଷ୍ଟ ସଂଖ୍ୟାରେ ଆକର୍ଷିତ କରିପାରୁନାହିଁ। ଏ ବିଷୟରେ ରାଜ୍ୟ ପ୍ରଶାସନ ଦୃଷ୍ଟି ଦେବା ନିହାତି ଆବଶ୍ୟକ।

*ସମାଜ - ୧୭.୭.୨୦୧୬*

# ବୌଦ୍ଧଧର୍ମର ପୁନଃ ପ୍ରବର୍ତ୍ତକ ଅନଗାରିକ ଧର୍ମପାଳ

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରୁ ପ୍ରଚଳିତ ଲୋକପ୍ରିୟ ବୌଦ୍ଧଧର୍ମ ଭାରତବର୍ଷରେ ଅଷ୍ଟାଦଶ ଶତାବ୍ଦୀ ବେଳକୁ ଲୁପ୍ତପ୍ରାୟ ହୋଇଯାଇଥିଲା। ବୌଦ୍ଧଧର୍ମର ଦୁର୍ଦ୍ଦଶା ପାଇଁ ତିନୋଟି ମୁଖ୍ୟ କାରଣ ଦର୍ଶାଯାଇପାରେ। ପ୍ରଥମଟି ହେଲା ଆଦିଗୁରୁ ଶଙ୍କରାଚାର୍ଯ୍ୟଙ୍କ ବୌଦ୍ଧଧର୍ମ ପ୍ରତି ବିଦ୍ୱେଷ, ଦ୍ୱିତୀୟଟି ଉତ୍ତର ଭାରତରେ ମୁସଲମାନ୍ ଶାସକଙ୍କ ଦ୍ୱାରା ବୌଦ୍ଧପୀଠର ଧ୍ୱଂସ ସାଧନ ଓ ନିଷ୍ପାପ, ଶାନ୍ତିପ୍ରିୟ, ଧର୍ମପିପାସୁ ବୌଦ୍ଧ ଧର୍ମାବଲମ୍ବୀମାନଙ୍କୁ ଉତ୍ପୀଡ଼ନ ଓ ଅନ୍ୟଟି ହେଲା ବୌଦ୍ଧଧର୍ମରେ ତନ୍ତ୍ରଯାନର ପ୍ରାଧାନ୍ୟ। ଊନବିଂଶ ଶତାବ୍ଦୀରେ ସିଂହଳରେ ବୌଦ୍ଧଧର୍ମ ମଧ୍ୟ ଘୋର ଦୁର୍ଦ୍ଦଶା ଦେଇ ଗତି କରୁଥିଲା।

ବୌଦ୍ଧଧର୍ମକୁ ଅଧଃପତନରୁ ରକ୍ଷା କରିବାକୁ ସିଂହଳର ଯେଉଁ ଜଣେ ବ୍ୟକ୍ତି ବିଶେଷ ବିବ୍ରତ ହେଉଥିଲେ ସେ ହେଉଛନ୍ତି ଡାଭିଡ୍ ହେୱାୱିଥରନା। ତାଙ୍କର ଅନ୍ୟନାମ ହେଲା ଦେବମିତ୍ର ଧର୍ମପାଳ। ତାଙ୍କର ନା ଦେଶ ଅଛି ନା ଘର। କର୍ମ ହିଁ ତାଙ୍କର ପରିଚୟ। ୧୭ ସେପ୍ଟେମ୍ବର ୧୮୬୪ ମସିହାରେ ସିଂହଳରେ ସେ ଜନ୍ମଗ୍ରହଣ କରିଥିଲେ। ଆଜି ତାଙ୍କର ୧୫୨ତମ ଜନ୍ମଦିବସ, ସେହି ଅବସରରେ ଏହି ଆଲେଖ୍ୟ।

ଲଣ୍ଡନର 'ଟେଲିଗ୍ରାଫ୍' ପତ୍ରିକାରେ ପ୍ରଖ୍ୟାତ ସାମ୍ବାଦିକ ଏଡ୍‌ୱିନ୍ ଆର୍‌ନୋଲ୍ଡଙ୍କ ପ୍ରକାଶିତ କେତୋଟି ସନ୍ଦର୍ଭ ଅଧ୍ୟୟନ କରି ଭାରତରେ ବୌଦ୍ଧପୀଠଗୁଡ଼ିକର ଶୋଚନୀୟ ଦୁରବସ୍ଥା ସମ୍ପର୍କରେ ବିବରଣୀ ପାଠ କରି ସେ ବିଚଳିତ ହୋଇଥିଲେ ଏବଂ ନିଜର ଇଂରେଜୀ ଖ୍ରୀଷ୍ଟିୟାନ୍ ନାଁ ଡନ୍ ଡାଭିଡ୍ ହେୱାୱିଥରନାକୁ ପରିବର୍ତ୍ତନ କରି ଧର୍ମପାଳ ହେୱାୱିଥରନା (ଧର୍ମର ଅଭିଭାବକ) ରଖିଥିଲେ।

୧୮୮୯ ମସିହାରେ ଅନଗାରିକ ଧର୍ମପାଳ ଜାପାନ ପରିଦର୍ଶନ କରି ସେଠାରେ ବୌଦ୍ଧଧର୍ମ ପ୍ରତି ଲୋକଙ୍କର ଅନୁରକ୍ତି ଦେଖି ମୁଗ୍ଧ ହୋଇଥିଲେ। ଡିସେମ୍ବର ୧୮୯୦ ମସିହାରେ ଧର୍ମପାଳ ଜଣେ ଜାପାନୀ ବୌଦ୍ଧ ଭିକ୍ଷୁ କୋଜେନ୍ ଗୁନରଥ୍ନ (Kozen Gunarathna)ଙ୍କ ସହିତ ଭାରତ ଫେରି ଆସି ଆଡ୍ୟାରଠାରେ କିଛିଦିନ ବିତାଇବା ପରେ ଜାନୁଆରୀ ୧୮୯୧ ମସିହାରେ ଇସିପଥନ ମୃଗବିହାର, ସାରନାଥ ଓ ତା'ପରେ

ବୁଦ୍ଧଗୟା ପରିଦର୍ଶନରେ ଯାଇଥିଲେ। ପ୍ରଥମଥର ପାଇଁ ଜାନୁଆରୀ ୨୨ ତାରିଖ ୧୮୯୧ ମସିହାରେ ଧର୍ମପାଳ ବୁଦ୍ଧଗୟା ମନ୍ଦିର ଓ ମହାବୋଧି ଦ୍ରୁମ ପରିଦର୍ଶନ କରି ଏହାର ଦୁରବସ୍ଥା ଦେଖି ମର୍ମାହତ ହୋଇଥିଲେ। ବୁଦ୍ଧଗୟା ମନ୍ଦିର ପରିସର ହିନ୍ଦୁ ମହନ୍ତଙ୍କ ଅକ୍ତିଆରରେ ରହିଥିଲା। ଏହି ମନ୍ଦିରକୁ ପ୍ରବେଶ କରିବାକୁ ବୌଦ୍ଧଧର୍ମାବଲମ୍ବୀମାନଙ୍କୁ ବାରଣ କରାଯାଉଥିଲା। ସେଠାରେ ସେ ତିନି ମାସ କାଳ ରହି ଏହି ମନ୍ଦିରର ପୁନରୁଦ୍ଧାର ଓ ସଂରକ୍ଷଣ କାର୍ଯ୍ୟ କରିବା ପାଇଁ ଶପଥ ନେଇଥିଲେ। ଏହି ଉଦ୍ଦେଶ୍ୟକୁ ଫଳବତୀ କରିବା ପାଇଁ ସେ ସିଂହଳ ଫେରି ଆସି ମେ' ୩୧ରେ କଲମ୍ବୋଠାରେ 'ବୁଦ୍ଧଗୟା ମହାବୋଧି ସୋସାଇଟି' ନାମରେ ଏକ ସଂଗଠନ ସ୍ଥାପନ କରିଥିଲେ। ସେ ସାର୍ ଏଡ୍‌ୱିନ୍ ଆର୍‌ନୋଲ୍ଡଙ୍କ 'ଏସିଆର ଆଲୋକ'କୁ ପଢ଼ି ବୌଦ୍ଧଧର୍ମ ସମ୍ପର୍କରେ ବିଶେଷ ଅବଗତ ହୋଇଥିଲେ। ବୁଦ୍ଧଙ୍କ ଶିକ୍ଷାର ସାରାଂଶ ହେଉଛି, ମନ୍ଦ ଗୁଣର ବିନାଶ, ସତ୍ୟ ଏବଂ ପବିତ୍ରତାର ପରିପ୍ରକାଶ, ମନର ସମ୍ପୂର୍ଣ୍ଣ ଶୁଦ୍ଧତା। ବୁଦ୍ଧଙ୍କର ଏହି ଜ୍ଞାନ ସବୁ 'ତ୍ରିପିଟକ' ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି।

୧୮୯୩ ମସିହା ସେପ୍ଟେମ୍ବର ମାସରେ ସେ ଚିକାଗୋଠାରେ ଅନୁଷ୍ଠିତ ହୋଇଥିବା 'ବିଶ୍ୱଧର୍ମ ସମ୍ମିଳନୀ'ରେ ଯୋଗ ଦେଇଥିଲେ। ଏହି ଧର୍ମସଭାରେ ସ୍ୱାମୀ ବିବେକାନନ୍ଦ ୧୧ ସେପ୍ଟେମ୍ବରରେ ହିନ୍ଦୁ ଧର୍ମ ସମ୍ପର୍କରେ ତାଙ୍କ ବକ୍ତବ୍ୟ ରଖି ସାରା ବିଶ୍ୱକୁ ଚମତ୍କୃତ କରିଦେଇଥିଲେ। ୧୮ ସେପ୍ଟେମ୍ବରରେ ଅନଗାରିକ ଧର୍ମପାଳ ତାଙ୍କର ବକ୍ତୃତା 'ବୁଦ୍ଧଙ୍କ ପାଖରେ ବିଶ୍ୱ ଋଣୀ' ପ୍ରଦାନ କରି ସେଠାରେ ଯୋଗଦାନ କରିଥିବା ଅଂଶଗ୍ରହଣକାରୀଙ୍କୁ ଅଭିଭୂତ କରିଦେଇଥିଲେ। ଏହି ଦୁଇଜଣ ନିଜର ବିରଳ ବ୍ୟକ୍ତିତ୍ୱ, ନିଷ୍ଠା, ଜ୍ଞାନ ଓ ସାଧନା ବଳରେ ଭାରତର ସଭ୍ୟତା, ଧର୍ମ ଓ ସଂସ୍କୃତି ଯେ କେତେ ମହାନ ତାହା ବିଶ୍ୱରେ ଲୋକଲୋଚନକୁ ଆଣିପାରିଥିଲେ।

ସେହି ସମ୍ମିଳନୀରେ କେତେକ ଆମେରିକୀୟ ଭଦ୍ରଲୋକ ଓ ମହିଳା ଅନଗାରିକ ଧର୍ମପାଳଙ୍କଠାରୁ ବୌଦ୍ଧଧର୍ମ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ। ଜଣେ ଜର୍ମାନ୍ ବିଦ୍ୱାନ ଡକ୍ଟର ପଲ୍ କାରସ୍ (Dr. Paul Carus) ଆମେରିକାରେ ତତ୍‌କ୍ଷଣାତ୍ 'ମହାବୋଧି ସୋସାଇଟି'ର ଶାଖା ପ୍ରତିଷ୍ଠା କରିଥିଲେ। ୨୬ ସେପ୍ଟେମ୍ବର ୧୮୯୩ ମସିହାରେ ଚାର୍ଲସ୍ ଟି. ଷ୍ଟ୍ରାଉସ୍ (Charles T. Strauss) ଅନଗାରିକ ଧର୍ମପାଳଙ୍କ ଦ୍ୱାରା ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ। ପରେପରେ ବହୁ ଆମେରିକୀୟ ବୌଦ୍ଧଧର୍ମ ଗ୍ରହଣ କରିଥିଲେ।

ସ୍ୱାମୀ ବିବେକାନନ୍ଦ ଧର୍ମପାଳଙ୍କ ବୌଦ୍ଧଧର୍ମ ସମ୍ପର୍କରେ ପ୍ରଦାନ କରିଥିବା ବକ୍ତୃତାକୁ ଭୂୟସୀ ପ୍ରଶଂସା କରିଥିଲେ ଓ ଅନଗାରିକ ଧର୍ମପାଳଙ୍କୁ ବ୍ୟକ୍ତିଗତ ଭାବରେ ବହୁ ଆଦର ଯତ୍ନ ଓ ସମ୍ମାନ ପ୍ରଦାନ କରିଥିଲେ। ସ୍ୱାମୀ ବିବେକାନନ୍ଦ ଓ ଧର୍ମପାଳ ଦରିଦ୍ର ଜନସାଧାରଣଙ୍କୁ ସେମାନଙ୍କ ଅଜ୍ଞତା, ନିରକ୍ଷରତା, ଅଭାବ, ଅନଟନ, ଦାରିଦ୍ର୍ୟ, ଶୋଷଣରୁ ମୁକ୍ତ କରିବାକୁ ଆଜୀବନ ଉଦ୍ୟମ କରିଥିଲେ। ସ୍ୱାମୀ ବିବେକାନନ୍ଦ ପ୍ରତିଷ୍ଠା କରିଥିଲେ ରାମକୃଷ୍ଣ ମିଶନ ଓ ସେହି ଲକ୍ଷ୍ୟ ନେଇ ଅନଗାରିକ ଧର୍ମପାଳ ଭାରତର 'ମହାବୋଧି ସୋସାଇଟି' ସ୍ଥାପନ କରିଥିଲେ। ଅନଗାରିକ ଧର୍ମପାଳ ଭାରତର ମର୍ଯ୍ୟାଦା ବିଶ୍ୱ ଦରବାରରେ କିଭଳି ବୃଦ୍ଧି ପାଇବ, ସେଥିପାଇଁ ସଦାସର୍ବଦା ଚେଷ୍ଟିତ ଥିଲେ। କଲିକତାର କଲେଜ ଷ୍ଟ୍ରିଟ୍‌ରେ ସେ ଗୋଟିଏ ଜମି କିଣି, ସେଠାରେ ୧୯୨୦ ମସିହା ନଭେମ୍ବର ୨୦ ତାରିଖରେ 'ଶ୍ରୀ ଧର୍ମରାଜିକା ବିହାର' ପ୍ରତିଷ୍ଠା କରିଥିଲେ। ସାରନାଥଠାରେ ମୂଳଗନ୍ଧିକୁଟି ବିହାର ନିର୍ମାଣ ସମ୍ପୂର୍ଣ୍ଣ କରି ଏହାର ଉଦ୍‌ଘାଟନ ୧୯୩୧ ନଭେମ୍ବର ୧୧ ତାରିଖରେ କରାଇଥିଲେ।

ଅନଗାରିକ ଧର୍ମପାଳଙ୍କ ଦ୍ୱାରା ଭାରତରେ ମହାବୋଧି ସୋସାଇଟିର ପ୍ରତିଷ୍ଠା ପରେ ଭାରତର ବହୁ ପ୍ରବୀଣ ରାଜନୀତିଜ୍ଞ, ବିଶିଷ୍ଟ ବୁଦ୍ଧିଜୀବୀ, ସମାଜ ସଂସ୍କାରକ ବୁଦ୍ଧଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଖୋଲାଖୋଲି ଭାବରେ ପୃଥିବୀର ବିଭିନ୍ନ ଦେଶରେ ବୌଦ୍ଧଧର୍ମର ପ୍ରଚାରରେ ନିଜକୁ ନିୟୋଜିତ କରିଥିଲେ। ସେମାନଙ୍କ ମଧ୍ୟରେ ପ୍ରମୁଖ ବ୍ୟକ୍ତିମାନେ ହେଲେ ବାବୁ ନରେନ୍ଦ୍ରନାଥ ମୁଖାର୍ଜୀ, ରାୟ ବାହାଦୂର ନରେନ୍ଦ୍ର ନାଥ ସେନ୍, ଡାକ୍ତର ବେଣୀମାଧବ ବରୁଆ, ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର, ସାର୍ ଆଶୁତୋଷ ମୁଖାର୍ଜୀ, ସେଠ୍ ଯୁଗଲ କିଶୋର ବିର୍ଲା, ଡକ୍ଟର ଭୀମ୍‌ରାଓ ଆମ୍ବେଦକର। ୨୯ ଏପ୍ରିଲ ୧୯୩୩ରେ ସାରନାଥଠାରେ ତାଙ୍କର ଦେହାନ୍ତ ହୋଇଥିଲା। ତାଙ୍କ ଶେଷ ଇଚ୍ଛାରେ ସେ ଭାରତରେ ପୁନର୍ଜନ୍ମ ଗ୍ରହଣ କରିବାକୁ ଆଶାପୋଷଣ କରିଛନ୍ତି। ଭାରତ ପ୍ରତି ତାଙ୍କର ମମତା ଏତେ ବେଶୀ ଯେ ତାଙ୍କ ଜନ୍ମଭୂମି ଛାଡ଼ି ସାରନାଥରେ ମରିବାକୁ ସେ ପସନ୍ଦ କରିଥିଲେ।

*ସମ୍ବାଦ - ୧୭.୯.୨୦୧୬*

# ଭାରତରତ୍ନ ସୁଭାଷ ଚନ୍ଦ୍ର ବୋଷ

ସୁଭାଷ ଚନ୍ଦ୍ର ବୋଷଙ୍କ ଭଳି ତ୍ୟାଗବୀର ବିଶ୍ୱରେ ବିରଳ। ଭାରତ ସରକାର ତାଙ୍କର ଦେଶପ୍ରୀତି ଓ ଭାରତକୁ ସ୍ୱାଧୀନ କରିବାକୁ ନିଜ ଜୀବନକୁ ବାଜି ଲଗାଇ ଆଜାଦ୍ ହିନ୍ଦ୍ ଫୌଜ ଗଠନ କରି ଇଂରେଜ ସରକାର ବିରୁଦ୍ଧରେ ଲଢ଼ାଇ କରିଥିବା ଯୋଗୁଁ ବିଳମ୍ବରେ ହେଉ ପଛେ ୧୯୯୨ ମସିହାରେ ତାଙ୍କୁ ଭାରତ ରତ୍ନ ଉପାଧି ପ୍ରଦାନ କଲେ। ଭାରତର ସ୍ୱାଧୀନତା ଆନ୍ଦୋଳନ ସମୟରେ କ୍ଷମତା ଲୋଭ, ଭୋଗ, ସ୍ପୃହାଠାରୁ ବହୁଦୂରରେ ରହି ଦେଶମାତୃକାକୁ ସର୍ବାନ୍ତିକରଣରେ ଭଲପାଇ ତା' ସେବାପାଇଁ ଯେଉଁମାନେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ, ସେମାନଙ୍କ ମଧ୍ୟରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ବାରିହୋଇ ପଡ଼ନ୍ତି।

ଆମେ ଓଡ଼ିଶାବାସୀ ଗର୍ବିତ ଯେ ସୁଭାଷ ବୋଷ ହଜାର ବର୍ଷର ପୁରୁଣା କଟକ ସହରର ଓଡ଼ିଆ ବଜାରରେ ୧୮୯୭ ମସିହା ଜାନୁଆରୀ ୨୩ ତାରିଖରେ ଜନ୍ମଗ୍ରହଣ କରିଥିଲେ। ସୁଭାଷ ବୋଷଙ୍କର ଜୀବନର ପ୍ରଥମ ୧୬ ବର୍ଷ କାଳ କଟକ ସହରରେ କଟିଥିଲା। କଟକ ସହରର ପରିବେଶ, କଳା, ସଂସ୍କୃତି, ଲୋକଙ୍କ ସରଳତା, ଚାଲିଚଳନ ତାଙ୍କୁ ବହୁଭାବରେ ପ୍ରଭାବିତ କରିଥିଲା। ଓଡ଼ିଆ ବଜାର ଅଞ୍ଚଳରେ ବହୁ ମୁସଲମାନ ସମ୍ପ୍ରଦାୟର ଲୋକ ରହୁଥିଲେ (ଆଜି ମଧ୍ୟ ରହୁଛନ୍ତି)। ସୁଭାଷ ବୋଷଙ୍କର ବହୁ ମୁସଲିମ୍ ସହପାଠୀ ଥିଲେ, ତେଣୁ ସେ ପିଲାଦିନୁ ମୁସଲମାନମାନଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ। କଟକ ସହର ହେଉଛି ଭାଇଚାରାର ସହରେ, ଯାହା ଆଜି ମଧ୍ୟ ବଜାୟ ରହିଛି ଓ ସୁଦୃଢ଼ ହୋଇଛି।

ଦେଶବାସୀଙ୍କ ସେବାରେ ନିଜକୁ ନିୟୋଜିତ କରିବାକୁ ସୁଭାଷ ବୋଷ ବାଲ୍ୟକାଳରୁ ପ୍ରସ୍ତୁତି ଆରମ୍ଭ କରିଥିଲେ। ଦେଶପ୍ରେମର ନିଶା ସୁଭାଷଙ୍କୁ ଏପରି ଘାରିଥିଲା ଯେ ବ୍ରିଟିଶ୍ କବଳରୁ ଭାରତକୁ ମୁକ୍ତକରି ସ୍ୱାଧୀନ ଭାରତରେ ଭାଷା, ଜାତି, ଧର୍ମ ନିର୍ବିଶେଷରେ ସମସ୍ତେ କିଭଳି ଏକ ସୁଖକର ଜୀବନଯାପନ କରିବେ ସେହି ସ୍ୱପ୍ନରେ ସେ ଦିବାନିଶି ବିଭୋର ଥିଲେ। ଭାରତରେ ସାଂପ୍ରଦାୟିକ ବିଭେଦ ଓ ଜାତିଭେଦର କଳଙ୍କ କିଭଳି ମୂଳପୋଛ ହେବ ସେଥିପାଇଁ ନେତାଜୀ କାର୍ଯ୍ୟରତ

ଥିଲେ। ସ୍ୱାମୀ ବିବେକାନନ୍ଦଙ୍କ ଜୀବନୀ ଓ କାର୍ଯ୍ୟାବଳୀ ତାଙ୍କୁ ଅଶେଷ ପ୍ରେରଣା ଯୋଗାଇଥିଲା। ମାନବ ସେବା ହେଉଛି ମାଧବ ସେବା ଏବଂ ଏହା ଜୀବନର କାମ୍ୟ ହେବା ଉଚିତ୍ ବୋଲି ସ୍ୱାମୀ ବିବେକାନନ୍ଦ ଯେଉଁ ଆଦର୍ଶ ସୃଷ୍ଟି କରିଥିଲେ ସୁଭାଷ ବୋଷଙ୍କୁ ଦେଶସେବା କରିବାପାଇଁ ତାହା ପ୍ରେରଣା ଯୋଗାଇଥିଲା। ଭାରତର ସ୍ୱାଧୀନତା ସଂଗ୍ରାମରେ ମହାତ୍ମା ଗାନ୍ଧିଙ୍କ ଅବଦାନ ଓ ତ୍ୟାଗ ସହିତ ଯେଉଁ ଦ୍ୱିତୀୟ ବ୍ୟକ୍ତିଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବ ତାହା ହେବ ସୁଭାଷ ଚନ୍ଦ୍ର ବୋଷଙ୍କର।

୧୯୧୯ ମସିହାରେ ସୁଭାଷ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇ ଆଇସିଏସ୍ ପରୀକ୍ଷା ପାଇଁ ପ୍ରସ୍ତୁତି ଚଳାଇଥିଲେ। ସେତେବେଳେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଗବେଷଣା କରୁଥିବା ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ସହିତ ତାଙ୍କର ବନ୍ଧୁତା ସ୍ଥାପନ ହୋଇଥିଲା। ୧୯୨୦ ମସିହା ଜୁଲାଇ ମାସରେ ଲଣ୍ଡନରେ ଅନୁଷ୍ଠିତ ହୋଇଥିବା ଆଇସିଏସ୍ ପରୀକ୍ଷାରେ ସୁଭାଷ ଚତୁର୍ଥ ସ୍ଥାନ ଅଧିକାର କରିବାର ଗୌରବ ଅର୍ଜନ କରିଥିଲେ। ସେହି ସମୟରେ ମୋହନଦାସ କରମଚାନ୍ଦ ଗାନ୍ଧି ବ୍ରିଟିଶ୍ ସରକାରଙ୍କ ପଦପଦବୀ ପାଇଥିବା ସମସ୍ତ ଭାରତୀୟଙ୍କୁ ସେଗୁଡ଼ିକୁ ବର୍ଜନ କରିବା ପାଇଁ ଆହ୍ୱାନ ଦେଇଥିଲେ। ଏହାର ପ୍ରଭାବ ଦେଶପ୍ରେମୀ ସୁଭାଷଙ୍କ ଉପରେ ପଡ଼ିଥିଲା। ଛାତ୍ରାବସ୍ଥାରୁ ଦେଶସେବାର ସ୍ୱପ୍ନରେ ବିଭୋର ସୁଭାଷ ବୋଷ ଜୀବନରେ ଧନ, କ୍ଷମତା, ପଦପଦବୀ, ସୁଖସ୍ୱଚ୍ଛନ୍ଦତା ଲାଭ କରିବାର ବିରାଟ ପ୍ରଲୋଭନକୁ ଜଳାଞ୍ଜଳି ଦେଇ ଆଇସିଏସ୍ ପଦବୀରୁ ଇସ୍ତଫା ପ୍ରଦାନ କରି ଭାରତକୁ ପ୍ରତ୍ୟାବର୍ତ୍ତନ କଲେ। ସୁଭାଷ ଯେଉଁ ଜାହାଜରେ ଆସୁଥିଲେ ସେହି ଜାହାଜରେ ଥିଲେ ନୋବେଲ ପୁରସ୍କାର ବିଜେତା ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର। ରବୀନ୍ଦ୍ରନାଥଙ୍କ ପରାମର୍ଶକ୍ରମେ ୧୯୨୧ ମସିହା ଜୁଲାଇ ୧୬ ତାରିଖରେ ବମ୍ବେରେ ପହଞ୍ଚିବା ଦିନ ହିଁ ସୁଭାଷ ଗାନ୍ଧିଜୀଙ୍କୁ ସାକ୍ଷାତ କଲେ ଓ ଭାରତର ସ୍ୱାଧୀନତା ଆନ୍ଦୋଳନ ପରିପ୍ରେକ୍ଷୀରେ କଂଗ୍ରେସର ଆଭିମୁଖ୍ୟ ତଥା କର୍ମପନ୍ଥା ବିଷୟରେ ଆଲୋଚନା କଲେ। ଗାନ୍ଧିଜୀ ସୁଭାଷଙ୍କୁ କଲିକତାରେ ପହଞ୍ଚି ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ସହ ସାକ୍ଷାତ କରିବାକୁ ପରାମର୍ଶ ଦେଇଥିଲେ। ଚିତ୍ତରଞ୍ଜନ ଦାସ ଥିଲେ ସୁଭାଷଙ୍କ ରାଜନୈତିକ ଆଦର୍ଶ। ତାଙ୍କର ପ୍ରେରଣାଦାତାମାନଙ୍କ ମଧ୍ୟରେ ଅନ୍ୟ ଦୁଇଜଣ ଥିଲେ ବାଲଗଙ୍ଗାଧର ତିଲକ ଓ ଅରବିନ୍ଦ ଘୋଷ। ସୁଭାଷ କଂଗ୍ରେସରେ ଯୋଗଦାନ କଲେ। କଂଗ୍ରେସରେ ବିଭିନ୍ନ ଦାୟିତ୍ୱ ଅତି ଦକ୍ଷତାର ସହିତ ତୁଲାଇଥିଲେ। ସାଧାରଣ ଜନତା ମଧ୍ୟ ତାଙ୍କ କାର୍ଯ୍ୟକୁ

ଖୁବ୍ ପ୍ରଶଂସା କରୁଥିଲେ। ତାଙ୍କ ଲୋକପ୍ରିୟତା ଦିନକୁ ଦିନ ବଢ଼ିବାରେ ଲାଗିଥିଲା। ୧୯୨୭ ମସିହା ଅକ୍ଟୋବର ମାସରେ ସୁଭାଷ ବଙ୍ଗ ପ୍ରଦେଶର କଂଗ୍ରେସ ସଭାପତି ଭାବେ ନିଯୁକ୍ତ ହୋଇଥିଲେ। ସେହି ସମୟରେ ହିନ୍ଦୁ-ମୁସଲମାନ ମଧ୍ୟରେ ଯେଉଁଲି କେବେ ଦଙ୍ଗା ନ ଘଟିବ ଏବଂ ଭ୍ରାତୃତ୍ୱର ବନ୍ଧନ ସୁଦୃଢ଼ ହେବ ସେଥିପାଇଁ କାର୍ଯ୍ୟ କରି ଅଶେଷ ସଫଳତା ହାସଲ କରିଥିଲେ। ଆଜି ମଧ୍ୟ ଅନେକ ମତ ଦିଅନ୍ତି ଯଦି ସୁଭାଷ ବୋଷ ବଞ୍ଚିଥାନ୍ତେ, ଭାରତ କେବେ ବି ବିଭାଜିତ ହୋଇ ନ ଥାନ୍ତା।

ନେତାଜୀ ସାମ୍ୟବାଦ ଚିନ୍ତାଧାରାରେ ବିଶ୍ୱାସୀ ଥିଲେ। ୧୯୩୮ ମସିହା ଫେବୃଆରୀ ମାସରେ ଗୁଜୁରାଟର ହରିପୁରାଠାରେ ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୋଇଥିଲା। ସେତେବେଳେ ସେ ଚାଷୀ ଓ ଚାଷକୁ ପ୍ରାଧାନ୍ୟ ଦେବାର ସପକ୍ଷରେ ନିଜର ଚିନ୍ତାଧାରା ବ୍ୟକ୍ତ କରି ସେମାନଙ୍କର ଅତ୍ୟନ୍ତ ପ୍ରିୟଭାଜନ ହୋଇଥିଲେ। ସେଠାରେ ଗୋଟିଏ ଯୁଗାନ୍ତକାରୀ ଘଟଣା ହେଲା – ଦେଶପାଇଁ 'ଯୋଜନା କମିଶନ' ଗଠନ କରିବାର ପ୍ରସ୍ତାବ। ଏହି ଯୋଜନା କମିଶନର ଆନୁଷ୍ଠାନିକ ଉଦ୍‌ଘାଟନ ୧୯୩୮ ମସିହାରେ ବମ୍ବେଠାରେ ହୋଇଥିଲା ଏବଂ ଜବାହରଲାଲ ନେହେରୁ କମିଶନର ଅଧ୍ୟକ୍ଷ ଭାବରେ ମନୋନୀତ ହୋଇଥିଲେ। କିନ୍ତୁ ଗାନ୍ଧିଜୀ ଏହିଭଳି ନୂତନ ଚିନ୍ତାଧାରାକୁ ସମର୍ଥନ କଲେ ନାହିଁ। ଗାନ୍ଧିଜୀ ୧୯୩୯ ମସିହାରେ ସୁଭାଷ ଚନ୍ଦ୍ର ବୋଷ କିଭଳି କଂଗ୍ରେସର ସଭାପତି ହୋଇ ନ ପାରିବେ ସେଥିପାଇଁ ଚକ୍ରାନ୍ତ କରିବାରେ ଲାଗିପଡ଼ିଲେ।

ଦେଶ ଗଠନ ପାଇଁ ସୁଭାଷ ବୋଷଙ୍କ ବକ୍ତୃତା ସବୁବେଳେ ସମସ୍ତଙ୍କୁ ଚିନ୍ତାର ଖୋରାକ ଯୋଗାଇଥିଲା। ଭାରତର ସବୁ ପ୍ରାନ୍ତରର ଯୁବକମାନେ ସୁଭାଷଙ୍କ ନାମ ଶୁଣିଲେ ପାଗଳ ଭଳି ତାଙ୍କୁ ଅନୁସରଣ କରୁଥିଲେ। ସାଂପ୍ରଦାୟିକ ଭେଦଭାବ ଦୂର କରିବାକୁ ପ୍ରଚେଷ୍ଟା ଆରମ୍ଭ କରି ସେଥିରେ ସେ ସଂପୂର୍ଣ୍ଣ ରୂପେ ସଫଳ ହୋଇଥିଲେ। ଭାରତବର୍ଷକୁ ଐକ୍ୟବଦ୍ଧ କରିବାର ଶକ୍ତି କେବଳ ସୁଭାଷ ବୋଷଙ୍କର ଥିଲା। ଗାନ୍ଧିଜୀଙ୍କ ମତ ସହିତ ସୁଭାଷ ବହୁ ସମୟରେ ଏକମତ ହୋଇପାରୁ ନ ଥିଲେ। କଂଗ୍ରେସରେ ଆଭ୍ୟନ୍ତରୀଣ ଚକ୍ରାନ୍ତ ସୁଭାଷଙ୍କୁ ହତୋତ୍ସାହିତ କରିଥିଲା। ତେଣୁ ଅନନ୍ୟୋପାୟ ହୋଇ ସୁଭାଷ ବୋଷ ୧୯୩୯ ମସିହା ଜୁନ୍ ୨୨ ତାରିଖ ଦିନ 'ଫରୱାର୍ଡ଼ ବ୍ଲକ୍' ନାମକ ଏକ ରାଜନୈତିକ ସଂଗଠନ ଗଠନ କରିଥିଲେ। ଅଗଷ୍ଟ ୧୧ ତାରିଖ ଦିନ ବମ୍ବେଠାରେ କଂଗ୍ରେସର ଦକ୍ଷିଣପନ୍ଥୀ ନେତାମାନେ ତାଙ୍କୁ ତିନିବର୍ଷ ପାଇଁ ଦଳରୁ

ବହିଷ୍କାର କଲେ। ଦୁଃଖର ବିଷୟ ଯେ ୧୯୨୧ ମସିହା ଜୁଲାଇ ମାସରେ ବମ୍ବେଠାରେ ହୋଇଥିବା ପ୍ରଥମ ସାକ୍ଷାତରୁ ୧୯୪୦ ମସିହା ଜୁନ୍ ମାସରେ ଓ୍ୱାର୍ଦ୍ଧାଠାରେ ହୋଇଥିବା ଶେଷ ସାକ୍ଷାତ ପର୍ଯ୍ୟନ୍ତ ଗାନ୍ଧିଜୀ ଓ ସୁଭାଷଙ୍କ ରାଜନୈତିକ ଦୃଷ୍ଟିଭଙ୍ଗୀରେ କେବେ ସଂପୂର୍ଣ୍ଣ ମେଳ ହୋଇ ନ ଥିଲା।

୧୯୪୦ ମସିହା ଜୁଲାଇ ୨ ତାରିଖରେ ସୁଭାଷ ବୋଷଙ୍କୁ ବ୍ରିଟିଶ ସରକାର ଗିରଫ କଲେ। ସେହିବର୍ଷ ଡିସେମ୍ବର ୫ ତାରିଖ ଦିନ ତାଙ୍କୁ ଜେଲ୍‌ରୁ ମୁକୁଳାଇ ଗୃହବନ୍ଦୀ ଭାବେ ଅଟକ ରଖିଲେ। ୧୯୪୧ ମସିହା ଜାନୁଆରୀ ୧୭ ତାରିଖ ଦିନ ସୁଭାଷ ମୁସଲମାନ ପୋଷାକ ପିନ୍ଧି ଛଦ୍ମବେଶରେ କଲିକତା ଛାଡ଼ିଲେ ଏବଂ ବହୁକଷ୍ଟ ସ୍ୱୀକାର କରି ପେଶାଓ୍ୱାର, କାବୁଲ, ମସ୍କୋ ବାଟ ଦେଇ ଏପ୍ରିଲ ୩ ତାରିଖରେ ବରଲିନ୍‌ରେ ପହଞ୍ଚିଲେ। ସେଠାରେ 'ସ୍ୱାଧୀନ ଭାରତ କେନ୍ଦ୍ର' ଗଠିତ ହେଲା। ସେଠାରେ ୧୯୪୨ ମସିହା ଜାନୁଆରୀ ୨୬ ତାରିଖ ଦିନ ଭାରତର ସ୍ୱାଧୀନତା ଦିବସ ପାଳିତ ହୋଇଥିଲା। ରବୀନ୍ଦ୍ରନାଥ ଠାକୁରଙ୍କ ରଚିତ 'ଜନଗଣମନ' ସଙ୍ଗୀତକୁ ଜାତୀୟ ମର୍ଯ୍ୟାଦା ଦିଆଯାଇଥିଲା। ଜର୍ମାନୀର ସ୍ୱାଧୀନ ଭାରତ କେନ୍ଦ୍ରରେ ଭାରତୀୟମାନେ ପରସ୍ପରକୁ ଭେଟିଲେ 'ଜୟହିନ୍ଦ୍' ବୋଲି ସମ୍ବୋଧନ କରିବା ଆରମ୍ଭ କରିଥିଲେ। 'ଜୟହିନ୍ଦ୍' ଅର୍ଥ ଭାରତର ଜୟ ହେଉ। ୧୯୪୨ ମସିହାରେ ନେତାଜୀ ହିଟଲରଙ୍କୁ ଭେଟିଥିଲେ। ହିଟଲର ତାଙ୍କର ସାହସିକ କାର୍ଯ୍ୟ ଓ ଯୋଜନାକୁ ପ୍ରଶଂସା କରି ତାଙ୍କୁ ସମସ୍ତ ସହାୟତା ଦେବାର ପ୍ରତିଶ୍ରୁତି ଦେଇଥିଲେ। ନେତାଜୀ ଓ ଆବିଦ୍ ହାସାନ୍ ନିଜ ଯୋଜନା ଅନୁଯାୟୀ ବୁଡ଼ାଜାହାଜରେ ଜର୍ମାନୀ ଛାଡ଼ି ବିପଦସଂକୁଳ ସମୁଦ୍ରପଥରେ ଯାତ୍ରା କରି ୧୯୪୩ ମସିହା ମେ' ମାସ ୧୬ ତାରିଖରେ ଟୋକିଓରେ ପହଞ୍ଚି ଜାପାନ ପ୍ରଧାନମନ୍ତ୍ରୀ ଟୋଜୋ, ବୈଦେଶିକ ପ୍ରତିରକ୍ଷା ମନ୍ତ୍ରୀଙ୍କ ସହିତ ସାକ୍ଷାତ ଆଲୋଚନା କଲେ। ୧୯୪୩ ମସିହା ଜୁନ୍ ମାସରେ ବିପ୍ଳବୀ ରାହାସ ବିହାରୀ ବୋଷଙ୍କ ଉଦ୍ୟମରେ ପ୍ରତିଷ୍ଠିତ ହୋଇଥିବା 'ଆଜାଦ୍ ହିନ୍ଦ୍ ଫୌଜ'ର ସର୍ବୋଚ୍ଚ କମାଣ୍ଡର ଭାବେ ଦାୟିତ୍ୱ ନେଲେ। ପୂର୍ବ ଏସିଆରେ ୩୦ ଲକ୍ଷ ଭାରତୀୟଙ୍କୁ ଭାଷା, ଜାତି, ଧର୍ମ ନିର୍ବିଶେଷରେ ସେ ଯେଉଁଳି ଭାବରେ ଏକଜୁଟ୍ କରାଇଥିଲେ ତାହାର ପଟାନ୍ତର ନାହିଁ। ମହିଳାମାନଙ୍କ ପାଇଁ ତାଙ୍କର ବିଶେଷ ସମ୍ମାନ ଥିଲା। କ୍ୟାପ୍‌ଟେନ୍ ଲକ୍ଷ୍ମୀ ସେହଗଲଙ୍କ ନେତୃତ୍ୱରେ ରାଣୀ ଲକ୍ଷ୍ମୀବାଈ ରେଜିମେଣ୍ଟ ପ୍ରତିଷ୍ଠା କରି ସେ ତାହା ପ୍ରମାଣ କରିଦେଇଯାଇଛନ୍ତି।

୧୯୪୪ ମସିହା ଏପ୍ରିଲ ୧୪ ତାରିଖ ଦିନ ତାଙ୍କ ସୈନ୍ୟବାହିନୀ ମଣିପୁରର ରାଜଧାନୀ ଇମ୍ଫାଲ ନିକଟବର୍ତ୍ତୀ ମଏରାଙ୍ଗ ସହରକୁ ଦଖଲ କଲେ ଓ ଭାରତର ତ୍ରିରଙ୍ଗା ଉଡ଼ାଇଥିଲେ। କିନ୍ତୁ ପ୍ରତିକୂଳ ପାଗ, ଭୀଷଣ ବର୍ଷା, ଖାଦ୍ୟାଭାବ, ଗୁଳିଗୁଳାର ଅଭାବ ସତ୍ତ୍ୱେ ଆଜାଦ୍ ହିନ୍ଦ୍ ଫୌଜ ବୀରତ୍ୱର ସହିତ ଲଢ଼ିଥିଲେ ମଧ୍ୟ ଶେଷରେ ପଛଘୁଞ୍ଚା ଦେବାକୁ ବାଧ୍ୟ ହୋଇଥିଲେ। ନେତାଜୀ ସୁଭାଷଙ୍କର ଲାଲକିଲା ଦଖଲ କରିବା ସ୍ୱପ୍ନ ଅପୂର୍ଣ୍ଣ ରହିଲା। ତେବେ ତାଙ୍କର ବୀରତ୍ୱ ଓ ଅସୀମ ଦେଶପ୍ରେମର କାହାଣୀ ଆମେ ଯେତେଦିନ ଯାଏ ମନେରଖିଥିବା ଓ ଆଲୋଚନା କରୁଥିବା ସେତେଦିନ ଯାଏ ଦେଶମାତୃକା ପାଇଁ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହେବାକୁ ଭବିଷ୍ୟତର ବଂଶଧରମାନେ ପ୍ରେରଣା ପାଉଥିବେ।

***ଜନତନ୍ତ୍ର - ୨୪.୨.୨୦୧୭***

# ସାମାଜିକ ବିପ୍ଳବର ମହାନାୟକ ଭୀମରାଓ ଆମ୍ବେଦକର

୧୯୯୦ ଏପ୍ରିଲ ୧୪ରେ ରାଷ୍ଟ୍ରପତି ଭବନରେ ଆମ୍ବେଦକରଙ୍କ ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ତାଙ୍କୁ ମରଣୋତ୍ତର 'ଭାରତରତ୍ନ' ପୁରସ୍କାର ପ୍ରଦାନ କରାଯାଇଥିଲା । ଏହି ପୁରସ୍କାର ତାଙ୍କ ପତ୍ନୀ ଡକ୍ଟର ସବିତା ଆମ୍ବେଦକର ଭାରତର ରାଷ୍ଟ୍ରପତି ଆର୍ ଭେଙ୍କଟରମଣଙ୍କଠାରୁ ଗ୍ରହଣ କରିଥିଲେ । ବାବାସାହେବ ସାରାଜୀବନ ସଂଗ୍ରାମ କରିଛନ୍ତି ଦଳିତ, ଅବହେଳିତ, ଗରିବ, ଅନୁସୂଚିତ, ଆଦିବାସୀ ଓ ସବୁ ଶ୍ରେଣୀର ନିଷ୍ପେଷିତ ଜନସାଧାରଣଙ୍କ ମଣିଷ ଭଳି ବଞ୍ଚିବା ଅଧିକାର ପାଇଁ । ତାଙ୍କ କାର୍ଯ୍ୟାବଳୀ ଶୋଷଣହୀନ ସମାଜ ବିଶ୍ୱରେ ପ୍ରତିଷ୍ଠା କରିବାକୁ କହିଥିବା ଜର୍ମାନୀର କାର୍ଲ ମାର୍କସ୍ କିମ୍ବା ମଣିଷମାନଙ୍କର ରଙ୍ଗ, ଲିଙ୍ଗ ଭେଦଭାବରୁ ଊର୍ଦ୍ଧ୍ୱରେ ରହି ସମସ୍ତଙ୍କୁ ସମାନ ଅଧିକାର ଦେବାର ପ୍ରବକ୍ତା ଆମେରିକାର ମାର୍ଟିନ ଲୁଥର କିଙ୍ଗ୍‌ଙ୍କ ସହିତ ତୁଳନୀୟ । ଭୀମରାଓ ମହିଳାଙ୍କ ପ୍ରତି ହେଉଥିବା ଅନ୍ୟାୟ ଓ ଶୋଷଣ ବିରୋଧରେ ସଂଗ୍ରାମ ଚଳାଇ ସେମାନଙ୍କ ପାଇଁ ପୁରୁଷଙ୍କ ସହିତ ସମାନ ଆସନ ଦାବି କରିବାରେ ହେଉଛନ୍ତି ଅନ୍ୟତମ ବ୍ୟକ୍ତି । ସେ ଥିଲେ ଭାରତ ସମ୍ବିଧାନର ପ୍ରଣେତା, ବିଶିଷ୍ଟ ସମାଜସେବୀ, ଶିକ୍ଷାବିତ୍, ଆଇନଜ୍ଞ, ଅର୍ଥନୀତିଜ୍ଞ ଓ ଦାର୍ଶନିକ ।

୧୮୯୧ ଏପ୍ରିଲ ୧୪ ତାରିଖ ମଧ୍ୟପ୍ରଦେଶର ମାଓ ଗ୍ରାମରେ ଦଳିତ ମାହାର ଜାତିର ଏକ ଦରିଦ୍ର ପରିବାରରେ ଭୀମରାଓ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ରାମଜୀ ସକପାଲ୍ ସୈନ୍ୟବାହିନୀର ସୁବେଦାର ମେଜର ଥିଲେ । ତାଙ୍କର ମାତାଙ୍କ ନାମ ଥିଲା ଭୀମାବାଈ । ଦଳିତ ପରିବାରରେ ଜନ୍ମଗ୍ରହଣ କରିଥିବାରୁ ସ୍କୁଲରେ ପଢ଼ିବାବେଳୁ ସେ ଉଚ୍ଚଜାତିର ସହପାଠୀ ଓ ଶିକ୍ଷକଙ୍କର ଘୃଣା, ଅନ୍ୟାୟ, ଅମାନବିକ ବ୍ୟବହାରର ସମ୍ମୁଖୀନ ହୋଇଥିଲେ । ଭୀମରାଓ ଅତ୍ୟନ୍ତ ମେଧାବୀ ଛାତ୍ର ଥିଲେ । ହେଲେ ତାଙ୍କର ଆର୍ଥିକ ସ୍ଥିତି ଦୁର୍ବଳ ଥିବାରୁ ଉଚ୍ଚଶିକ୍ଷା ଲାଭ କରିବାରେ ପ୍ରତିବନ୍ଧକ ସୃଷ୍ଟି କରିଥିଲା । ବରୋଦା ରାଜ୍ୟର ବଦାନ୍ୟ ମହାରାଜା ଶିବାଜୀ ରାଓ ଗାୟକୱାଡ୍

ତାଙ୍କୁ ମାସିକ ପଚିଶ ଟଙ୍କା ବୃତ୍ତି ପ୍ରଦାନ କରିବାରୁ ସେ ବମ୍ବେର ଏଲ୍‌ଫିନ୍‌ଷ୍ଟୋନ କଲେଜରେ ପଢ଼ିବାକୁ ସକ୍ଷମ ହୋଇଥିଲେ।

ଜଣେ ଆଇନଜ୍ଞ ଭାବେ ଭୀମରାଓ ଦରିଦ୍ର ଓ ଦଳିତଙ୍କ ମାମଲାଗୁଡ଼ିକ ପରିଚାଳନା କରି ସେମାନଙ୍କ ମଧ୍ୟରେ ବିଶ୍ୱାସ ଜନ୍ମାଇ ପାରିଥିଲେ। ଛୁଆଁଅଛୁଆଁ ଭେଦଭାବର ମୂଳୋତ୍ପାଟନ କରିବାକୁ ଗୋଟିଏ ନୂତନ ଅନୁଷ୍ଠାନ ୧୯୨୪ ଜୁଲାଇ ୨୦ ତାରିଖରେ ଗଠନ କରିଥିଲେ। ଏହି ଅନୁଷ୍ଠାନ ଜରିଆରେ ନିଶା ବିରୋଧୀ ଆନ୍ଦୋଳନ ଆରମ୍ଭ ହୋଇଥିଲା। ୧୯୨୬ ମସିହାରେ ସେ ବମ୍ବେ ବିଧାନସଭାର ସଭ୍ୟ ଭାବେ ସରକାରଙ୍କ ଦ୍ୱାରା ମନୋନୀତ ହେଲେ। ୧୯୨୭ ମସିହାରେ 'ବହିଷ୍କୃତ ଭାରତ' ନାମରେ ଏକ ପାକ୍ଷିକ ପତ୍ରିକା ପ୍ରକାଶ କରିଥିଲେ ଓ 'ସମାଜ ସମତା ସଂଘ' ଗଠନ କରି ସମାଜରେ ସାମ୍ୟତା ଆଣିବାକୁ ଉଦ୍ୟମ କରିଥିଲେ।

ଭୀମରାଓଙ୍କର ଚେଷ୍ଟାରେ ୧୯୨୮ରେ ନାଗପୁରଠାରେ ଏବଂ ୧୯୩୦ ମସିହାରେ କୋହ୍ଲାପୁରଠାରେ ଦଳିତ ଜାତିମାନଙ୍କର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା। ଏହି ସମ୍ମିଳନୀରେ ଦଳିତମାନଙ୍କର ମାନସମ୍ମାନ ରକ୍ଷା ହୋଇ କିପରି ସେମାନଙ୍କ ବିକାଶ ହେବ ସେ ବିଷୟରେ ଆଲୋଚନା ହୋଇଥିଲା। ଅସ୍ପୃଶ୍ୟ ଜାତିର ଛାତ୍ରମାନଙ୍କ ପାଇଁ ଉଚ୍ଚଶିକ୍ଷା କିପରି ସହଜ ହେବ ସେଥିପାଇଁ ସେ ପ୍ରୟାସ ଜାରି ରଖିଲେ। ଅଛୁଆଁ ଜାତିର ଲୋକମାନଙ୍କର ମନ୍ଦିର ପ୍ରବେଶ ଅଧିକାର ପାଇଁ ମଧ୍ୟ ଆନ୍ଦୋଳନ ଆରମ୍ଭ କରିଥିଲେ। ୧୯୩୦ ମସିହାରେ ନାସିକସ୍ଥିତ କଲାରାମ ମନ୍ଦିରରେ ପ୍ରବେଶ ନିମନ୍ତେ ହଜାର ହଜାର ଲୋକ ମନ୍ଦିର ସମ୍ମୁଖରେ ଧାରଣା ଦେଲେ। ଏହା ପ୍ରଭାବରେ କେତେକ ସ୍ଥାନରେ ଉଚ୍ଚବର୍ଗର ଲୋକମାନେ ମନ୍ଦିର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ କରିଥିଲେ। ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ କୂଅ ପୋଖରୀରୁ ଦଳିତମାନେ କିପରି ନିର୍ବିଘ୍ନରେ ପାଣି ବ୍ୟବହାର କରିପାରିବେ ସେଥିପାଇଁ ମଧ୍ୟ ଆମ୍ବେଦକର ଆନ୍ଦୋଳନ ଆରମ୍ଭ କରିଥିଲେ। ମହାଡ଼ର ଚାଉଦର ପୁଷ୍କରିଣୀକୁ ଦଳିତଙ୍କ ବ୍ୟବହାର ପାଇଁ ଉନ୍ମୁକ୍ତ କରିବାକୁ ସେ ଆନ୍ଦୋଳନ କରିଥିଲେ। ତାହାକୁ ଉଚ୍ଚଜାତିର ଲୋକମାନେ ବନ୍ଦ କରିବାକୁ ଚେଷ୍ଟା କରିବାରୁ ମାମଲା କଚେରିରେ ପହଞ୍ଚିଥିଲା। ଏହାର ବିଚାର ହୋଇ ପୁଷ୍କରିଣୀ ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ନ୍ୟାୟାଳୟ ରାୟ ଶୁଣାଇବାରୁ ଆମ୍ବେଦକର ଉତ୍ସାହିତ ହୋଇଥିଲେ।

୧୯୪୭ ଏପ୍ରିଲ ୨୯ ତାରିଖରେ ଆମ୍ବେଦକରଙ୍କର ପ୍ରୟାସ ଯୋଗୁଁ ଭାରତର ଶାସନ ବିଧାୟକ ସଭା ଅସ୍ପୃଶ୍ୟତାକୁ ବିଲୋପ କରିଥିଲା। ସ୍ୱାଧୀନତା ହାସଲ ପରେ

ଭାରତର ସମ୍ବିଧାନ ଗଠନ କରିବାକୁ ଯେଉଁ କମିଟି ହେଲା ଡକ୍ଟର ଭୀମରାଓ ଆମ୍ବେଦକରଙ୍କୁ ତାହାର ଚେୟାରମ୍ୟାନ୍ କରାଗଲା । ଏହି ସମ୍ବିଧାନ ରଚନା କାଳରେ ସେ ଦଳିତଙ୍କ ସହିତ ଆଦିବାସୀଙ୍କ ସ୍ୱାର୍ଥକୁ ସାମ୍ବିଧାନିକ ସୁରକ୍ଷା ଦେଲେ । ଫଳସ୍ୱରୂପ ଆଜି ଏମାନେ ତଫସିଲଭୁକ୍ତ ଜାତି ଓ ଉପଜାତି ନାମରେ ଶିକ୍ଷା, ଚାକିରି ଓ ରାଜନୀତି କ୍ଷେତ୍ରରେ ସଂରକ୍ଷଣର ସୁବିଧା ପାଇଆସୁଛନ୍ତି ଏବଂ ଆର୍ଥିକ କ୍ଷେତ୍ରରେ ମଧ୍ୟ ରିହାତି ପାଇପାରୁଛନ୍ତି । ସ୍ୱାଧୀନ ଭାରତବର୍ଷରେ ଆମ୍ବେଦକର ପ୍ରଥମ ଆଇନମନ୍ତ୍ରୀ ହୋଇଥିଲେ । ସେ ମହିଳାଙ୍କର ପୁରୁଷଙ୍କ ସହିତ ସମାନ ଅଧିକାର ପାଇଁ 'ହିନ୍ଦୁ କୋଡ୍ ବିଲ୍' ସଂସଦରେ ଉପସ୍ଥାପିତ କରିଥିଲେ; କିନ୍ତୁ ତାହା ଗ୍ରହଣୀୟ ହେଲାନାହିଁ ଏବଂ ସେ ମନ୍ତ୍ରୀପଦରୁ ଇସ୍ତଫା ଦେଲେ ।

ଅଛୁଆଁ, ପଛୁଆ ଓ ଅନଗ୍ରସର ଜାତିଙ୍କର ଉତ୍‌ଥାନ ପାଇଁ ନିଃସ୍ୱାର୍ଥପର ସମାଜ ସଂସ୍କାରକ ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକରଙ୍କ ଦାନ ଅସୀମ । ସାରାଜୀବନ ସେ ଅନୁନ୍ନତଙ୍କ ଉନ୍ନତି ପାଇଁ ଲଢ଼ିଛନ୍ତି । କୋଟିକୋଟି ଜନସାଧାରଣଙ୍କ ମନମନ୍ଦିରରେ ସେ ପୂଜା ପାଉଛନ୍ତି । ତାଙ୍କ ଜନ୍ମଦିବସରେ ଦେଶବାସୀ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହେଲେ ତାହା ତାଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ ।

*ସମାଜ - ୧୪.୪.୨୦୧୪*

# ଆମ୍ବେଦକରଙ୍କ ସ୍ୱପ୍ନ ଏବେ ବି ଅଧୁରା

ବାବାସାହେବ ଭୀମରାଓ ଆମ୍ବେଦକର ୧୮୯୧ ମସିହା ଏପ୍ରିଲ ୧୪ ତାରିଖରେ ଏକ ଦରିଦ୍ର ମାହାର ପରିବାରରେ ଜନ୍ମଗ୍ରହଣ କରିଥିଲେ। ସେ ପିତାମାତାଙ୍କର ଚତୁର୍ଦ୍ଦଶ ଓ ସର୍ବକନିଷ୍ଠ ସନ୍ତାନ ଥିଲେ। ମାହାର ଜାତି ଏକ ଅସ୍ପୃଶ୍ୟ ଜାତି। ଆବହମାନ କାଳରୁ ହିନ୍ଦୁଧର୍ମରେ ଜାତିପ୍ରଥାର ପ୍ରଚଳନ ଥିଲା ଏବଂ ତଥାକଥିତ ଉଚ୍ଚବର୍ଣ୍ଣର ବ୍ୟକ୍ତିମାନଙ୍କର ନୀଚବର୍ଣ୍ଣର ବ୍ୟକ୍ତିମାନଙ୍କ ପ୍ରତି ବ୍ୟବହାର ଅମାନୁଷିକ ଥିଲା। ଏଭଳିକି ସେମାନଙ୍କୁ ଅସ୍ପୃଶ୍ୟ ବିଚାର କରାଯାଉଥିଲା। ଭୀମରାଓଙ୍କ ପିତା ରାମଜୀ ସକ୍‌ପାଲ ସୈନ୍ୟବାହିନୀରେ ସୁବେଦାର ମେଜର ରୂପେ କାର୍ଯ୍ୟକରି ଅବସର ଗ୍ରହଣ କରିଥିଲେ। ସୈନ୍ୟବାହିନୀରେ ଥିଲାବେଳେ ସେ କେବେ ବି ଏହି ଛୁଆଁଅଛୁଆଁ ଭେଦଭାବର ଶିକାର ହୋଇନଥିଲେ। କିନ୍ତୁ ବାହାର ଦୁନିଆରେ ଏହି ଭେଦଭାବ ଯେ ମଣିଷ ମଣିଷ ଭିତରେ ପ୍ରକାଣ୍ଡ ପାଚେରୀ ଠିଆ କରିଛି ସେ ବିଷୟରେ ସେ ଅବଗତ ଥିଲେ। ଭୀମରାଓ ପାଞ୍ଚବର୍ଷ ବୟସରୁ ଏହି ଜାତିଭେଦର ଶିକାର ହେଲେ।

ଦାପୋଲା ଗାଁର ଗୋଟିଏ ମରାଠୀ ପ୍ରାଥମିକ ବିଦ୍ୟାଳୟରେ ଭୀମରାଓ ପଢୁଥିଲାବେଳେ ତାଙ୍କ ସହପାଠୀମାନଙ୍କ ସହ ଏକାଠି ବସି ପଢ଼ିବାର ସୁଯୋଗରୁ ବଞ୍ଚିତ ହେଉଥିଲେ। ଶ୍ରେଣୀର ବାରଣ୍ଡାରେ କିମ୍ବା ଗୋଟିଏ କୋଣରେ ତାଙ୍କୁ ବସି ପଢ଼ିବାକୁ ପଡୁଥିଲା। ବିଦ୍ୟାଳୟର ସବୁ ଛାତ୍ରଙ୍କ ପାଇଁ ରହିଥିବା ପାଣି ମାଠିଆରୁ ତାଙ୍କୁ ପାଣି ପିଇବାକୁ ଦିଆଯାଉ ନଥିଲା। ବମ୍ବେଠାରେ ଏଲଫିନ୍‌ଷ୍ଟୋନ ହାଇସ୍କୁଲରେ ତାଙ୍କୁ ଜଣେ ଶିକ୍ଷକ ବ୍ଲାକବୋର୍ଡ଼ ପାଖକୁ ଯାଇ ଅଙ୍କ କଷିବାକୁ ନିର୍ଦ୍ଦେଶ ଦେବାରୁ ସେ ବ୍ଲାକବୋର୍ଡ଼ ପାଖକୁ ଯାଉଥିବା ସମୟରେ ତାଙ୍କର ଅନ୍ୟ ସମସ୍ତ ବିଦ୍ୟାର୍ଥୀ ସେଠାକୁ ସେ ଗଲେ ସେମାନଙ୍କର ରଖାଯାଇଥିବା ଖାଦ୍ୟ ଅପବିତ୍ର ହୋଇଯିବ କହି ତାଙ୍କୁ ସେଠାକୁ ଯିବାକୁ ବାରଣ କଲେ ଏବଂ ଭୀମରାଓ ବାଧହୋଇ ବ୍ଲାକବୋର୍ଡ଼ ପାଖକୁ ଯିବାରୁ ନିବୃତ୍ତ ରହିଲେ। କେବଳ ନୀଚଜାତିରେ ଜନ୍ମଗ୍ରହଣ କରିଥିବାରୁ ତାଙ୍କୁ ଯେଉଁଳି ନିକ୍ଷେପିତ ଓ ଘୃଣାର ଶିକାର ହେବାକୁ ପଡ଼ିଥିଲା ତାହା ତାଙ୍କୁ ବିବ୍ରତ କରୁଥିଲା ଏବଂ ତାଙ୍କଭଳି ହଜାର ହଜାର ନିରୀହ, ନିଷ୍ପାପ ଲୋକ କୌଣସି ଦୋଷ

ନ ଥାଇ ମଣିଷ ହୋଇ ମଧ୍ୟ ମଣିଷ ଭଳି ଚଳିପାରୁ ନଥିଲେ; ଏହାର ସମାଧାନର ପନ୍ଥା ବାହାର କରିବାକୁ ସେ ଦୃଢ଼ ନିଶ୍ଚିତ ଥିଲେ।

ଭୀମରାଓ ଜଣେ ଅତ୍ୟନ୍ତ ମେଧାବୀ ଛାତ୍ର ଥିଲେ। ସେ ଅତ୍ୟନ୍ତ ତୀକ୍ଷ୍ଣ ବୁଦ୍ଧି ଓ ଅସାଧାରଣ ସ୍ମରଣଶକ୍ତିସମ୍ପନ୍ନ ଛାତ୍ର ଥିଲେ। ଜଣେ ବ୍ରାହ୍ମଣ ଶିକ୍ଷକ ଭୀମରାଓଙ୍କ ଉତ୍ତମ ଗୁଣ ସବୁ ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ ଏବଂ ତାଙ୍କୁ ନିଜ ପୁତ୍ରବତ୍ ସ୍ନେହ କରୁଥିଲେ। ଭୀମରାଓଙ୍କ ସହିତ ଏକତ୍ର ଭୋଜନ ମଧ୍ୟ କରୁଥିଲେ। ସେ ଭୀମରାଓଙ୍କୁ ତାଙ୍କ ପାରିବାରିକ ନାମ ଆମ୍ବେଦେଲେକୁ ଆମ୍ବେଦକରରେ ପରିବର୍ତ୍ତନ କରାଇଥିଲେ। ଭୀମରାଓ ଜ୍ଞାନ ସଂଗ୍ରହ ପାଇଁ କେବଳ ନିଜର ପଢ଼ାକୁ ବିଦ୍ୟାଳୟର ପୁସ୍ତକ ମଧ୍ୟରେ ସୀମିତ ନ ରଖି ଅନ୍ୟାନ୍ୟ ବାହ୍ୟ ପୁସ୍ତକ ପଢ଼ିବାରେ ମନୋନିବେଶ କରୁଥିଲେ। ହାଇସ୍କୁଲରେ ଅନ୍ୟ ହିନ୍ଦୁ ଛାତ୍ରମାନେ ସଂସ୍କୃତ ପଢୁଥିଲାବେଳେ ଶିକ୍ଷକ ଭୀମରାଓଙ୍କୁ ସଂସ୍କୃତ ଶିକ୍ଷାରୁ ବଞ୍ଚିତ କରୁଥିଲେ। ଏଭଳି ପକ୍ଷପାତ ନୀତି ତାଙ୍କ ମନରେ ବିଦ୍ରୋହ ଭାବ ସୃଷ୍ଟି କରୁଥିଲା। ଆର୍ଥିକ ଅନଟନ, ଜାତିଗତ ଭେଦଭାବ ଓ ସାମାଜିକ ତାଡ଼ନା ତାଙ୍କ ପାଠପଢ଼ାରେ କୌଣସି ପ୍ରତିବନ୍ଧକ ସୃଷ୍ଟି କରିପାରି ନଥିଲା। ସେ ୧୯୦୮ ମସିହାରେ ବମ୍ବେର ଏଲଫିନ୍‌ଷ୍ଟୋନ ହାଇସ୍କୁଲରୁ ମାଟ୍ରିକ ପାଶ୍ କଲେ। ଭୀମରାଓ ଆମ୍ବେଦକର ହିଁ ମାହାର ଜାତିର ପ୍ରଥମ ଛାତ୍ର ଯେ କି ଏହି ଗୌରବ ଅର୍ଜନ କରିଥିଲେ। ଏହା ସେ ସମୟର ଏକ ଉଲ୍ଲେଖନୀୟ ଘଟଣା ଥିଲା। ସେ ଏଲଫିନ୍‌ଷ୍ଟୋନ କଲେଜରୁ ୧୯୧୨ ମସିହାରେ ବି.ଏ. ପାଶ୍ କଲେ। ଭୀମରାଓ ଆମ୍ବେଦକର ବରୋଦାର ମହାରାଜା ଗାଏକୁଆଡ଼ଙ୍କଠାରୁ ବୃତ୍ତି ପାଇ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରେ ଅର୍ଥନୀତି ବିଭାଗରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରିଥିଲେ। ସେହିଠାରେ ମଧ୍ୟ ସେ ଡକ୍ଟରେଟ୍ ଡିଗ୍ରୀ ଲାଭ କରିଥିଲେ। ଉଚ୍ଚଶିକ୍ଷା ପାଇ ଆମ୍ବେଦକର ଭାରତ ଫେରି ମହାରାଜା ଗାଏକୁଆଡ଼ଙ୍କର ବରୋଦା ରାଜ୍ୟରେ ସାମାଜିକ ସଚିବ ଭାବରେ ନିଯୁକ୍ତି ପାଇଲେ। ଏତେ ଉଚ୍ଚଶିକ୍ଷା ଲାଭ କଲେ ମଧ୍ୟ ଅସ୍ପୃଶ୍ୟତାର କଳଙ୍କ ସବୁବେଳେ ତାଙ୍କର ବାଟ ଓଗାଳିଲା। ତାଙ୍କୁ ରହିବାକୁ ଘର ମିଳିଲା ନାହିଁ। ତାଙ୍କର ଅଧସ୍ତନ କର୍ମଚାରୀମାନେ ତାଙ୍କୁ ଘୃଣା କରୁଥିଲେ। ଚପରାସୀମାନେ ମଧ୍ୟ ଟେବୁଲ୍ ଉପରେ ଫାଇଲ ନରଖି ଫୋପାଡୁଥିଲେ। ହିନ୍ଦୁ ସମାଜର ଏହି ରକ୍ଷଣଶୀଳ ମନୋବୃତ୍ତି ତାଙ୍କ ମନରେ ବିଦ୍ରୋହ ସୃଷ୍ଟି କରୁଥିଲା। ଭାରତରେ ସମଗ୍ର ଅସ୍ପୃଶ୍ୟ ସମାଜକୁ ନ୍ୟାୟ ଦେବାକୁ ସେ ମାନସିକ ସ୍ତରରେ ଦୃଢ଼ ନିଷ୍ପତ୍ତି ନେଇଥିଲେ।

୧୯୨୦ ମସିହାରେ ଆମ୍ବେଦକର ଉଚ୍ଚଶିକ୍ଷା ପାଇଁ ଲଣ୍ଡନ ଗଲେ। ସେଠାରେ ସେ ଅକ୍ଲାନ୍ତ ପରିଶ୍ରମ କରି ଅର୍ଥନୀତି, ଆଇନ, ରାଜନୀତି ବିଜ୍ଞାନ, ଇତିହାସ ବିଷୟରେ ଜ୍ଞାନ ଅର୍ଜନ କରିଥିଲେ ଏବଂ ୧୯୨୨ ମସିହାରେ ବାରିଷ୍ଟର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ତା'ପରବର୍ଷ ଭାରତକୁ ଫେରିଆସିଲେ। ସମାଜରେ ଥିବା ଅସମାନତା, କୁସଂସ୍କାର ଓ ଜାତିବାଦର ଭେଦଭାବ ଦୂର କରିବା ପାଇଁ କାର୍ଯ୍ୟ କରିବାକୁ ୧୯୨୩ ମସିହା ପରଠାରୁ ତାଙ୍କର ଲକ୍ଷ୍ୟ ରହିଥିଲା। ଅସ୍ପୃଶ୍ୟମାନେ ଭୋଗୁଥିବା ନିର୍ଯାତନା ସମ୍ପର୍କରେ ଲୋକମାନଙ୍କୁ ସଚେତନ କରିବା ପାଇଁ ସେ 'ମୂକ ନାୟକ' ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରିବା ଆରମ୍ଭ କଲେ। ଭୀମରାଓ ସେଥିରେ ଏକ ପ୍ରବନ୍ଧରେ ଲେଖିଲେ, "ହିନ୍ଦୁଧର୍ମ ହେଉଛି ଏକ ବହୁତଳବିଶିଷ୍ଟ ଦୁର୍ଗ। ଏଥିରେ କୌଣସି ସିଡ଼ି ନାହିଁ କିମ୍ବା ବାହାରକୁ ଯିବାକୁ ବାଟ ନାହିଁ। ଏହା ଏପରି ଏକ ସମାଜ ଯେଉଁଥିରେ କି ନିର୍ଜୀବ ମଧ୍ୟ ଈଶ୍ୱରଙ୍କ ସତ୍ତାକୁ ଅନୁଭବ କରିଥାଏ। ମାତ୍ର ଯେଉଁ ଲୋକମାନେ ସେହି ସମାଜର ଗୁରୁତ୍ୱପୂର୍ଣ୍ଣ ଅଂଶ ସେମାନେ ହୁଅନ୍ତି ଅସ୍ପୃଶ୍ୟ।"

ଆମ୍ବେଦକର ବହୁ ହିନ୍ଦୁଗ୍ରନ୍ଥ ମନଯୋଗିତା ସହିତ ଅଧ୍ୟୟନ କରିଥିଲେ। ମନୁସ୍ମୃତି ଗ୍ରନ୍ଥକୁ ମଧ୍ୟ ସେ ମନଯୋଗ ସହକାରେ ପଢ଼ି ମ୍ରିୟମାଣ ହୋଇପଡ଼ିଥିଲେ। ସେ କହିଲେ ଏ ବହିରେ ମଣିଷକୁ ମଣିଷ ପରି ବିଚାର କରାଯାଇନାହିଁ। ଏଥିରେ ହିନ୍ଦୁ ସମାଜକୁ ଭାଙ୍ଗି ଖଣ୍ଡ ଖଣ୍ଡ କରିଦିଆଯାଇଛି। ଏ ବହି ସମାଜର ଉଚ୍ଚନୀଚ ଭେଦଭାବକୁ ପ୍ରଶ୍ରୟ ଦେଉଛି। ମନୁସ୍ମୃତି ଗ୍ରନ୍ଥରେ ଅନ୍ଧବିଶ୍ୱାସ ଓ କୁସଂସ୍କାରର ପ୍ରସାର ପାଇଁ ବହୁ ଉପାଦାନ ଭରି ରହିଛି। ତେଣୁ ସେହି ଗ୍ରନ୍ଥକୁ ପୋଡ଼ିଦେଇଛନ୍ତି ବୋଲି ଖୋଲାଖୋଲି ଭାବରେ କହିବୁଲିଲେ। ଆଜି ମଧ୍ୟ ମାୟାବତୀ ଏହି ମନୁସ୍ମୃତି ଗ୍ରନ୍ଥକୁ ହିନ୍ଦୁ ବ୍ରାହ୍ମଣ ସମାଜର ଅନ୍ୟ ଜାତିମାନଙ୍କ ଉପରେ ଅତ୍ୟାଚାର କରିବାର ପ୍ରଧାନ ଅସ୍ତ୍ର ବୋଲି କହି ବୁଲୁଛନ୍ତି।

ମହାରାଷ୍ଟ୍ରର ନାସିକଠାରେ ଏକ ବିଖ୍ୟାତ ଶ୍ରୀରାମ ମନ୍ଦିର ରହିଛି। ଏହି ମନ୍ଦିରରେ ୨ ମାର୍ଚ୍ଚ ୧୯୩୦ରେ ଦଳିତମାନେ ପ୍ରବେଶ କରିବା ପାଇଁ ଏକ ପ୍ରସ୍ତାବ ନିଆଯାଇଥିଲା। ଉଚ୍ଚଜାତିର ଲୋକେ ଏହାର ଘୋର ପ୍ରତିବାଦ କଲେ। ଆମ୍ବେଦକର ଦଳିତମାନଙ୍କ ମନୋବଳ ବଢ଼ାଇବାକୁ ମାସେକାଳ ସେଠାରେ ସତ୍ୟାଗ୍ରହ କଲେ। ପୋଲିସ ଫୌଜ ମନ୍ଦିର ଚାରିପଟରେ ଦଳିତମାନଙ୍କର ପ୍ରବେଶକୁ ପ୍ରତିରୋଧ କରିବାକୁ ଜଗି ରହିଲେ। ପରେ ପ୍ରଶାସନର ହସ୍ତକ୍ଷେପ ଫଳରେ ଉଭୟ ଦଳିତ ଓ ଉଚ୍ଚଜାତିର

ଲୋକମାନଙ୍କ ମଧ୍ୟରେ ଏକ ରାଜିନାମା ହେଲା । ଏଥିରେ ଦଳିତମାନଙ୍କୁ ଶ୍ରୀରାମଙ୍କ ରଥ ଟାଣିବାକୁ ପ୍ରଥମଥର ପାଇଁ ସୁବିଧା ସୁଯୋଗ ମିଳିଲା । କିନ୍ତୁ ମନ୍ଦିର ପ୍ରବେଶରୁ ନିବୃତ୍ତ କରାଗଲା । ଆମ୍ବେଦକର ଦଳିତମାନଙ୍କ ପାଇଁ କିଛି ସୁବିଧା ହାସଲ କରିଥିବାରୁ ଆନନ୍ଦିତ ଥିଲେ । କିନ୍ତୁ ଉଚ୍ଚଜାତିର ହିନ୍ଦୁମାନେ ଦଳିତମାନଙ୍କୁ ରଥ ଟଣାଇ ଦେଲେନାହିଁ । ସବୁବେଳେ ଉଚ୍ଚଜାତିର ହିନ୍ଦୁ ଲୋକମାନେ ଦଳିତ ଜାତିର ହିନ୍ଦୁମାନଙ୍କ ପ୍ରତି ଅସହିଷ୍ଣୁତା ମନୋଭାବ ପୋଷଣ କରୁଥିଲେ ଓ ଏବେ ମଧ୍ୟ କରୁଛନ୍ତି ।

ମହାତ୍ମାଗାନ୍ଧି ଲେଖିଥିଲେ, "What I want, what I am living for and what I should delight in dying for, is the eradication of untouchability, root and branch." ଆମ୍ବେଦକର ମଧ୍ୟ ହିନ୍ଦୁଧର୍ମରୁ ଜାତିଭେଦ ଓ ଅସ୍ପୃଶ୍ୟତା ଦୂର କରିବାକୁ ଆପ୍ରାଣ ଉଦ୍ୟମ କରିଥିଲେ । ଆଜିପର୍ଯ୍ୟନ୍ତ ନା ଗାନ୍ଧିଜୀଙ୍କର ଇଚ୍ଛା ପୂର୍ଣ୍ଣ ହେଲା ନା ଆମ୍ବେଦକରଙ୍କର ସ୍ୱପ୍ନ ସାକାର ହେଲା । ଅନନ୍ୟୋପାୟ ହୋଇ ଡକ୍ଟର ଆମ୍ବେଦକର ୧୯୫୬ ମସିହା ଅକ୍ଟୋବର ୧୪ ତାରିଖରେ ନାଗପୁରଠାରେ ତାଙ୍କର ଲକ୍ଷ ଲକ୍ଷ ଅନୁଗାମୀଙ୍କ ସହିତ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ।

*ସମାଜ - ୧୪.୪.୨୦୧୭*

# କେବେ ପୂରଣ ହେବ ଗୋପବନ୍ଧୁଙ୍କ ସ୍ୱପ୍ନ ?

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ୯ ଅକ୍ଟୋବର ୧୮୭୭ ମସିହାରେ ଜନ୍ମଗ୍ରହଣ କରି ୧୭ ଜୁନ୍ ୧୯୨୮ରେ ପବିତ୍ର ନେତ୍ରୋତ୍ସବ ଦିନ ସତ୍ୟବାଦୀ ବନବିଦ୍ୟାଳୟ ପ୍ରାଙ୍ଗଣରେ ଦେହତ୍ୟାଗ କରିଥିଲେ। ସେତେବେଳକୁ ତାଙ୍କୁ ମାତ୍ର ୫୦ ବର୍ଷ ୮ ମାସ ୭ ଦିନ ହୋଇଥିଲା। ହେତୁ ପାଇବା ପରଠାରୁ ଓଡ଼ିଶାର ଦରିଦ୍ର ଜନସାଧାରଣଙ୍କ ଜୀବନଧାରଣର ମାନ କିଭଳି ଉନ୍ନତ ହେବ ସେଥିପାଇଁ ଗୋପବନ୍ଧୁ ନିଜକୁ ନିୟୋଜିତ କରିଥିଲେ। ଓଡ଼ିଶାର ଜନସାଧାରଣ କେମିତି ଦୁଇଓଳି ଦାନା, ପିନ୍ଧିବାକୁ ଲୁଗା ଓ ରହିବାକୁ ଘର ପାଇପାରିବେ ସେଥିପାଇଁ ସେ ଚେଷ୍ଟିତ ଥିଲେ।

ଗୋପବନ୍ଧୁଙ୍କର ଉପଯୁକ୍ତ ଶିକ୍ଷା ପାଇଁ ତାଙ୍କ ପିତା ମୁକ୍ତିଆର ଦୈତାରୀ ଦାଶ ତାଙ୍କ ଗ୍ରାମ ସୁଆଣ୍ଡୋରେ ଏକ ଅବଧାନ ନିଯୁକ୍ତ କରିଥିଲେ। ସେହି ଅବଧାନ ଗୋପବନ୍ଧୁ ଓ ତାଙ୍କ ବଡ଼ଭାଇ ନାରାୟଣକୁ ପଢ଼ାଇବା ସଙ୍ଗେ ସଙ୍ଗେ ଆଖପାଖ ଅଞ୍ଚଳର ପିଲାମାନଙ୍କୁ ବି ପଢ଼ାଉଥିଲେ। ଗାଁ ଚଟଶାଳୀରେ ପଢ଼ିବା ବେଳଠାରୁ ଗୋପବନ୍ଧୁ ଛୋଟ ଛୋଟ କବିତା ଲେଖା ଆରମ୍ଭ କରିଥିଲେ ଓ ସାଙ୍ଗପିଲାମାନଙ୍କୁ କବିତା ଶୁଣାଉଥିଲେ। ଦୁଇପୁଅଙ୍କୁ ପଢ଼ାଇବା ପାଇଁ ଦୈତାରୀ ଦାଶ ଗାଁ ସ୍କୁଲ ପରେ ନିଜ ଗ୍ରାମଠାରୁ ୯ କିଲୋମିଟର ଦୂର ରୂପଦେଈପୁରଠାରେ ଏକ ଭର୍ଣ୍ଣାକୁଲାର ସ୍କୁଲରେ ନାମ ଲେଖାଇଦେଲେ। ପ୍ରତିଦିନ ଦୁଇଭାଇ ସ୍କୁଲକୁ ଚାଲିଚାଲି ଯା'ଆସ କରୁଥିଲେ ଏବଂ ସେଠାରୁ ମାଇନର ପାଶ୍ କରିସାରିବା ପରେ ଦୈତାରୀ ଦାଶ ଗୋପବନ୍ଧୁ ଓ ତାଙ୍କ ଭାଇଙ୍କୁ ପୁରୀ ଜିଲ୍ଲା ସ୍କୁଲରେ ପାଠ ପଢ଼ାଇଲେ। ଗୋପବନ୍ଧୁ ପୁରୀ ଜିଲ୍ଲା ସ୍କୁଲରେ ପଢୁଥିଲା ବେଳେ ତାଙ୍କ ପିତାଙ୍କ ବନ୍ଧୁ ମୁକ୍ତିଆର ରାମଚନ୍ଦ୍ର ଦାଶଙ୍କ ସଂସ୍ପର୍ଶରେ ଆସିଲେ। ମୁକ୍ତିଆର ରାମଚନ୍ଦ୍ର ଦାଶଙ୍କର ପ୍ରଗାଢ଼ ଜନସେବା ମନୋବୃତ୍ତି ଗୋପବନ୍ଧୁଙ୍କ ଉପରେ ବିଶେଷ ପ୍ରଭାବ ପକାଇଥିଲା। ସେତେବେଳେ ପୁରୀରେ ପ୍ରତିବର୍ଷ ହଇଜା ଲାଗୁଥିଲା। ରଥଯାତ୍ରା ବେଳେ ପୁରୀରେ ବହୁଲୋକ ଜମା ହୁଅନ୍ତି, କିନ୍ତୁ ଏତେ ଲୋକଙ୍କ ପିଇବା ପାଇଁ ଭଲ ପାଣି ମିଳେ ନାହିଁ। ପଚାସଢ଼ା ଖାଦ୍ୟ ଖାଇ ମଇଳା ପାଣି ପିଇବା ଦ୍ୱାରା ଲୋକଙ୍କୁ ହଇଜା ହୁଏ। ଯାତ୍ରୀମାନେ ତ କାହିଁ କେତେ ଦୂରରୁ ଆସିଥାଆନ୍ତି। ପୁଣି ହଇଜାରେ ପଡ଼ିଥିବା

ଲୋକଟିର କେହି ଅତି ଆପଣାର ଲୋକ ନ ଥିଲେ କଥା ସରିଲା । ଅନ୍ୟ ଲୋକେ ରୋଗ ଭୟରେ ତାକୁ ଏକୁଟିଆ ଛାଡ଼ିଦେଇ ପଳାନ୍ତି । ବିଚରା ରୋଗୀଟି କଲବଲ ହୋଇ ରାସ୍ତାକଡ଼ରେ ପଡ଼ି ମରେ । ତା' ମୁହଁରେ ପାଣି ମୁନ୍ଦିଏ ଦେବାକୁ କେହି ନଥାନ୍ତି । ମଲାପରେ ବି ତା' ମଡ଼ା ରାସ୍ତାକଡ଼ରେ ପଡ଼ିଥାଏ । ରାମଚନ୍ଦ୍ର ସ୍କୁଲ ପିଲାମାନଙ୍କୁ ନେଇ ଅସହାୟ ହଇଜା ରୋଗୀଙ୍କ ସେବା କରନ୍ତି । ରାସ୍ତାକଡ଼ରୁ ମଡ଼ା ଉଠାଇ ସତ୍କାର କରନ୍ତି । ସ୍କୁଲରେ ପଢୁଥିଲା ବେଳେ ଗୋପବନ୍ଧୁ ଆଗଭର ହୋଇ ରାମଚନ୍ଦ୍ରଙ୍କୁ ଏ କାମରେ ଖୁବ୍ ସାହାଯ୍ୟ କରୁଥିଲେ । ମୁକ୍ତିଆର ରାମଚନ୍ଦ୍ରଙ୍କୁ ସେ ମନେ ମନେ ନିଜର ଆଦର୍ଶ ଭାବରେ ଗ୍ରହଣ କରିନେଲେ । ତାଙ୍କରି ଉପଦେଶ ମାନି ସେ ସରକାରୀ ଚାକିରି ନ କରି ଦରିଦ୍ର ଜନସାଧାରଣଙ୍କ ସେବା ପାଇଁ ସାରାଜୀବନ ନିୟୋଜିତ କରିବେ ବୋଲି ସ୍ଥିର କରିଥିଲେ ।

୧୮୯୯ ମସିହାରେ ପୁରୀ ଜିଲ୍ଲା ସ୍କୁଲରୁ ମାଟ୍ରିକ୍ୟୁଲେସନ ପାଶ୍ କରିବା ପରେ ରେଭେନ୍ସା ମହାବିଦ୍ୟାଳୟରେ ସେ ପ୍ରଥମ ବର୍ଷ କଳା ଶ୍ରେଣୀରେ ଯୋଗଦେଲେ । କଲେଜରେ ପଢ଼ିବା ପୂର୍ବରୁ ତାଙ୍କ ପିତାଙ୍କର ଦେହାନ୍ତ ହୋଇଥିଲା, ତେଣୁ ନିଜ ସ୍ତ୍ରୀ ମୋତିଦେବୀଙ୍କୁ ଗାଁରେ ଛାଡ଼ି ବଡ଼ଭାଇ ନାରାୟଣ ଦାଶଙ୍କୁ ଘରର ସମସ୍ତ ଦାୟିତ୍ୱ ସମର୍ପି କଟକରେ ପାଠ ପଢ଼ିଲେ । କଟକରେ ସେ ଜନସେବା କାର୍ଯ୍ୟକୁ ସଫଳ ରୂପାୟନ ପାଇଁ 'କର୍ତ୍ତବ୍ୟବୋଧିନୀ ସମିତି' ନାମକ ଏକ ସଂଗଠନ ସ୍ଥାପନ କଲେ । ତାଙ୍କୁ ଏହି କାର୍ଯ୍ୟରେ ବ୍ରଜସୁନ୍ଦର ଦାସ ଓ ହରିହର ଦାସ ସହଯୋଗ କରୁଥିଲେ । ସେମାନେ ଓଡ଼ିଶାର ବନ୍ୟାପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ସ୍ୱେଚ୍ଛାସେବକମାନଙ୍କୁ ସଂଗଠିତ କରି କଟକ ସହରରେ ଚାନ୍ଦା ସଂଗ୍ରହ କରୁଥିଲେ । ତାଙ୍କ ସହପାଠୀମାନଙ୍କ ମଧ୍ୟରେ ପୁରୀର ଜଗବନ୍ଧୁ ସିଂହ ଥିଲେ ପ୍ରଧାନ । ୧୯୦୧ ମସିହାରେ ଗୋପବନ୍ଧୁ ଏଫ୍.ଏ. ପାଶ୍ କଲେ ଓ ୧୯୦୪ରେ ବି.ଏ. ପାଶ୍ କଲେ । ୧୯୦୩ ମସିହା ଜାନୁଆରୀ ୩ ତାରିଖରେ ମଧୁସୂଦନଙ୍କ ପ୍ରତିଷ୍ଠିତ ଉତ୍କଳ ସମ୍ମିଳନୀ ଦ୍ୱାରା କଟକରେ ଆୟୋଜିତ ସଭାରେ ଗୋପବନ୍ଧୁ ଛାତ୍ରନେତା ଭାବରେ ଯୋଗଦେଇ ସ୍ୱେଚ୍ଛାସେବୀ ରୂପେ ମଧୁସୂଦନ ଦାସଙ୍କୁ ସାହାଯ୍ୟ କରିଥିଲେ । ଏହି ସମ୍ମିଳନୀରେ ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ସଭାପତିତ୍ୱ କରିଥିଲେ ଓ ଏହାର ମୁଖ୍ୟ ପୃଷ୍ଠପୋଷକ ଥିଲେ । ୧୯୦୪ରେ ସେ ଏକାବେଳକେ ଏମ୍.ଏ. ଓ ଆଇନ ପଢ଼ିବା ପାଇଁ କଲିକତା ଯାଇଥିଲେ; କିନ୍ତୁ ୧୯୦୬ରେ ଆଇନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ

ହୋଇ ଓଡ଼ିଶାକୁ ଫେରିଆସି କଟକଠାରେ ଆଇନ୍ ବ୍ୟବସାୟ ଆରମ୍ଭ କରିଥିଲେ। ସେ ଗୋକୁଳାନନ୍ଦ ଚୌଧୁରୀ, ମଧୁସୂଦନ ଦାସ ଓ ବୈକୁଣ୍ଠନାଥ ଦତ୍ତଙ୍କ ପାଖରେ ଆଇନ୍ ବ୍ୟବସାୟର ତାଲିମ୍ ହାସଲ କରିଥିଲେ। ମଧୁସୂଦନ ଦାସଙ୍କ ବ୍ୟକ୍ତିତ୍ୱ ଓ ଦରିଦ୍ର ଜନସାଧାରଣଙ୍କ ପ୍ରତି ସମ୍ବେଦନଶୀଳ ମନୋବୃତ୍ତି ତାଙ୍କୁ ଖୁବ୍ ପ୍ରଭାବିତ କରିଥିଲା। ୧୯୦୭ ମସିହାରେ ସେ କଟକରୁ ପୁରୀ ଚାଲିଆସି ସେଠାରେ ଓକିଲାତି ଆରମ୍ଭ କରିଥିଲେ, କିନ୍ତୁ ଜନସେବା ହିଁ ତାଙ୍କ ଜୀବନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଏବଂ ସେ ସଦାସର୍ବଦା ଦରିଦ୍ର ଜନସାଧାରଣଙ୍କ ସେବାରେ ନିଜର ସମୟ ବିତାଉଥିଲେ। ଗୋପବନ୍ଧୁ ଦାସ ସବୁ କାମରେ ବ୍ୟସ୍ତ ରହୁଥିଲେ ମଧ୍ୟ ସାମାଜିକ ସମସ୍ୟା ପ୍ରତି ଲୋକଙ୍କୁ ସଚେତନ କରାଇବା ଓ ତା'ର ସମାଧାନ ପାଇଁ ଉଦ୍ୟମ କରୁଥିଲେ। ୧୯୦୮ ମସିହାରେ ଉତ୍କଳ ସମ୍ମିଳନୀର ପଞ୍ଚମ ଅଧିବେଶନରେ ଗୋପବନ୍ଧୁଙ୍କ ପ୍ରସ୍ତାବ କ୍ରମେ ମଧୁସୂଦନ ଦାସ ଉତ୍କଳ ସମ୍ମିଳନୀର ସଭାପତି ଭାବରେ ସର୍ବସମ୍ମତି କ୍ରମେ ମନୋନୀତ ହୋଇଥିଲେ। ମଧୁସୂଦନ ଦାସଙ୍କର ଆଦର୍ଶ, ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ନିଜ ଜୀବନକୁ ସମର୍ପଣ ଗୋପବନ୍ଧୁଙ୍କୁ ବହୁ ପ୍ରଭାବିତ କରିଥିଲା। ୧୯୧୯ ମସିହାରେ ମଧୁସୂଦନ ଦାସ ଉତ୍କଳ ସମ୍ମିଳନୀର ସଭାପତି ପଦରୁ ସ୍ୱେଚ୍ଛାକୃତ ଅବସର ନେବାରୁ ଗୋପବନ୍ଧୁ ଦାସ ସର୍ବସମ୍ମତି କ୍ରମେ ସଭାପତି ଦାୟିତ୍ୱ ଗ୍ରହଣ କରିଥିଲେ। ସେ ସଭାପତି ଦାୟିତ୍ୱ ଗ୍ରହଣ କଲାପରେ ମଧୁସୂଦନ ଦାସଙ୍କ ଦ୍ୱାରା ଅବିରତ ଭାବରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରୀକରଣ କରିବାର ପ୍ରଚେଷ୍ଟା ସହିତ ଓଡ଼ିଆ ଭାଷା ଓ ସଂସ୍କୃତିକୁ ବଞ୍ଚାଇ ରଖିବା ପାଇଁ ବିଚ୍ଛିନ୍ନାଞ୍ଚଳଗୁଡ଼ିକରେ ଓଡ଼ିଆ ବିଦ୍ୟାଳୟମାନ ସ୍ଥାପନ କରିଥିଲେ।

୧୯୦୯ ମସିହା ଅଗଷ୍ଟ ମାସ ୧୨ ତାରିଖ କୁମାର ପୂର୍ଣ୍ଣିମା ଦିନ ସାକ୍ଷୀଗୋପାଳର ବକୁଳ ବନକୁଞ୍ଜରେ ୧୯ ଜଣ ଛାତ୍ରଙ୍କୁ ନେଇ ସେ ପ୍ରତିଷ୍ଠା କରିଥିଲେ ସତ୍ୟବାଦୀ ବନବିଦ୍ୟାଳୟ ଯାହାକୁ ଏକ ମଣିଷ ତିଆରି କାରଖାନା ରୂପେ ବିବେଚନା କରାଯାଏ। ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ପଣ୍ଡିତ କୃପାସିନ୍ଧୁ ମିଶ୍ର ଏହି ବିଦ୍ୟାଳୟରେ ଶିକ୍ଷକତା କରିଥିଲେ। ଅନୁମୋଦିତ ପାଠ୍ୟକ୍ରମ ବ୍ୟତୀତ କୃଷି, ଲୁଗାବୁଣା, ବଢ଼େଇ କାମ ଓ ସଙ୍ଗୀତ ଶିକ୍ଷା, ଖେଳ କସରତ ଆଦିକୁ ମଧ୍ୟ ଶିକ୍ଷକମାନେ ଗୁରୁତ୍ୱ ଦେଉଥିଲେ।

ଗୋପବନ୍ଧୁ ୧୯୦୯ ମସିହା ଶେଷଭାଗରେ ମୟୂରଭଞ୍ଜର ପ୍ରଜାରଞ୍ଜନ

ମହାରାଜା ଶ୍ରୀରାମଚନ୍ଦ୍ରଦେବଙ୍କ ଅନୁରୋଧ କ୍ରମେ ମୟୂରଭଞ୍ଜ ଷ୍ଟେଟ୍ ଓକିଲ ରୂପେ ସେଠାରେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ଗୋପବନ୍ଧୁଙ୍କର ପ୍ରସ୍ତାବ ଅନୁସାରେ ମହାରାଜା ବହୁ ଲୋକହିତକର କାର୍ଯ୍ୟ କରିବାକୁ ସମର୍ଥ ହୋଇଥିଲେ । ଗୋପବନ୍ଧୁ ଆଦିବାସୀ ପିଲାଙ୍କ ଶିକ୍ଷା ଓଡ଼ିଶାରେ ଯେ ଅତ୍ୟନ୍ତ ଆବଶ୍ୟକ ସେ କାଳରେ ଉପଲବ୍ଧି କରିଥିଲେ । ଗୋପବନ୍ଧୁ ତାଙ୍କ ବସା ନିକଟରେ ଆଦିବାସୀ ସାନ୍ତାଳ ପିଲାମାନଙ୍କ ପାଇଁ ପ୍ରଥମ କରି ଗୋଟିଏ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଗୋପବନ୍ଧୁଙ୍କ ଚେଷ୍ଟାରେ ଓ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କର ସମ୍ପୂର୍ଣ୍ଣ ପୃଷ୍ଠପୋଷକତାରେ ଏହି ବିଦ୍ୟାଳୟଟି ପରିଚାଳିତ ହେଲା ଏବଂ ଗୋଟିଏ ଅନାଥାଶ୍ରମ ମଧ୍ୟ ସେଠାରେ ସ୍ଥାପିତ ହେଲା । ଗୋପବନ୍ଧୁ ତାଙ୍କର ବାଲ୍ୟଶିକ୍ଷକ ପଣ୍ଡିତ ସଦାଶିବ ମିଶ୍ରଙ୍କୁ ଏହି ବିଦ୍ୟାଳୟର ପରିଚାଳନା ଦାୟିତ୍ୱ ଅର୍ପଣ କରିଥିଲେ ଯାହାକୁ ସେ ସୁଚାରୁରୂପେ ତୁଲାଇଥିଲେ ।

ଗୋପବନ୍ଧୁ ୧୯୧୫ ମସିହାରେ 'ସତ୍ୟବାଦୀ' ନାମରେ ଖଣ୍ଡିଏ ମାସିକ ପତ୍ରିକା ବାହାର କଲେ । କିଛିଦିନ ପରେ ସତ୍ୟବାଦୀ ପ୍ରେସ୍ (ଛାପାଖାନା) ସତ୍ୟବାଦୀ ଠାରେ ବସାଇଲେ । ତା'ପରେ ୪ ଅକ୍ଟୋବର ୧୯୧୯ ମସିହା ପବିତ୍ର ଦଶହରା ଦିନ ଗୋପବନ୍ଧୁଙ୍କ ସମ୍ପାଦନାରେ 'ସମାଜ' ଏକ ସାପ୍ତାହିକୀ ରୂପରେ ଆତ୍ମପ୍ରକାଶ କଲା । ୨୨ ବର୍ଷର ଯୁବକ ରାଧାନାଥ ରଥଙ୍କ ସହିତ ୧୯୧୯ ମସିହା ସେପ୍ଟେମ୍ବର ମାସ ୫ ତାରିଖ ଦିନ ସିଂହଭୂମ ଜିଲ୍ଲାର ଚାଇଁବସାଠାରେ ଗୋପବନ୍ଧୁଙ୍କର ସାକ୍ଷାତ ହୋଇଥିଲା । ରାଧାନାଥ ରଥ ସରକାରୀ ଚାକିରିରୁ ଇସ୍ତଫା ଦେଇ ଗୋପବନ୍ଧୁଙ୍କ ଆଦର୍ଶରେ ନିଜକୁ ପରିଚାଳିତ କରିବାର ଇଚ୍ଛା ପ୍ରକାଶ କରି ଗୋପବନ୍ଧୁଙ୍କ ସହିତ ଜଡ଼ିତ ହେଲେ । ଏହାର ମାସକ ପରେ ୧୯୧୯ ମସିହା ଅକ୍ଟୋବର ମାସରେ ଗୋପବନ୍ଧୁ ରାଧାନାଥ ରଥଙ୍କ ତ୍ୟାଗ, ସେବା ଓ ନିଷ୍ଠା ମନୋଭାବର ପରିଚୟ ପାଇ ତାଙ୍କୁ 'ସମାଜ'ର ପରିଚାଳନା ଦାୟିତ୍ୱ ଅର୍ପଣ କଲେ । 'ସମାଜ' ପତ୍ରିକା ପ୍ରକାଶ ପାଇବା ପରଠାରୁ ଓଡ଼ିଶାବାସୀଙ୍କର ଦୁଃଖ, ଦୁର୍ଦ୍ଦଶା, ଅଭାବ, ଅନଟନ, ସରକାରୀ ଅବହେଳା ସମ୍ପର୍କିତ ଖବରମାନ ସେଥିରେ ପ୍ରକାଶ ପାଇବାଦ୍ୱାରା ରାଜ୍ୟବାସୀଙ୍କ ମଧ୍ୟରେ ଏକ ସଚେତନତା ସୃଷ୍ଟି ହେଲା ଯାହା ଅଦ୍ୟାବଧି ଅବ୍ୟାହତ ରହିଛି ।

ଗୋପବନ୍ଧୁ ଦାସ ବଢ଼ି, ମରୁଡ଼ି, ଘରପୋଡ଼ି ପ୍ରଭୃତି ପ୍ରପୀଡ଼ିତମାନଙ୍କୁ ସାହାଯ୍ୟ କରିବା ସହିତ ସମାଜରେ ପ୍ରଚଳିତ କୁସଂସ୍କାର ବିରୁଦ୍ଧରେ ଯେଉଁ କାର୍ଯ୍ୟ କରିଛନ୍ତି ତାହାର କିଛିଟା ଉଲ୍ଲେଖ ଅତ୍ୟନ୍ତ ଜରୁରୀ । ପ୍ରଥମ କାର୍ଯ୍ୟଟି ହେଲା ସେ ବିଧବାମାନଙ୍କ

ପାଇଁ ଏକ ବିଧବାଶ୍ରମ ପ୍ରତିଷ୍ଠା କରିଥିଲେ । ସାମାଜିକ ବ୍ୟବସ୍ଥା ଅନୁଯାୟୀ ବିଧବାମାନେ ବହୁ ନିର୍ଯାତନାର ସମ୍ମୁଖୀନ ହୁଅନ୍ତି । ବନାରସ ଭଳି ପୁରୀ ଏକ ତୀର୍ଥ ସ୍ଥାନ ହୋଇଥିବାରୁ ଏହି ସହରକୁ ଅସହ୍ୟ ଉତ୍ପୀଡ଼ନର ଶିକାର ହେଉଥିବା ବିଧବାମାନେ ନିଜ ପରିବାର ଦ୍ୱାରା ବିତାଡ଼ିତ ହୋଇ ପଳାଇଆସନ୍ତି ଜଗନ୍ନାଥଙ୍କ ବିଜେସ୍ଥଳୀରେ ନିଜର ଗୁଜୁରାଣ ମେଣ୍ଟାଇବାକୁ । କର୍ମ ଅନୁସନ୍ଧାନରେ ସେମାନେ ଥିଲାବାଲା ପରିବାରରେ ଯାବତୀୟ ଗୃହ କାମ, ଯଥା- ବାସନ ମାଜିବା, ରୋଷେଇ କରିବା, ଧାନ କୁଟିବା ଇତ୍ୟାଦି କରିଥାନ୍ତି । ତଥାପି ବିଭିନ୍ନ ଉପାୟରେ ସେମାନଙ୍କୁ ଶୋଷଣ କରାଯାଏ । ହିନ୍ଦୁ ସମାଜର ବିଧବାମାନଙ୍କ ପ୍ରତି ନିଷ୍ଠୁରତାକୁ ଅନୁଭବ କରି ୧୯୨୬ ମସିହାରେ ପୁରୀଠାରେ ପ୍ରତିଷ୍ଠା କରିଥିଲେ 'ଜଗନ୍ନାଥ ବିଧବା ଆଶ୍ରମ' । ଏହି ଆଶ୍ରମରେ ବିଧବାମାନଙ୍କୁ ବିଭିନ୍ନ କୁଟୀରଶିଳ୍ପର ଶିକ୍ଷା ଦିଆଯାଉଥିଲା ଏବଂ ସେମାନଙ୍କୁ ଉପାର୍ଜନକ୍ଷମ କରାଯାଉଥିଲା । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଥିଲା ଯେ ଏହି ଆଶ୍ରମରେ ସେମାନେ ସମ୍ପୂର୍ଣ୍ଣଭାବେ ସୁରକ୍ଷିତ ଥିଲେ ଏବଂ ମର୍ଯ୍ୟାଦା ସହିତ ଜୀବନଯାପନ କରିବାର ସୁଯୋଗ ପାଇଥିଲେ । ଆମ ସମାଜରେ ମଧ୍ୟ ଏତେ କୁସଂସ୍କାର ରହିଛି ଯାହାଦ୍ୱାରା ନିରପରାଧ ଲୋକମାନେ ଦଣ୍ଡିତ ହୋଇ ଘୋର ଦୁର୍ଦ୍ଦଶାର ସମ୍ମୁଖୀନ ହୁଅନ୍ତି । ଉଦାହରଣସ୍ୱରୂପ ଯଦି ପଘାରେ ବନ୍ଧା ହୋଇଥିବା ଗାଈଟିଏ ମରିଗଲା ତେବେ ଗାଈଟିର ମାଲିକକୁ ଅର୍ଥଦଣ୍ଡରେ ଦଣ୍ଡିତ କରାଯାଏ । ଗୃହର ତରୁଣ/ତରୁଣୀଟିଏ ଯଦି ନିଜ ଇଚ୍ଛାରେ କୌଣସି ଅନ୍ୟ ଜାତିରେ ବିବାହ କଲା ସେ ପରିବାରର ସମସ୍ତଙ୍କୁ ଗ୍ରାମରେ ନିଆଁପାଣି ବାସନ୍ଦର ଦଣ୍ଡ ଦିଆଯାଇଥାଏ । ଉଚ୍ଚବର୍ଣ୍ଣର ହିନ୍ଦୁମାନଙ୍କ ଦ୍ୱାରା ଦୁର୍ବ୍ୟବହାର, ଘୃଣା ଓ ଉତ୍ପୀଡ଼ନର ଶିକାର ହୋଇ ବହୁ ଲୋକ ଧର୍ମ ପରିବର୍ତ୍ତନ କରିଥାନ୍ତି । ସମାଜରେ ଥିବା ଅନ୍ଧବିଶ୍ୱାସର କୁପ୍ରଭାବ ଓ ଏହାର ନିରାକରଣ ପାଇଁ ଲୋକମାନଙ୍କୁ ସଚେତନ କରାଇବାକୁ ଗୋପବନ୍ଧୁ ସବୁବେଳେ ସଭାସମିତିମାନଙ୍କରେ କହିବା ସହିତ ଖବରକାଗଜରେ ପ୍ରକାଶ କରୁଥିଲେ ।

୧୯୨୦ ମସିହା ସେପ୍ଟେମ୍ବର ୪ରେ ଗୋପବନ୍ଧୁ କଲିକତାଠାରେ ଅନୁଷ୍ଠିତ ହୋଇଥିବା ଜାତୀୟ କଂଗ୍ରେସ ଅଧିବେଶନରେ ଯୋଗଦେଇଥିଲେ । ବ୍ରିଟିଶ ସରକାର ସହିତ ଅସହଯୋଗ ଆନ୍ଦୋଳନ କରାଯିବାର ନିଷ୍ପତ୍ତି ଏହି ଅଧିବେଶନରେ ଗୃହୀତ ହୋଇଥିଲା । ପଣ୍ଡିତ ଗୋପବନ୍ଧୁ ଦାସ ଏହି କାର୍ଯ୍ୟକ୍ରମକୁ ଓଡ଼ିଶାରେ ପ୍ରଚାର କରିବାପାଇଁ ଦାୟିତ୍ୱ ନେଇଥିଲେ । ୧୯୨୦ ମସିହା ଡିସେମ୍ବର ୩୦ ତାରିଖ ଦିନ ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀର ଗୋଟିଏ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀରେ

ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପ୍ରସ୍ତାବ "ଏହି ସଭା ପ୍ରସ୍ତାବ କରୁଛି ଯେ ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ସହିତ ଭାରତୀୟ ଜାତୀୟ କଂଗ୍ରେସର ଲକ୍ଷ୍ୟ ମଧ୍ୟ ସମ୍ମିଳନୀର ଲକ୍ଷ୍ୟ ହେଉ।" ସିଂହଭୂମର ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ଦ୍ୱାରା ଆଗତ ଏକ ପ୍ରସ୍ତାବ- "ଏହି ସଭା ପ୍ରସ୍ତାବ କରୁଛି ଯେ ଭାଷାଭିତ୍ତିକ ପ୍ରଦେଶ ଗଠନ ବିଷୟରେ ଭାରତୀୟ ଜାତୀୟ କଂଗ୍ରେସ ଦ୍ୱାରା ଗୃହୀତ ପ୍ରସ୍ତାବକୁ ସମ୍ମିଳନୀ ସର୍ବାନ୍ତକରଣରେ ସମର୍ଥନ କରୁ।" ଏହି ପ୍ରସ୍ତାବଟି ପଣ୍ଡିତ ନୀଳକଣ୍ଠ ଦାସଙ୍କ ଦ୍ୱାରା ସମର୍ଥିତ ହୋଇଥିଲା। ଗୋପବନ୍ଧୁ ସବୁବେଳେ କହୁଥିଲେ ଓଡ଼ିଶା ଭାରତର ଏକ ଅଂଶବିଶେଷ। ଓଡ଼ିଶାର ପ୍ରାଦେଶିକତା ଭାରତର ଜାତୀୟତାଠାରୁ ପୃଥକ୍ ହୋଇନପାରେ, ତେଣୁ ସେ ଉତ୍କଳ ସମ୍ମିଳନୀକୁ ଭାରତୀୟ ଜାତୀୟ କଂଗ୍ରେସର ଗୋଟିଏ ଅଂଶ କରିବା ଲାଗି ପ୍ରଗାଢ଼ ଉଦ୍ୟମ କରିଥିଲେ। ଏହି ଚକ୍ରଧରପୁର ଅଧିବେଶନରେ ସେ ନିଜ ଲକ୍ଷ୍ୟ ହାସଲ କରିବାରେ ସଫଳ ହୋଇ ନିଜକୁ କଂଗ୍ରେସ ଓ ଗାନ୍ଧିଜୀଙ୍କ ଆଦର୍ଶରେ ସର୍ବାନ୍ତକରଣରେ ନିୟୋଜିତ କଲେ। ଗୋପବନ୍ଧୁଙ୍କର ଓଡ଼ିଶାବାସୀଙ୍କ ପାଇଁ ବାର୍ତ୍ତା ଥିଲା,

"ଗୃହରେ ଅରଟ, ଗ୍ରାମେ ପଞ୍ଚାୟତ
ଗ୍ରାମବାସୀଗଣ ମଧ୍ୟେ ଏକମତ।
ସ୍ୱରାଜ୍ୟ ସାଧନେ ଏହି ତିନି ପଦ
ପାଳିଲେ ଖଣ୍ଡିବ ଉତ୍କଳ ବିପଦ।"

ପଣ୍ଡିତ ଗୋପବନ୍ଧୁ ଦାସ ୧୯୧୭ରୁ ୧୯୨୦ ମସିହା ପର୍ଯ୍ୟନ୍ତ ବିହାର, ଓଡ଼ିଶା ବ୍ୟବସ୍ଥାପକ ପରିଷଦର ସଦସ୍ୟ ଥିଲେ। ମହାତ୍ମା ଗାନ୍ଧୀ ଗୋପବନ୍ଧୁଙ୍କର ଅନୁରୋଧ ରକ୍ଷା କରି ୨୩ ମାର୍ଚ୍ଚ ୧୯୨୧ରେ ପ୍ରଥମଥର ପାଇଁ କଟକରେ ପହଞ୍ଚି କାଠଯୋଡ଼ି ବାଲିରେ ଏକ ବିରାଟ ସଭାରେ ଓଡ଼ିଶାବାସୀଙ୍କୁ ଅସହଯୋଗ ଆନ୍ଦୋଳନରେ ଯୋଗଦେବାକୁ ନିବେଦନ କରିଥିଲେ। ସଭା ସମାପ୍ତ ପରେ ସେ ମହାତ୍ମା ଗାନ୍ଧୀଙ୍କୁ ନେଇ ପ୍ରଥମେ ପୁରୀ ଓ ପରେ ବ୍ରହ୍ମପୁର ନେଇ ସେଠାରେ ମଧ୍ୟ ସଭାମାନ ଆୟୋଜନ କରିଥିଲେ। ଓଡ଼ିଶାର ଲୋକମାନଙ୍କ ଉପରେ ଗୋପବନ୍ଧୁଙ୍କର ବିରାଟ ପ୍ରଭାବ ରହିଥିବା କଥା ମହାତ୍ମା ଗାନ୍ଧୀ ଉପଲବ୍ଧି କରିଥିଲେ। ଏହି ଗସ୍ତ ସମୟରେ ମହାତ୍ମା ଗାନ୍ଧୀ ପଣ କରିଥିଲେ ଦରିଦ୍ର ଓଡ଼ିଆ ଗଣ୍ଡିଏ ଖାଦ୍ୟ ଓ ଖଣ୍ଡିଏ ଲୁଗା ପାଇବା ପର୍ଯ୍ୟନ୍ତ ସେ ବଡ଼ ଧୋତି ପିନ୍ଧିବେ ନାହିଁ। ସେ କହିଥିଲେ "ଓଡ଼ିଶା ହିଁ ଭାରତର ଦାରିଦ୍ର୍ୟର ସଂକ୍ଷିପ୍ତସାର।" ଗୋପବନ୍ଧୁଙ୍କ ଜୀବନକାଳ ସମୟରେ ମହାତ୍ମା ଗାନ୍ଧୀ ୧୯୨୫ ମସିହାରେ ଦୁଇଥର

ଓ ୧୯୨୭ରେ ଥରେ ଏହିପରି ଯରିଥର ଏବଂ ଗୋପବନ୍ଧୁଙ୍କ ମୃତ୍ୟୁ ପରେ ଘରିଥର ଓଡ଼ିଶାକୁ ଆସିଥିଲେ। ମହାତ୍ମା ଗାନ୍ଧୀ ୧୯୪୬ ମସିହାରେ ଶେଷଥର ପାଇଁ ଓଡ଼ିଶା ଆସିଥିଲେ।

ଗୋପବନ୍ଧୁ ୧୯୨୬ରେ ଲାଲା ଲଜ୍‌ପତ୍ ରାୟଙ୍କ ଲୋକସେବକ ମଣ୍ଡଳ ସହିତ ସଂଶ୍ଳିଷ୍ଟ ହୋଇଥିଲେ ଏବଂ ୧୯୨୮ରେ ଲାହୋରରେ ଅନୁଷ୍ଠିତ ଅଧିବେଶନରେ ଏହାର ସର୍ବଭାରତୀୟ ଉପସଭାପତି ରୂପେ ନିର୍ବାଚିତ ହୋଇଥିଲେ।

ଗୋପବନ୍ଧୁ ନିଜ ଭାବନାକୁ କବିତାରେ ଫୁଟାଇବାକୁ ଚେଷ୍ଟା କରିଛନ୍ତି। ସେ ଜଣେ ମାନବପ୍ରେମୀ ଓ ବିଶ୍ୱପ୍ରେମରେ ଉଦ୍‌ବୁଦ୍ଧ ବ୍ୟକ୍ତି ଥିଲେ। ଗୋଟିଏ ପଦ୍ୟରେ ସେ ଲେଖିଛନ୍ତି,

"ଜାତୀୟ ମମତା ବିଶ୍ୱ ଜନପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି।"

ତାଙ୍କର ଅମୂଲ୍ୟ ସାହିତ୍ୟ ସୃଷ୍ଟି ମଧ୍ୟରେ 'ଅବକାଶ ଚିନ୍ତା', ବନ୍ଦୀର ଆତ୍ମକଥା', 'ଧର୍ମପଦ', 'କାରାକବିତା', 'ଗୋ-ମାହାତ୍ମ୍ୟ', 'ନଚିକେତା ଉପାଖ୍ୟାନ' ଅତ୍ୟନ୍ତ ବୋଧଗମ୍ୟ ଓ ସାରଗର୍ଭକ। ଗୋପବନ୍ଧୁଙ୍କର ପ୍ରତ୍ୟେକ କବିତା ପୁସ୍ତକ ତାଙ୍କ ଜାତିପ୍ରୀତିର ସ୍ୱାକ୍ଷର ବହନ କରିଛି। ଜାତିର ମଙ୍ଗଳ ଓ ସଂସ୍କାର ପାଇଁ ସେ ଐଶ୍ୱରିକ ଶକ୍ତି ଉପରେ ଆସ୍ଥା ସ୍ଥାପନ କରିଛନ୍ତି। ବେଳେବେଳେ ସେ ବିଦ୍ରୋହାତ୍ମକ ମନୋଭାବ ମଧ୍ୟ ନିଜ ଲେଖାରେ ପ୍ରଦର୍ଶନ କରିଛନ୍ତି। ଗୋପବନ୍ଧୁଙ୍କୁ ଆଶାବାଦୀ, ଈଶ୍ୱର ବିଶ୍ୱାସୀ, ମାନବବାଦୀ କବି ଭାବରେ ବର୍ଣ୍ଣନା କରାଯାଇପାରେ। ଗୋପବନ୍ଧୁ ଜାତିବାଦର ବହୁ ଉର୍ଦ୍ଧ୍ୱରେ ଥିଲେ। ତାଙ୍କର ଏକ ପଂକ୍ତିରୁ ଏହା ଜଳଜଳ ଦିଶେ। ସେ ଓଡ଼ିଶାବାସୀଙ୍କୁ ଆହ୍ୱାନ ଦେଇଥିଲେ,

"ବ୍ରାହ୍ମଣ, ଚଣ୍ଡାଳ, ଧନେଶ, ଭିଖାରୀ
ଏକ ନାବେ ବସି ହେଉଛନ୍ତି ପାରି।
ବିକାର କାହାରି ମନେ ନାହିଁ ଲବେ
ଧର୍ମ ନାବେ ସମ ଅଟନ୍ତି ସରବେ।"

ଜାତି ଉଦ୍ଦେଶ୍ୟରେ ତାଙ୍କର ଆହ୍ୱାନ ଥିଲା-

"କାପୁରୁଷ ପରି ମରିବା ଜଗତେ
ନୁହେଁ ନର ପଉରୁଷ

ପରହିତ ସାଧି ମରେ ଯେ ମହୀରେ
ସେହି ଏକା ସୁପୁରୁଷ।"

ପଣ୍ଡିତ ଗୋପବନ୍ଧୁ ଦାସ ତାଙ୍କର ମହତ ଉଦ୍ଦେଶ୍ୟ ସଫଳ କରିବାକୁ ବହୁ ଉଚ୍ଚଶିକ୍ଷିତ ଓ ଚରିତ୍ରବାନ ଯୁବକମାନଙ୍କୁ ସାମିଲ କରିଥିଲେ। ସେମାନଙ୍କ ମଧ୍ୟରେ ଥିଲେ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ କୃପାସିନ୍ଧୁ ମିଶ୍ର, ପଣ୍ଡିତ ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ରାଧାନାଥ ରଥ, ସତ୍ୟବାଦୀ ତ୍ରିପାଠୀ ପ୍ରମୁଖ। ଏମାନେ ପ୍ରତ୍ୟେକ ସମାଜର ଅଶେଷ କଲ୍ୟାଣ ସାଧନ କରିଛନ୍ତି। ଗୋପବନ୍ଧୁ ଲେଖିଥିଲେ,

"ମହାତ୍ମା ସାଧନ ମହାତ୍ମା କଷଣ
ନ ଯାଏ ଜଗତେ କେବେ ଅକାରଣ।"

ଗୋପବନ୍ଧୁ ଦାସଙ୍କର ଦେଶପ୍ରୀତି, ଅସୀମ ତ୍ୟାଗ, ଦୀନଦୁଃଖୀଙ୍କ ସେବା ପାଇଁ ଆତୁରତା, ଭାଷାପ୍ରୀତି, ଶିକ୍ଷାର ପ୍ରସାର ପାଇଁ ପ୍ରତିବଦ୍ଧତା, ନିଃସ୍ୱାର୍ଥପର ଭାବରେ ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଯୋଗଦାନ ତାଙ୍କୁ ଅମରତ୍ୱ ପ୍ରଦାନ କରିଛି। ସି.ଏଫ୍. ଆଣ୍ଡ୍ରୁଜଙ୍କ ଭାଷାରେ ଗୋପବନ୍ଧୁ ଥିଲେ ଦୀନବନ୍ଧୁ। ମାନବସେବା ଥିଲା ତାଙ୍କ ଜୀବନର ବ୍ରତ। ପଣ୍ଡିତ ବନମାଳୀ ଆଚାର୍ଯ୍ୟ ତାଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ,

"ତୁମେ ଦେଶବନ୍ଧୁ ତୁମେ ଜନବନ୍ଧୁ
ତୁମେ ହରିହର ଏକାନ୍ତ ବନ୍ଧୁ
କେଉଁ ବନ୍ଧୁ ବୋଲି ଡାକିବି ତୁମ୍ଭକୁ
ଡାକୁଅଛି ବାଛି ସକଳ ବନ୍ଧୁ।"

ଓଡ଼ିଶାରେ ସେବାଭାବର ଅନ୍ୟତମ ପ୍ରବର୍ତ୍ତକ ହେଉଛନ୍ତି ଗୋପବନ୍ଧୁ ଦାସ କହିଲେ ଅତ୍ୟୁକ୍ତି ହେବନାହିଁ। ତାଙ୍କର ପ୍ରାଣ ଥିଲା ସେବାମୟ। ସେବାକୁ ସେ ଯେକୌଣସି ବ୍ୟକ୍ତିର 'ପ୍ରାୟଶ୍ଚିତ୍ତ' ବୋଲି ଧରିନେଇଥିଲେ। ସେ ବଢ଼ି, ମରୁଡ଼ି ସମୟରେ ପ୍ରପୀଡ଼ିତ ଓଡ଼ିଶାବାସୀଙ୍କର ନିଃସ୍ୱାର୍ଥପର ସେବା କରି ମହାମାନବ ପାଲଟି ଯାଇଛନ୍ତି। ଜାତୀୟବାଦୀ, ମାନବବାଦୀ, ସତ୍ୟବାଦୀ, ପ୍ରଗତିବାଦୀ, ଆଦର୍ଶ ରାଜନୀତିଜ୍ଞ, କର୍ମପ୍ରାଣ, ସେବାପ୍ରାଣ ମହାପୁରୁଷ ଥିଲେ ଗୋପବନ୍ଧୁ ଦାସ। ଉଚ୍ଚ ଚିନ୍ତା ଓ ସରଳ ଜୀବନଯାପନ ତାଙ୍କର ଆଜୀବନ ନୀତି ଥିଲା। ସେ ଶେଷ ନିଃଶ୍ୱାସ ତ୍ୟାଗ

କରିବା ପୂର୍ବରୁ 'ସତ୍ୟବାଦୀ ପ୍ରେସ୍' ଓ 'ସମାଜ' ଖବରକାଗଜକୁ ଲୋକସେବକ ମଣ୍ଡଳ ହାତରେ ଦାନ କରିଦେଇଛନ୍ତି। ତାଙ୍କର ସମସ୍ତ ସମ୍ପତ୍ତିକୁ ଗୃହ ଦେବତା ବିଭୁ ବିହାରୀଙ୍କ ସେବାପୂଜା ପାଇଁ ମଧ୍ୟ ଖଞ୍ଜି ଦେଇଯାଇଛନ୍ତି।

ଗୋପବନ୍ଧୁ ସାରାଜୀବନ ଏକ ସରଳ ଓ ଆଦର୍ଶ ଜୀବନଯାପନ କରି ଚାହୁଁଥିଲେ ଯେ ସାମାଜିକ ସ୍ତରରେ ଜାତିଆଣଭାବ ଓ ଛୁଆଁଅଛୁଆଁ ଭାବ ଦୂର ହେଉ। ନାରୀମାନଙ୍କୁ ସମାଜରେ ମର୍ଯ୍ୟାଦା ଦିଆଯାଉ। ପୁରୁଷ ଓ ମହିଳା ମଧ୍ୟରେ ରହିଥିବା ଭେଦଭାବ ଦୂର ହେଉ। ଚାଷୀ, ମୂଲିଆମାନେ ଶୋଷଣମୁକ୍ତ ହୁଅନ୍ତୁ। ସରକାର ବଢ଼ି, ମରୁଡ଼ି ସମୟରେ ସେମାନଙ୍କୁ ସାହାଯ୍ୟର ହାତ ବଢ଼ାନ୍ତୁ। ବିଦ୍ୟାଳୟରେ ଶିକ୍ଷକମାନଙ୍କର ଆଚରଣ ଶୁଦ୍ଧ, ସ୍ୱଚ୍ଛ, ଜ୍ଞାନୋଦୀପ୍ତ ହେଉ। ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଦେଶପ୍ରୀତି ଓ ଭାଷାପ୍ରୀତି ଜାଗ୍ରତ ହେଉ। ଗୋପବନ୍ଧୁଙ୍କର ଓଡ଼ିଶାବାସୀଙ୍କୁ ଦାରିଦ୍ର୍ୟର କଷାଘାତରୁ ମୁକ୍ତ କରିବା ପାଇଁ ଆରମ୍ଭ କରିଥିବା ପ୍ରଚେଷ୍ଟା ସ୍ୱାଧୀନତାର ୬୯ ବର୍ଷ ପରେ ଓ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେବାର ୮୦ ବର୍ଷ ପରେ ମଧ୍ୟ ଅପୂରଣୀୟ ହୋଇ ରହିଛି। ସରକାରୀ କଳ ବ୍ୟତୀତ ପ୍ରତ୍ୟେକ ଓଡ଼ିଆ ଗୋପବନ୍ଧୁଙ୍କ ଅପୂର୍ଣ୍ଣ ଆଶା ପୂରଣ କରିବାକୁ ସଚେଷ୍ଟ ହେବା ଏକ ପବିତ୍ର କର୍ତ୍ତବ୍ୟ।

*ସମାଜ - ୦୯.୧୦.୨୦୧୬*

# ମହାମାନବ ଗୌରୀଶଙ୍କର

ଓଡ଼ିଶାର ଶେଷ ସ୍ୱାଧୀନ ରାଜା ଗଜପତି ମୁକୁନ୍ଦଦେବ ୧୫୬୮ରେ ବଙ୍ଗର ନବାବ ସୁଲେମାନ କରନାନୀଙ୍କ ହାତରେ ଗୋହିରାଟିକରୀ ଯୁଦ୍ଧ କ୍ଷେତ୍ରରେ ପରାଜିତ ହୋଇ ମୃତ୍ୟୁବରଣ କଲା ପରଠାରୁ ଓଡ଼ିଶାର ସ୍ୱାଧୀନତା ଲୋପ ପାଇଲା। ଓଡ଼ିଶାର ଲୋକମାନେ ଆଫଗାନ, ମୁସଲମାନ, ମୋଗଲ, ମରାଠା ଓ ଇଂରେଜମାନଙ୍କ ଦ୍ୱାରା ଶାସିତ ହୋଇ ଡଳିତଳାନ୍ତ ହୋଇଗଲେ। ସୌନ୍ଦର୍ଯ୍ୟ, ବୀର୍ଯ୍ୟ, ସ୍ୱାଭିମାନ, ସାହସିକତା ଯୋଗୁଁ ଖ୍ୟାତ ଓଡ଼ିଆ ହୀନମନ୍ୟତାର ଶିକାର ହେଲା। ପରାଧୀନ ଓଡ଼ିଆ ଜାତି ବିଦେଶୀ ଶାସକମାନଙ୍କ ଅତ୍ୟାଚାର, ଲୁଣ୍ଠନ ଓ ନିର୍ଯାତନାର କ୍ରମାଗତ ଭାବରେ ଶିକାର ହୋଇ ଭୀରୁ, କାପୁରୁଷ ଓ ନିଷ୍କ୍ରିୟ ହୋଇ ପଡ଼ିରହିଲା। ସାମାଜିକ ଜୀବନରେ ଘୋର ବିଶୃଙ୍ଖଳା ଦେଖାଦେଲା।

୩୦୦ ବର୍ଷ ପରେ ଓଡ଼ିଆ ଜାତିର ପ୍ରାଣ ସଂଚାର କରିବାକୁ ୧୩ ଜୁଲାଇ ୧୮୩୮ ମସିହାରେ କଟକ ଜିଲ୍ଲା ଅନ୍ତର୍ଗତ ଅସୁରେଶ୍ୱର ନିକଟବର୍ତ୍ତୀ 'ଦୀକ୍ଷିତପଡ଼ା' ଗ୍ରାମରେ ଜନ୍ମ ଗ୍ରହଣ କଲେ ଗୌରୀଶଙ୍କର। ତାଙ୍କ ପିତାଙ୍କ ନାମ ସଦାଶିବ ପ୍ରସାଦ ରାୟ ଓ ମାତାଙ୍କ ନାମ ଅନ୍ନପୂର୍ଣ୍ଣା ଦେବୀ। କର୍ମବୀର ଗୌରୀଶଙ୍କର ରାୟ କଟକରୁ ଶିକ୍ଷା ସମାପ୍ତ କରି ୧୮୫୬ ଖ୍ରୀଷ୍ଟାବ୍ଦ ଜୁନ୍ ମାସରେ ଏଫ୍.ଏ ପଢ଼ିବାକୁ ପଶ୍ଚିମବଙ୍ଗର ହୁଗୁଳି ମହାବିଦ୍ୟାଳୟରେ ଯୋଗଦେଲେ, କିନ୍ତୁ ପିତାଙ୍କର ଆଦେଶ ପାଳନ କରି ଅଧାରୁ ପାଠ ଛାଡ଼ି ୧୮୫୮ ମସିହା ନଭେମ୍ବର ମାସରେ ଓଡ଼ିଶା ଫେରିଆସିଲେ। ବାଲେଶ୍ୱରରେ ସ୍ୱଳ୍ପ ସମୟ ପାଇଁ ଜିଲ୍ଲା ସ୍କୁଲରେ ଶିକକ୍ଷତା କରିଥିଲେ। ୧୮୫୯ ମସିହାରେ କଟକରେ ପହଞ୍ଚି କମିଶନରଙ୍କ ଅଫିସରେ ଜଣେ ଅମଲା ଭାବରେ ସ୍ୱଳ୍ପ ବେତନରେ କାମ ଆରମ୍ଭ କରିଥିଲେ। ସେ ଜାତିର ସାହିତ୍ୟ, ସଂସ୍କୃତି, ଭାଷା ସବୁର ପୁନରୁଦ୍ଧାର ପାଇଁ ବହୁ ଚେଷ୍ଟା କରିଥିଲେ। ସରକାରୀ କର୍ମଚାରୀ ହୋଇ ମଧ୍ୟ ନିଜର କର୍ମନିଷ୍ଠା, ସ୍ୱାଧୀନ ଚିନ୍ତାଧାରା ଓ ଦୃଢ଼ ମନୋବଳ ଯୋଗୁଁ ସେ ଦେଶର ଅଭାବ ଓ ତ୍ରୁଟି ବିଚ୍ୟୁତିକୁ ସଜାଡ଼ିବାରେ ମନୋନିବେଶ କଲେ। ଆଜିକାଲି ମଧ୍ୟ ସରକାରୀ କର୍ମଚାରୀମାନେ ତାଙ୍କର ପଦାଙ୍କ ଅନୁସରଣ କରିବା ଉଚିତ। ଗୌରୀଶଙ୍କର ଜଣେ

ତୀକ୍ଷ୍ଣଧୀସଂପନ୍ନ, ଦୂରଦ୍ରଷ୍ଟା ବ୍ୟକ୍ତିତ୍ୱର ଅଧିକାରୀ ଥିଲେ। ସେ ଯାହା ଚିନ୍ତା କରୁଥିଲେ ତାହା କାର୍ଯ୍ୟରେ ରୂପାନ୍ତରିତ କରିବାକୁ ସଚେଷ୍ଟ ରହୁଥିଲେ।

ସେ ଅନୁଭବ କଲେ ଯେ ଓଡ଼ିଶାରେ ଜନମତ ଜାଗ୍ରତ କରିବାକୁ ଏକ ଖବରକାଗଜ ପ୍ରକାଶନର ଆବଶ୍ୟକତା ଅଛି। ତେଣୁ ମାତ୍ର ୨୭ ବର୍ଷ ବୟସରେ ନିଜର ସମସ୍ତ ଶକ୍ତି ପ୍ରୟୋଗ କରି କଟକଠାରେ 'କଟକ ପ୍ରିଣ୍ଟିଂ ପ୍ରେସ୍' ନାମରେ ଏକ ଛାପାଖାନା ପ୍ରତିଷ୍ଠା କରିଥିଲେ। ୩୦୦ ଅଂଶୀଦାରଙ୍କଠାରୁ ମାତ୍ର ୭୫୦୦ ଟଙ୍କା ସଂଗ୍ରହ କରି ଏହି ଛାପାଖାନାରେ ଓଡ଼ିଆ ଭାଷାରେ ଲିଖିତ ମହାଭାରତ, ରାମାୟଣ ଆଦି ବିଭିନ୍ନ ଧର୍ମଗ୍ରନ୍ଥ, ନାଟକ, କବିତା, ଉପନ୍ୟାସ ଆଦି ମୁଦ୍ରିତ ହୋଇଥିଲା ଓ ଏଠାରେ ପାଠ୍ୟପୁସ୍ତକମାନ ମଧ୍ୟ ମୁଦ୍ରିତ ହୋଇଥିଲା ଏବଂ ଏହା ଓଡ଼ିଶାବାସୀଙ୍କର ବହୁକାଳର ଅଭାବ ଦୂର କରିପାରୁଥିଲା।

ଏହି ଛାପାଖାନାରୁ ୧୮୬୫ ଅଗଷ୍ଟ ମାସରେ ପ୍ରଥମ ଓଡ଼ିଆ ସାପ୍ତାହିକ ପତ୍ରିକା 'ଉତ୍କଳ ଦୀପିକା'ର ପ୍ରକାଶନ ହୋଇଥିଲା। ତାଙ୍କୁ ଏହି କାର୍ଯ୍ୟରେ ଅକୁଣ୍ଠ ସାହାଯ୍ୟ, ପ୍ରେରଣା, ଉତ୍ସାହ ଓ ଉପଦେଶ ଦେଇଥିଲେ କଟକ କମିଶନରଙ୍କ ଅଫିସରେ କାମ କରୁଥିବା ସିରସ୍ତାଦାର ବିଚିତ୍ରାନନ୍ଦ ଦାସ, ଜଗମୋହନ ରାୟ ଓ ଗୋବିନ୍ଦ ଚନ୍ଦ୍ର ରଥ। ୧୮୬୬ ମସିହା ନ'ଅଙ୍କ ଦୁର୍ଭିକ୍ଷ କରାଳ ଦୃଶ୍ୟର କରୁଣ କାହାଣୀ ସେ 'ଉତ୍କଳ ଦୀପିକା'ରେ ପ୍ରକାଶ କରିଥିଲେ। ୧୦ ଲକ୍ଷ ଲୋକ ଅନାହାରରେ ଏହି ଦୁର୍ଭିକ୍ଷରେ ପ୍ରାଣତ୍ୟାଗ କରିଥିଲେ। 'ଉତ୍କଳ ଦୀପିକା'ରେ ଏହାର ବିବରଣୀ ପ୍ରକାଶିତ ହୋଇଥିଲା। ଏହି ପ୍ରକାଶିତ ଘଟଣାବଳୀ ସବୁ ବ୍ରିଟିଶ ପାର୍ଲାମେଣ୍ଟରେ ଆଲୋଚିତ ହେବାପରେ କ୍ୟାମ୍ପବେଲ୍ କମିଶନ ଗଠିତ ହୋଇଥିଲା। ଏହି କମିଶନଙ୍କ ରିପୋର୍ଟରେ ପ୍ରଶାସନ ତରଫରୁ ତ୍ରୁଟି ବିଚ୍ୟୁତି ହୋଇଥିବା ଓ ଅକ୍ଷମଣୀୟ ଅବହେଳା ହୋଇଥିବା ପ୍ରକାଶ ପାଇଥିଲା। ଏହି ରିପୋର୍ଟ ଯୋଗୁଁ ପରବର୍ତ୍ତୀ କାଳରେ ଜଳସେଚନ ପାଇଁ କେନାଲର ବ୍ୟବସ୍ଥା, ବନ୍ୟା ନିୟନ୍ତ୍ରଣ ପାଇଁ ବିଭିନ୍ନ ପଦକ୍ଷେପ ନିଆଗଲା। 'ଉତ୍କଳ ଦୀପିକା'ର ମଶାଲ ଧରିଥିଲେ ଜଣେ ବ୍ୟକ୍ତି ସେ ହେଉଛନ୍ତି ପତ୍ରିକାର ସମ୍ପାଦକ ଗୌରୀଶଙ୍କର ରାୟ। ସେ ଓଡ଼ିଆ ଜାତିକୁ ଆଲୋକର ପଥ ଦେଖାଇଛନ୍ତି। ସେ ସବୁବେଳେ ପ୍ରଶାସନର ଅବହେଳା, ଦୁର୍ନୀତି ଓ ଦାୟିତ୍ୱ ସମ୍ପର୍କରେ ସଚେତନ କରାଇ ଦେଉଥିଲେ।

ସମାଜ ସଂସ୍କାର କ୍ଷେତ୍ରରେ ଗୌରୀଶଙ୍କର ସେତେବେଳେ ବଳିଷ୍ଠ ନେତୃତ୍ୱ ପ୍ରଦାନ କରିଥିଲେ। ବିଧବା ବିବାହକୁ ଉତ୍ସାହିତ କରିଥିଲେ ଏବଂ ବାଲ୍ୟ ବିବାହକୁ

ଘୋର ବିରୋଧ କରୁଥିଲେ। ନାରୀ ଶିକ୍ଷା ପ୍ରବର୍ତ୍ତନ ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ। ବ୍ରତ ଓ ବିବାହ ଉତ୍ସବ ଆଦିରେ ଅଯଥା ଆଡ଼ମ୍ବର ନ କରିବା ପାଇଁ ସେ 'ଉତ୍କଳ ଦୀପିକା' ମାଧ୍ୟମରେ ଲୋକମାନଙ୍କୁ ସୂଚାଉଥିଲେ। କେବଳ ସେତିକି ନୁହେଁ, ଧର୍ମ ନାମରେ ସରଳ ଲୋକମାନଙ୍କୁ ଭଣ୍ଡୁଥିବା ସନ୍ନ୍ୟାସୀ, ସାଧୁ ଓ ଦୁର୍ନୀତିଗ୍ରସ୍ତ ମହାଜନମାନଙ୍କ କୁତ୍ସିତ କାର୍ଯ୍ୟକୁ 'ଉତ୍କଳ ଦୀପିକା'ରେ ପ୍ରକାଶ କରି ଲୋକମାନଙ୍କୁ ସଚେତନ କରାଉଥିଲେ। ଚରିତ୍ରବାନ, ଜ୍ଞାନୀ, ସନ୍ନ୍ୟାସୀମାନଙ୍କର ଉଦାହରଣ ଦେଇ ସେ ସତ୍‌ମାର୍ଗରେ ପରିଚାଳିତ ହେବାକୁ ଲୋକମାନଙ୍କୁ ପରାମର୍ଶ ଦେଉଥିଲେ। ଛୁଆଁ ଅଛୁଆଁ ଭେଦଭାବର ଉଚ୍ଛେଦ ଉପରେ ସେ ଗୁରୁତ୍ୱ ଦେଇଥିଲେ। ମଣିଷତ୍ୱ ଉପରେ ସେ ପ୍ରାଧାନ୍ୟ ଦେଇ ସମସ୍ତେ ଭଲ ମଣିଷ ହେବାକୁ ପରାମର୍ଶ ଦେଉଥିଲେ। ଜଗନ୍ନାଥ ମନ୍ଦିରର ପରିଚାଳନାରେ ଉନ୍ନତି, ପରିବେଶର ଉନ୍ନତି ଓ ଚତୁର୍ଦ୍ଧାମୂର୍ତ୍ତିର ଦର୍ଶନ ପାଇଁ ସେ 'ଉତ୍କଳ ଦୀପିକା' ମାଧ୍ୟମରେ ଶୁଦ୍ଧଚିନ୍ତିତ ପରାମର୍ଶମାନ ଦେଉଥିଲେ।

ଓଡ଼ିଶାରେ ରେଳପଥ ନ ଥିବା କଥା ସେ ବ୍ରିଟିଶ ସରକାରଙ୍କୁ ବାରମ୍ବାର ଜଣାଉଥିଲେ ଓ ଏହା ଉତ୍କଳ ଦୀପିକାର ପୃଷ୍ଠାରେ ଲେଖୁଥିଲେ। ଓଡ଼ିଆ ବିଲୋପ ବିରୋଧରେ ପ୍ରବଳ ଆନ୍ଦୋଳନ କରିଥିଲେ ଗୌରୀଶଙ୍କର ତାଙ୍କର ପତ୍ରିକା ମାଧ୍ୟମରେ ଓ ଉତ୍କଳ ସଭାରେ। ୫୨ ବର୍ଷ କାଳ ଉତ୍କଳ ଦୀପିକାର ସମ୍ପାଦକ ଦାୟିତ୍ୱ ନିର୍ବାହ କରିଥିଲେ। ସେ ବାର୍ଦ୍ଧକ୍ୟ ଯୋଗୁଁ ଆଉ ପ୍ରେସ୍‌ର ଦାୟିତ୍ୱ ନେଲେ ନାହିଁ। ୧୯୧୬ ମସିହାରେ ସରକାର ତାଙ୍କୁ ରାୟବାହାଦୂର ଉପାଧିରେ ଭୂଷିତ କରିଥିଲେ। ଏହି ମହାମାନବ ସାରାଜୀବନ ଓଡ଼ିଶାବାସୀଙ୍କ ସେବାରେ ନିଜକୁ ନିୟୋଜିତ କରି ୧୯୧୭ ମସିହା ମାର୍ଚ୍ଚ ମାସ ୭ ତାରିଖରେ ମୃତ୍ୟୁବରଣ କଲେ, କିନ୍ତୁ ମରି ମଧ୍ୟ ସେ ଅମର।

*ସମ୍ବାଦ କଳିକା - ୧୩.୭.୨୦୧୬*

# ଓଡ଼ିଶା ବିଧାନସଭାର ପ୍ରଥମ ବାଚସ୍ପତି: ମୁକୁନ୍ଦ ପ୍ରସାଦ ଦାସ

ସ୍ୱାଧୀନତା ସଂଗ୍ରାମରେ ସକ୍ରୀୟ ଯେଉଁ କେତେଜଣ ଓଡ଼ିଶାରେ ଆନ୍ଦୋଳନକୁ ଜୋରଦାର କରିଥିଲେ, ସେମାନଙ୍କ ମଧ୍ୟରେ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ପାର୍ବତୀପୁର ଗ୍ରାମର ମୁକୁନ୍ଦ ପ୍ରସାଦ ଦାସ ଅନ୍ୟତମ। ୧୨ ଅଗଷ୍ଟ ୧୮୯୩ରେ ମୁକୁନ୍ଦ ପ୍ରସାଦଙ୍କର ଜନ୍ମ। ତାଙ୍କର ପିତା ହରପ୍ରସାଦ ଦାସ ଥିଲେ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ। ଗ୍ରାମ ପାଠାଶାଳାରୁ ଉନ୍ନୀତ ମୁକୁନ୍ଦ ପ୍ରସାଦ, ସୋର ମାଇନର୍ ସ୍କୁଲ୍, ବାଲେଶ୍ୱର ମିସନ୍ ସ୍କୁଲ୍ ଆଦିରେ ପଢ଼ିବା ପରେ କଲିକତା ଗଲେ ଆଇନ ପଢ଼ିବା ପାଇଁ। କଲିକତାରୁ ମୁକ୍ତିଆର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ ବାଲେଶ୍ୱର ସହରରେ ଆଇନ୍ ବ୍ୟବସାୟ ଆରମ୍ଭ କରିଥିଲେ। ସେ ଗରିବ ମହକିଲଙ୍କୁ ମାଗଣାରେ ଆଇନ୍ ସେବା ପ୍ରଦାନ କରୁଥିଲେ। ନିଷ୍ପାପର କାର୍ଯ୍ୟ ପ୍ରଣାଳୀ ଓ ସାଧୁତା ଯୋଗୁଁ ସେ କମ୍ ଦିନରେ ଲୋକପ୍ରିୟତା ହାସଲ କରିଥିଲେ। କଚେରିର କର୍ମଚାରୀ, ରାଜନେତାଙ୍କଠାରୁ ଆରମ୍ଭ କରି ବିଚାରପତିଙ୍କ ଯାଏଁ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ। ସେତେବେଳେ ବାଲେଶ୍ୱର ସହରରେ ବଙ୍ଗୀୟ ଓକିଲଙ୍କ ସଂଖ୍ୟା ଅଧିକ ଥିଲା। ସେମାନେ ମୁକୁନ୍ଦ ପ୍ରସାଦଙ୍କର ଲୋକପ୍ରିୟତା ସହି ପାରିଲେ ନାହିଁ। ବଙ୍ଗୀୟ ଆଇନଜୀବୀଙ୍କ ଈର୍ଷା ଓ ତତ୍କାଳୀନ ଜିଲ୍ଲାପାଳଙ୍କ ଷଡ଼ଯନ୍ତ୍ରକ୍ରମେ ମୁକୁନ୍ଦ ପ୍ରସାଦ ସଙ୍ଗିନ ମାମଲାରେ ଛନ୍ଦି ହୋଇଗଲେ। ତାଙ୍କୁ ସେଥିରୁ ମୁକ୍ତ କରିବା ପାଇଁ ମଧୁବାବୁ ନିଜେ ବାଲେଶ୍ୱର ଯାଇଥିଲେ। ମଧୁବାବୁ ବାଲେଶ୍ୱର ଯାଇ ଦେଖିଲେ ସ୍ୱୟଂ ବିଚାରପତି ମାମଲାର ମୁଦାଲା ବାଲେଶ୍ୱର ଜିଲ୍ଲାପାଳଙ୍କୁ ପାଖରେ ବସାଇଛନ୍ତି। ମଧୁବାବୁ ଡାକବଙ୍ଗଳାକୁ ଫେରିଆସିଲେ। ପେସ୍କାର ଫେରିଆସିବାର କାରଣ ଜାଣିବାକୁ ପହଞ୍ଚିଲେ। ମଧୁବାବୁ ସ୍ପଷ୍ଟ କହିଲେ, "ତୁମ ଜଜ୍‌କୁ କହିଦେବ, ସେ ବ୍ରିଟିଶ କ୍ରାଉନ୍‌କୁ ଅପମାନିତ କରିଛନ୍ତି। ଯେଉଁ ସରକାରୀ କର୍ମଚାରୀ କ୍ରାଉନ୍‌କୁ ଅପଦସ୍ତ କରେ, ସେ ସରକାରୀ କାର୍ଯ୍ୟ ପାଇଁ ଅଯୋଗ୍ୟ। ତେଣୁ ତୁମ ଜଜ୍ ତାଙ୍କ ପଦରେ ରହିବା ଅନୁଚିତ।" ଏଥିରେ ବିଚାରପତି

ବିବ୍ରତ ଓ ଲଜ୍ଜିତ ହେଲେ। ଦୁଃଖ ପ୍ରକାଶ କଲେ। ଯଥା ସମୟରେ ବିଚାର ହେଲା। ନିରପେକ୍ଷ ରାୟରେ ପ୍ରକଟିତ ହେଲା ମୁକୁନ୍ଦ ପ୍ରସାଦ ଦାସ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ଅଟନ୍ତି।

ମୁକୁନ୍ଦ ପ୍ରସାଦଙ୍କୁ ଆଉଥରେ ଅଭିଯୁକ୍ତ କରାଯାଇଥିଲା। ତାଙ୍କ ସପକ୍ଷରେ ଲଢ଼ିଥିଲେ ତତ୍କାଳୀନ ଭାରତବର୍ଷର ବିଶିଷ୍ଟ ଆଇନ ବିଶାରଦ ଚିତ୍ତରଞ୍ଜନ ଦାସ। ମୁକୁନ୍ଦ ପ୍ରସାଦଙ୍କ ପତ୍ନୀ ଜାହ୍ନବୀ ଦେବୀ ଥିଲେ ବିଶିଷ୍ଟ ଆଇନଜୀବୀ ଭାଗବତ ମହାପାତ୍ରଙ୍କ କନ୍ୟା। ଜାହ୍ନବୀ ଦେବୀ ବାଲେଶ୍ୱରରେ ଅନୁଷ୍ଠିତ ଉତ୍କଳ ମହିଳା ସମ୍ମିଳନୀ (୧୯୩୧)ରେ ସଭାପତିତ୍ୱ କରିଥିଲେ। ଇଞ୍ଚୁଡ଼ିର ଲବଣ ସତ୍ୟାଗ୍ରହ (୧୯୩୦) ଓ ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦେଇ ସେ ଗିରଫ ହୋଇଥିଲେ। ପ୍ରତି କ୍ଷେତ୍ରରେ ସେ ମୁକୁନ୍ଦ ପ୍ରସାଦଙ୍କୁ ସହାୟତା କରୁଥିଲେ।

ମୁକୁନ୍ଦ ପ୍ରସାଦ ଏକାଧାରରେ ଥିଲେ ସମାଜସେବୀ, ଆଇନଜୀବୀ, ସ୍ୱାଧୀନତା ସଂଗ୍ରାମୀ, ବିଧାୟକ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ବିଧାନସଭାର ପ୍ରଥମ ବାଚସ୍ପତି। ସେ କେନ୍ଦ୍ର ବାଲେଶ୍ୱର ସଦର ସାଧାରଣ କ୍ଷେତ୍ରରୁ ବିଧାନସଭାକୁ ନିର୍ବାଚିତ ହୋଇ ନିର୍ଦ୍ୱନ୍ଦ୍ୱରେ ବାଚସ୍ପତି ହୋଇଥିଲେ ୧୯୩୭ ରୁ ୧୯୪୬ ମସିହା ପର୍ଯ୍ୟନ୍ତ। ସେତେବେଳେ କୌଣସି ସାମ୍ବିଧାନିକ ବ୍ୟବସ୍ଥା ଲିଖିତ ହୋଇନଥିଲା। ଅତଏବ ବାଚସ୍ପତି ମୁକୁନ୍ଦ ପ୍ରସାଦ ନିଜର ମୌଳିକ ଜ୍ଞାନ, ଆଇନ ଅନୁଭୂତି ଓ ବିଶେଷ ପ୍ରତିଭା ବଳରେ ବିଧାନସଭା ପରିଚାଳନା କରୁଥିଲେ।

ମୁକୁନ୍ଦ ପ୍ରସାଦ ବାଲେଶ୍ୱରର ଲୋକ ହେଲେ ହେଁ ସାରା ଓଡ଼ିଶାର ବିକାଶ ଚିନ୍ତା କରୁଥିଲେ। ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ (ଜୟପୁର, ୧୯୧୩)ରେ ସେ ଖୋର୍ଦ୍ଧା-ସମ୍ବଲପୁର ରେଳପଥ ନିର୍ମାଣର ପ୍ରସ୍ତାବ ଦେଇଥିଲେ। ଗାନ୍ଧିଜୀଙ୍କ ଆହ୍ୱାନ କ୍ରମେ ସେ ଆଇନ ବ୍ୟବସାୟ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ। ତାଙ୍କ ବାସଗୃହ ହୋଇଥିଲା ତତ୍କାଳୀନ ଭାରତବର୍ଷର ପ୍ରଚଣ୍ଡ ପ୍ରଭାବଶାଳୀ ନେତାମାନଙ୍କର ଆଲୋଚନାସ୍ଥଳୀ। ନେତାଜୀ ସୁଭାଷ, ଜୟପ୍ରକାଶ ନାରାୟଣଙ୍କ ପରି ପ୍ରସିଦ୍ଧ ବ୍ୟକ୍ତିମାନଙ୍କର ଗୁପ୍ତବୈଠକ ତାଙ୍କ ଘରେ ବସୁଥିଲା। ସେ ଥିଲେ ଗାନ୍ଧୀବାଦୀ ଦର୍ଶନର ଅନ୍ୟତମ ଉଦ୍‌ଗତା। ୧୯୩୪ ମସିହା ଜୁନ୍ ୨ ତାରିଖରେ ସେ ଗାନ୍ଧିଜୀଙ୍କ ଭଦ୍ରକ ପଦଯାତ୍ରାରେ ସାମିଲ ହୋଇଥିଲେ।

ବାଚସ୍ପତି ମୁକୁନ୍ଦ ପ୍ରସାଦଙ୍କ ଜୀବନ ଘଟଣାବହୁଳ। ସେ କାଳରେ ବିଧାନସଭା ଚାଲିଥାଏ ରେଭେନ୍‌ସା କଲେଜର ଏକ ହଲ୍‌ରେ। ନିୟମାନୁସାରେ 'ବନ୍ଦେ ମାତରଂ'

ଗାନ ବେଳେ ବିଧାନସଭାରେ ସମସ୍ତେ ଠିଆ ହୋଇ ସମ୍ମାନ ଜଣାଇଲେ ଜାତୀୟଗାନକୁ। ସଭାଗୃହରେ ଉପସ୍ଥିତ ତିନି ଜଣ ଗୋରା ଅଫିସର ନିଜ ଆସନରେ ବସି ରହିଲେ। ବିଧାୟକ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ଏହା ଭଲ ଲାଗି ନ ଥିଲା। ତାଙ୍କର ପ୍ରଶ୍ନ କ୍ରମେ ବାଚସ୍ପତି ମୁକୁନ୍ଦ ପ୍ରସାଦ କହିଲେ, "ସାହେବ ତିନି ଜଣ ବାହାରର ଲୋକ, ସେମାନେ ସଭା ସହ ସଂପୃକ୍ତ ନୁହଁନ୍ତି।" ଏଥିରୁ ତାଙ୍କର ସ୍ପଷ୍ଟବାଦିତାର ପ୍ରମାଣ ମିଳେ। ଏହି କର୍ମଯୋଗୀ ବରପୁତ୍ରଙ୍କର ୧୯୬୯, ନଭେମ୍ବର ୭ ତାରିଖରେ ତିରୋଧାନ ହୋଇଥିଲା। ତାଙ୍କର ଆଦର୍ଶ ଜୀବନଯାପନ ପ୍ରଣାଳୀ, ସେବା ମନୋବୃତ୍ତି ଇତିହାସ ପାଲଟିଗଲାଣି। ସେ ଯେଉଁ ଦୃଷ୍ଟାନ୍ତମୂଳକ କାର୍ଯ୍ୟ କରିଯାଇଛନ୍ତି ଓ ଭବିଷ୍ୟତ ବଂଶଧରଙ୍କ ପାଇଁ ନଜିର ଛାଡ଼ିଯାଇଛନ୍ତି, ତାହା ପୂର୍ଣ୍ଣ ଭାବେ ଲିପିବଦ୍ଧ ହୋଇନାହିଁ। କେବଳ ଜୟନ୍ତୀ ଓ ଶ୍ରାଦ୍ଧ ଦିବସରେ ସ୍ମୃତିଚାରଣ କଲେ ଯଥେଷ୍ଟ ହେବନାହିଁ। ଓଡ଼ିଶା ବିଧାନସଭା ପ୍ରାଙ୍ଗଣରେ ତାଙ୍କର ପ୍ରତିମୂର୍ତ୍ତି ପ୍ରତିଷ୍ଠା କରିବା ଏବଂ ସୂଚନା ଓ ଲୋକସମ୍ପର୍କ ବିଭାଗ ଦ୍ୱାରା ଜୟନ୍ତୀ ପାଳନ କରାଯିବା ଉଚିତ।

*ସମ୍ବାଦ - ୧୨.୮.୨୦୧୬*

# ତ୍ୟାଗ ଓ ସେବାର ପ୍ରତୀକ ପ୍ରାଣନାଥ

ଓଡ଼ିଶାର ଚଷୀ, ମୂଲିଆ, ଖଟିଖିଆ ମଣିଷମାନଙ୍କର ସ୍ୱାର୍ଥ ପାଇଁ ଆଜୀବନ ଲଢ଼ିଥିବା ପ୍ରାଣନାଥ ପଟ୍ଟନାୟକ ୧୯୦୫ ମସିହା ନଭେମ୍ବର ୧୬ ତାରିଖରେ ପୁରୀ ଜିଲ୍ଲାର କଣାସ ଥାନା ଅନ୍ତର୍ଗତ ଡିମିରି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ପ୍ରାଣନାଥ ମାତ୍ର ଅଢ଼େଇ ବର୍ଷ ବୟସରେ ମା' ଚିତ୍ରାଦେବୀଙ୍କୁ ହରାଇଥିଲେ। ପିତା ମଦନମୋହନ, ଭଉଣୀ ଧନମଣି ଓ ଅନ୍ୟ ଭାଇମାନଙ୍କର ସ୍ନେହ ଆଦରରେ ସେ ବଡ଼ ହୋଇଥିଲେ। ଗାଁ ଚଟଶାଳୀରେ ପାଠପଢ଼ା ଆରମ୍ଭ କରିବା ଦିନଠାରୁ ସେ ଗରିବ ପିଲାମାନଙ୍କ ସହିତ ମିଶିବା, ଖେଳିବାକୁ ଭଲ ପାଉଥିଲେ। ଚଟଶାଳୀରୁ ପାଠ ଶେଷ କରି ସେ କଣାସ ପ୍ରାଇମେରୀ ସ୍କୁଲ ଓ ପରେ ପୁରୀ ଜିଲ୍ଲା ସ୍କୁଲରେ ଶିକ୍ଷା ଲାଭ କରିଥିଲେ। ୧୯୨୦ ମସିହାରେ ପୁରୀ ଜିଲ୍ଲା ସ୍କୁଲରେ ପଢୁଥିଲା ବେଳେ ତାଙ୍କ ଜୀବନରେ ସମାଜସେବା ପାଇଁ ପ୍ରତିବଦ୍ଧତା ଜାଗ୍ରତ ହୋଇଥିଲା। ସେଠାରେ ଭଗବତୀ ଚରଣ ପାଣିଗ୍ରାହୀ ଓ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ସାନ୍ନିଧ ଲାଭ କରିବାର ସୁଯୋଗ ପାଇଥିଲେ ଏବଂ ବାମପନ୍ଥୀ ଚିନ୍ତାଧାରାର ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା। ଉତ୍କଳମଣି ଗୋପବନ୍ଧୁ ଦାସ ସେ ସମୟରେ ପୁରୀରେ ରହୁଥିଲେ ଏବଂ ତାଙ୍କ ପାଖକୁ ଅନ୍ୟ ସହପାଠୀମାନଙ୍କ ସହିତ ପ୍ରାଣନାଥ ନିୟମିତ ଯାଉଥିଲେ। ସମାଜରୁ କିଭଳି ଅନ୍ଧବିଶ୍ୱାସ ଦୂର ହେବ, କୁସଂସ୍କାର ଲୋପ ପାଇବ ଓ ଦେଶର ଉନ୍ନତି ହେବ ସେ ବିଷୟରେ ଅନେକ ସମୟରେ ଗୋପବନ୍ଧୁ ପିଲାମାନଙ୍କ ସହିତ ଆଲୋଚନା କରୁଥିଲେ। ଦାସେଆପଣେଙ୍କ ମାନବସେବା ଗୁଣଟି ପ୍ରାଣନାଥଙ୍କୁ ବହୁତ ପ୍ରଭାବିତ କରିଥିଲା। ଗୋପବନ୍ଧୁଙ୍କର "ମିଶୁ ମୋର ଦେହ ଏ ଦେଶ ମାଟିରେ, ଦେଶବାସୀ ଚାଲିଯାଆନ୍ତୁ ପିଠିରେ" ପଦଟିକୁ ପ୍ରାଣନାଥ ମନ୍ତ୍ର ରୂପେ ଗ୍ରହଣ କରି ସାରାଜୀବନ ତାକୁ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ। ୧୯୩୦ ମସିହାରେ ରେଭେନ୍ସା କଲେଜରେ ସେ ବି.ଏସ୍‌ସି ପଢୁଥିଲା ବେଳେ ଗାନ୍ଧୀଜୀ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ। ପ୍ରାଣନାଥ ଏହି ସତ୍ୟାଗ୍ରହରେ ସକ୍ରିୟ ଅଂଶ ଗ୍ରହଣ କରି ପୋଲିସ୍ ଦ୍ୱାରା ଗିରଫ ହୋଇ ପୁରୀ ଓ ବାଲେଶ୍ୱର ଜେଲ୍‌ରେ ରହିଥିଲେ। ୧୯୩୧ ମସିହାରେ ଜେଲ୍‌ରୁ ଖଲାସ ହେବାପରେ

ସେ ଉଚ୍ଚଶିକ୍ଷା ଲାଭ ପାଇଁ ଜାତୀୟ ଶିକ୍ଷାନୁଷ୍ଠାନ କାଶୀ ବିଦ୍ୟାପୀଠରେ ଯୋଗଦେଲେ। ସେଠାରେ ଲାଲ୍ ବାହାଦୁର ଶାସ୍ତ୍ରୀ ଥିଲେ ତାଙ୍କର ସହପାଠୀ ଏବଂ ଉଭୟଙ୍କ ମଧ୍ୟରେ ବନ୍ଧୁତା ସ୍ଥାପନ ହୋଇଥିଲା। କାଶୀ ବିଦ୍ୟାପୀଠର ଛାତ୍ର ଭାବରେ ସେ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ। ୧୯୩୪ ମସିହାରେ ଇତିହାସରେ ନିବନ୍ଧ ଲେଖି କାଶୀ ବିଦ୍ୟାପୀଠରୁ 'ଶାସ୍ତ୍ରୀ' ଉପାଧି ଲାଭ କରି ସେ ଓଡ଼ିଶାକୁ ଫେରିଆସିଥିଲେ ଓ ନିଜର ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଦେଶସେବାରେ ନିଜକୁ ଉତ୍ସର୍ଗ କରିବେ ବୋଲି ବ୍ରତୀ ହୋଇଥିଲେ। ପ୍ରାଣନାଥ ପଟ୍ଟନାୟକ ନିଜ ସଂଗ୍ରାମୀ ଜୀବନରେ ଦଶଥର କାରାବରଣ କରିଥିଲେ, କିନ୍ତୁ କେବେହେଲେ ନିଜ ଲକ୍ଷ୍ୟପଥରୁ ବିଚ୍ୟୁତ ହୋଇନଥିଲେ। ଦେଶର ସ୍ୱାଧୀନତା ସଂଗ୍ରାମ, କୃଷକ ଆନ୍ଦୋଳନ, ଗଡ଼ଜାତ ପ୍ରଜା ଆନ୍ଦୋଳନ ଓ ସାମ୍ୟବାଦୀ ଆନ୍ଦୋଳନର ପୁରୋଭାଗରେ ରହି ପ୍ରାଣନାଥ ବହୁ କଷ୍ଟ ସ୍ୱୀକାର କରିଛନ୍ତି।

୧୯୩୫ ମସିହା ଜୁନ୍ ୨୮ ତାରିଖ ଦିନ ପ୍ରାଣନାଥ ପଟ୍ଟନାୟକ ପୁରୀ ଜିଲ୍ଲା ଚଣାହାଟ ଗ୍ରାମର ପ୍ରଖ୍ୟାତ କବି କୃଷ୍ଣମୋହନ ପଟ୍ଟନାୟକଙ୍କର କନ୍ୟା ମଞ୍ଜରୀ ଦେବୀଙ୍କୁ ବିବାହ କରିଥିଲେ। ବିବାହର ପ୍ରଥମ ଦିନରୁ ସେ ପତ୍ନୀଙ୍କୁ କହିଥିଲେ, "ଆମର ମିଳନ ସେବା ପାଇଁ, ସମ୍ଭୋଗ ପାଇଁ ନୁହେଁ" ଏବଂ ପତ୍ନୀ ସାରାଜୀବନ ପ୍ରାଣନାଥଙ୍କୁ ସହକର୍ମିଣୀ ରୂପେ ସବୁକ୍ଷେତ୍ରରେ ସହଯୋଗ କରିଥିଲେ। ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାପରେ ୬୦ ଜଣିଆ ପ୍ରଥମ ବିଧାନସଭାକୁ ସେ ବିଧାୟକ ଭାବେ ଖୋର୍ଦ୍ଧା ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ। ପଣ୍ଡିତ ଜବାହରଲାଲ ନେହେରୁ ପ୍ରାଣନାଥଙ୍କ ସପକ୍ଷରେ ନିର୍ବାଚନ ପ୍ରଚାର କରିବାକୁ ଖୋର୍ଦ୍ଧା ଆସିଥିଲେ।

ପ୍ରାଣନାଥ ଅତ୍ୟନ୍ତ ମେଳାପୀ, ସାଧାସିଧା ମଣିଷ ହୋଇଥିଲେ ମଧ୍ୟ ସାହସୀ ଓ କଷ୍ଟସହିଷ୍ଣୁ ଥିଲେ। ୧୯୩୯ ମସିହା ଜାନୁଆରୀ ୫ ତାରିଖ ଦିନ ବ୍ରିଟିଶ୍ ପଲିଟିକାଲ୍ ଏଜେଣ୍ଟ ଅତ୍ୟାଚାରୀ ବେଜେଲଗେଟ୍‌ଙ୍କୁ ରଣପୁରରେ ହତ୍ୟା କରାଯାଇଥିଲା। ଏହି ହତ୍ୟାକାଣ୍ଡ ପରେ ପ୍ରାଣନାଥ ସର୍ବପ୍ରଥମେ ରଣପୁର ଯାଇ ପୋଲିସ୍ ଗିରଫ କରିଥିବା ରଘୁ, ଦିବାକର ଓ ଅନ୍ୟ ଲୋକଙ୍କୁ ସାହାଯ୍ୟ କରିବାପାଇଁ ଏକ ପ୍ରତିରକ୍ଷା କମିଟି ଗଠନ କରିଥିଲେ। ତାଙ୍କ ଉପସ୍ଥିତି ସେଠାରେ ଲୋକମାନଙ୍କ ମନୋବଳକୁ ବଢ଼ାଇଥିଲା।

୧୯୪୨ ମସିହା ଅଗଷ୍ଟ ୧୦ ତାରିଖ ଦିନ ପୋଲିସ୍ ପ୍ରାଣନାଥଙ୍କୁ ତାଙ୍କ ଜଟଣୀ ବାସଭବନରୁ ଗିରଫ କରି ବ୍ରହ୍ମପୁର ଜେଲ୍‌କୁ ନେଇଗଲେ । ସେଠାରେ ସେ ଅଢ଼େଇ ବର୍ଷ କାଳ ଅଟକ ବନ୍ଦୀ ହୋଇ ରହିଥିଲେ । ଜେଲ୍‌ରୁ ଖଲାସ ହେବାପରେ ପ୍ରାଣନାଥ ଜଟଣୀ ଅଞ୍ଚଳରେ ପ୍ରଥମ କରି ଏକ ହାଇସ୍କୁଲ ପ୍ରତିଷ୍ଠା କରିଥିଲେ । ସବୁ କାର୍ଯ୍ୟ ସହିତ ସେ ଚାଷୀମାନଙ୍କ ସ୍ୱାର୍ଥରକ୍ଷାକୁ ସଦାସର୍ବଦା ଗୁରୁତ୍ୱ ପ୍ରଦାନ କରୁଥିଲେ । ୧୯୪୬ ମସିହାରେ ଓଡ଼ିଶାରେ ପ୍ରଥମ କରି ପ୍ରାଣନାଥ ଭାଗଚାଷୀ ଆନ୍ଦୋଳନର ଅୟମାରମ୍ଭ କରିଥିଲେ । ଏହି ଆନ୍ଦୋଳନ କରିବା ଦ୍ୱାରା ସେ ଜମିଦାର, ସାହୁକାର ଓ ମଠ ମହନ୍ତମାନଙ୍କର ଆକ୍ରୋଶର ଶିକାର ହୋଇଥିଲେ । ଏଭଳିକି ମଳିପଡ଼ା ମଠ ମହନ୍ତଙ୍କ ଲଙ୍ଗଳ ଚୋରି କରିଥିବା ଅଭିଯୋଗରେ ପୋଲିସ୍ ତାଙ୍କୁ ଗିରଫ କରି ଜେଲ୍‌ରେ ଭର୍ତ୍ତି କରିଥିଲେ, କିନ୍ତୁ ପରେ ସେହି ମିଥ୍ୟା ମକଦ୍ଦମାରୁ ଖଲାସ ହୋଇଥିଲେ ।

୧୯୪୮ ମସିହାରେ ସେ ବିଧିବଦ୍ଧଭାବେ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ ଭାବେ କଲିକତାରେ ଅନୁଷ୍ଠିତ ହୋଇଥିବା କମ୍ୟୁନିଷ୍ଟ ପାର୍ଟିର ଜାତୀୟ ସମ୍ମିଳନୀରେ ଯୋଗ ଦେଇଥିଲେ । କେନ୍ଦ୍ର ସରକାର କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ୍ ଘୋଷିତ କଲା ପରେ ସେ କିଛିଦିନ ଓଡ଼ିଶାର ବିଭିନ୍ନ ସ୍ଥାନରେ ଆତ୍ମଗୋପନ କରିଥିଲେ, କିନ୍ତୁ ପରେ ପୋଲିସ୍ ଦ୍ୱାରା ଗିରଫ ହୋଇ ବ୍ରହ୍ମପୁର ଜେଲ୍‌ରେ ବନ୍ଦୀ ଜୀବନ କଟାଇଥିଲେ । ଏହି ଜେଲ୍ ଭିତରେ ସେ ୪୩ ଦିନକାଳ ଅନଶନ କରିବା ଫଳରେ ରକ୍ତବାନ୍ତି କରି ଅଚେତ୍ ହୋଇଯାଇଥିଲେ; କିନ୍ତୁ ନିଜ ମତରେ ଅଟଳ ରହିଥିଲେ ।

୧୯୫୭ ମସିହାରେ ଦେଶର ଦ୍ୱିତୀୟ ସାଧାରଣ ନିର୍ବାଚନରେ ସେ ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀରୁ କମ୍ୟୁନିଷ୍ଟ ପାର୍ଟି ପ୍ରାର୍ଥୀ ଭାବେ ନିର୍ବାଚିତ ହୋଇଥିଲେ । ୧୯୫୮ ମସିହାରୁ ଖୋର୍ଦ୍ଧାରେ ଏକ କଲେଜ ପ୍ରତିଷ୍ଠା କରିବାକୁ ସଂକଳ୍ପ କରି କେନ୍ଦ୍ରମନ୍ତ୍ରୀ ହୁମାୟୁନ କବୀରଙ୍କୁ ଖୋର୍ଦ୍ଧା ଆଣି କଲେଜର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ବହୁ ଘାତପ୍ରତିଘାତ ସତ୍ତ୍ୱେ ୧୯୫୯ ମସିହା ଜୁଲାଇ ୧୯ ତାରିଖରେ ଖୋର୍ଦ୍ଧା କଲେଜର ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଏଥିରେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ, ମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ 'ସମାଜ'ର ତତ୍‌କାଳୀନ ସମ୍ପାଦକ ଡକ୍ଟର ରାଧାନାଥ ରଥ ପ୍ରମୁଖ ଯୋଗ ଦେଇଥିଲେ । ସେ ଖୋର୍ଦ୍ଧା ମହାବିଦ୍ୟାଳୟକୁ ୧୯୬୩ ମସିହାରେ ମୋତିଲାଲ ନେହେରୁଙ୍କ ନାମରେ ନାମିତ କରି ଏକ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ପରିଣତ କରିବାକୁ ଉଦ୍ୟମ କରିଥିଲେ । ଏହି ଉଦ୍ଦେଶ୍ୟରେ ଦିଲ୍ଲୀ

ଯାଇ ପ୍ରଧାନମନ୍ତ୍ରୀ ନେହେରୁଙ୍କ ସହିତ ଭେଟି ଆଲୋଚନା ମଧ୍ୟ କରିଥିଲେ, କିନ୍ତୁ ତାଙ୍କର ଖୋର୍ଦ୍ଧା ମହାବିଦ୍ୟାଳୟକୁ ବିଶ୍ୱବିଦ୍ୟାଳୟରେ ପରିଣତ କରିବା ସ୍ୱପ୍ନ ଆଜିଯାଏ ସାକାର ହୋଇନାହିଁ।

୧୯୬୫-୬୬ ମସିହାରେ କଳାହାଣ୍ଡିରେ ଦୁର୍ଭିକ୍ଷ ପଡ଼ିଥିବା ସମୟରେ ପ୍ରଚଣ୍ଡ ଗ୍ରୀଷ୍ମରେ ଗାଁ ଗାଁ ବୁଲି ଲୋକଙ୍କ ଅକଥନୀୟ ଦୁର୍ଦ୍ଦଶା ବିଷୟରେ ପ୍ରଥମେ ଖବରକାଗଜମାନଙ୍କରେ ପ୍ରକାଶ କରି ସରକାରଙ୍କ ଚରମ ଉଦାସୀନତା ଲୋକଲୋଚନକୁ ଆଣିଥିଲେ। ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ଚିଠି ଲେଖି ଏ ସମସ୍ତ ବିଷୟ ଅବଗତ କରାଇବା ପରେ ଇନ୍ଦିରା ଗାନ୍ଧୀ କଳାହାଣ୍ଡି ଗସ୍ତରେ ଆସିଥିଲେ। ପ୍ରାଣନାଥ ଥିଲେ ଓଡ଼ିଶାର କୃଷକ, ଶ୍ରମିକ, ବାମପନ୍ଥୀ ଆନ୍ଦୋଳନର ଆଦ୍ୟ ପ୍ରବର୍ତ୍ତକ।

୧୯୭୦ ମସିହା ଅକ୍ଟୋବର ୫ ତାରିଖରେ ଏହି ମହାନ କର୍ମଯୋଗୀଙ୍କର କଲିକତାରେ ଚିକିତ୍ସା ହେଉଥିବା ଅବସରରେ ମୃତ୍ୟୁ ଘଟିଥିଲା। ଓଡ଼ିଆ ଜାତିର ଉତ୍‌ଥାନ ଓ ଦରିଦ୍ର ଜନସାଧାରଣଙ୍କ ପାଇଁ ତାଙ୍କର ତ୍ୟାଗ ଓ ନିଷ୍କପଟ ସେବା ତାଙ୍କୁ ଅମର କରିଛି।

*ସଞ୍ଚାର - ୫.୧୦.୨୦୧୬*

# ଅନନ୍ୟ କର୍ମଯୋଗୀ ବିଜୁ ପଟ୍ଟନାୟକ

ବିଜୁ ପଟ୍ଟନାୟକ ଜନ୍ମଗ୍ରହଣ କରିଥିଲେ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ କଟକ ସହରର ତୁଳସୀପୁର ସ୍ଥିତ 'ଆନନ୍ଦ ଭବନ'ରେ। ତାଙ୍କ ପିତାଙ୍କ ନାମ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମାତାଙ୍କ ନାମ ଆଶାଦେବୀ। ୧୯୯୭ ମସିହା ଏପ୍ରିଲ ୧୭ ତାରିଖରେ ଦିଲ୍ଲୀର ଏସ୍କର୍ଟ ଡାକ୍ତରଖାନାରେ ସେ ଇହଲୀଳା ସମ୍ବରଣ କରିଥିଲେ।

ପିଲାଦିନେ ବଙ୍କିମଚନ୍ଦ୍ର ଚଟାର୍ଜୀଙ୍କ 'ଆନନ୍ଦ ମଠ' ପଢ଼ି ତାଙ୍କ ଶରୀର ପୁଲକିତ ହୋଇଥିଲା। ମହାପରାକ୍ରମୀ ଦୁର୍ଦ୍ଧର୍ଷ ସମ୍ରାଟ ମହାମେଘବାହନ ଐରଖାରବେଳ ଥିଲେ ତାଙ୍କ ଜୀବନର ଆଦର୍ଶ। କିଶୋର ଅବସ୍ଥାରେ ମଧୁସୂଦନ ଦାସ ଓଡ଼ିଆମାନଙ୍କୁ ଏକତିତ୍ର କରି ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ନିଜର ସମସ୍ତ ଧନସମ୍ପତ୍ତି ଓ ଜୀବନକୁ ସମର୍ପଣ କରିଥିଲେ, ତାହା ବିଜୁ ପଟ୍ଟନାୟକଙ୍କ ମନରେ ଗଭୀର ରେଖାପାତ କରିଥିଲା। ଭାରତର ସ୍ୱାଧୀନତା ସଂଗ୍ରାମରେ ବିଜୁବାବୁଙ୍କ ବିଭିନ୍ନ କାର୍ଯ୍ୟାବଳୀ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଅଛି। ତାଙ୍କ ଝିଅ ଗୀତା ମେହେଟ୍ଟା ନିଜ ଲିଖିତ ଇଂରାଜୀ ପୁସ୍ତକ *Snake and Ladder* (ସାପ ଓ ଶିଡ଼ି)ରେ ବାପାଙ୍କ ଦୁଃସାହସିକ କାର୍ଯ୍ୟ ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି।

ଦେଶର ସ୍ୱାଧୀନତା ପରେ ନିଜ କାନ୍ଧରେ ଓଡ଼ିଆ ଜାତିକୁ ଉଠାଇବାର ସମଗ୍ର ଓଜନ ବହନ କରି ସେ ସାରା ପୃଥିବୀ ଘୂରିବୁଲୁଥିଲେ। ସେ ସବୁଆଡ଼େ କହିବୁଲୁଥିଲେ, ମୋ ଓଡ଼ିଶା, ପ୍ରତ୍ୟେକ ଓଡ଼ିଆ ମୋ ଭାଇ, ଆମେସବୁ ଏକ ଦୁର୍ଦ୍ଧର୍ଷ ଓ ବୀର ଜାତିର ସନ୍ତାନ, ଆମ ସଂସ୍କୃତି ଶ୍ରେଷ୍ଠ ଓ ସ୍ୱତନ୍ତ୍ର, ଆମ ଐତିହ୍ୟ ବିଶ୍ୱରେ ବିରଳ। ସେ କେବଳ ବାକ୍ୟବୀର ନ ଥିଲେ, ସେ ଥିଲେ ଜଣେ କର୍ମବୀର।

୧୯୫୨ ମସିହାରେ ହୋଇଥିବା ପ୍ରଥମ ସାଧାରଣ ନିର୍ବାଚନରେ ବିଜୁ ପଟ୍ଟନାୟକ କଂଗ୍ରେସ ପ୍ରାର୍ଥୀ ଭାବରେ ଗଞ୍ଜାମ ଜିଲ୍ଲାର ଜଗନ୍ନାଥପ୍ରସାଦ ନିର୍ବାଚନମଣ୍ଡଳୀରୁ ପ୍ରତିଯୋଗିତା କରି ବିଧାନସଭାକୁ ନିର୍ବାଚିତ ହୋଇଥିଲେ। ସେହିଭଳି ୧୯୫୭ ମସିହାରେ ହୋଇଥିବା ଦ୍ୱିତୀୟ ସାଧାରଣ ନିର୍ବାଚନରେ ବିଜୁବାବୁ ଗଞ୍ଜାମ ଜିଲ୍ଲାର ସୋରଡ଼ା ନିର୍ବାଚନମଣ୍ଡଳୀରୁ କଂଗ୍ରେସ ସଦସ୍ୟ ଭାବରେ ବିଧାନସଭାକୁ

ନିର୍ବାଚିତ ହୋଇଥିଲେ। ୧୯୬୧ ମସିହାରେ ଓଡ଼ିଶାରେ ତୃତୀୟ ସାଧାରଣ ନିର୍ବାଚନ ହୋଇଥିଲା। ଏହି ନିର୍ବାଚନରେ କଂଗ୍ରେସ ୮୨ଟି ସ୍ଥାନରେ ବିଜୟୀ ହୋଇଥିଲା। ଏବଂ ବିଜୁ ପଟ୍ଟନାୟକ ହୋଇଥିଲେ ମୁଖ୍ୟମନ୍ତ୍ରୀ। ୧୯୬୨ରୁ ୧୯୬୩ ମସିହା ପର୍ଯ୍ୟନ୍ତ ମାତ୍ର ଦୁଇବର୍ଷ ମୁଖ୍ୟମନ୍ତ୍ରୀତ୍ୱ କାଳରେ ସେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଥିଲେ। କେନ୍ଦ୍ର ସରକାରଙ୍କର ବିନା ଅନୁମତିରେ ଓ ସାହାଯ୍ୟରେ ପାରାଦୀପଠାରେ ସେ ଏକ ବନ୍ଦର ପ୍ରତିଷ୍ଠା କରିଥିଲେ। ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ୩ ଜାନୁଆରୀ ୧୯୬୨ରେ ଏହି ବନ୍ଦରର ଶିଳାନ୍ୟାସ କରିଥିଲେ। ଏହି ବନ୍ଦର ଓଡ଼ିଶାର ଅର୍ଥନୈତିକ ପ୍ରଗତିର ଏକ ମୂଳଦୁଆ ସୃଷ୍ଟି କରିବ ବୋଲି ଭଲଭାବରେ ଜାଣି ସେ ଓଡ଼ିଶା ରାଜକୋଷରୁ ସେତେବେଳେ ୧୯ କୋଟି ଟଙ୍କା ଖର୍ଚ୍ଚ କରିଥିଲେ। ସେଥିପାଇଁ ତାଙ୍କୁ ବହୁ ସମାଲୋଚନାର ଶିକାର ହେବାକୁ ପଡ଼ିଥିଲା। ଦୈତାରୀଠାରୁ ପାରାଦୀପ ପର୍ଯ୍ୟନ୍ତ ୯୧ କି.ମି. ଦୂରତ୍ୱର ଏକ୍ସପ୍ରେସ୍ ହାଇୱେ ନିର୍ମାଣ କରି ସେ ଭାରତରେ ସମସ୍ତଙ୍କୁ ଚକିତ କରାଇଦେଇଥିଲେ। ସେହି ଦୁଇବର୍ଷ ଭିତରେ ରାଜ୍ୟର ଶିଳ୍ପ, ବିଶେଷକରି କୁଟୀରଶିଳ୍ପ, କୃଷି ଓ ଶିକ୍ଷା ଆଦି ପ୍ରତ୍ୟେକ କ୍ଷେତ୍ରରେ ଯଥେଷ୍ଟ ଅଗ୍ରଗତି କରାଇଥିଲେ। ବାଲିମେଳା ନଦୀବନ୍ଧ ଯୋଜନା, ତାଳଚେର ଥର୍ମାଲ ପ୍ରକଳ୍ପ, ସୁନାବେଡ଼ା ମିଗ୍ କାରଖାନା, ବଡ଼ବିଲ ଲୁହା କାରଖାନା, ନାଲକୋ ଆଲୁମିନିୟମ ପ୍ରକଳ୍ପ, ରାଉରକେଲା ଷ୍ଟିଲ ପ୍ଲାଣ୍ଟ ଆଦି ଶିଳ୍ପକାରଖାନା ଏବଂ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ବୁର୍ଲା ଇଂଜିନିୟରିଂ କଲେଜ, ରିଜିଓନାଲ ରିସର୍ଚ୍ଚ ଲାବୋରାଟୋରୀ, ସୈନିକ ସ୍କୁଲ, ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ ଓ ବହୁ ବିଜ୍ଞାନ କଲେଜ ପ୍ରଭୃତି ଅନୁଷ୍ଠାନର ସେ ଥିଲେ ପ୍ରତିଷ୍ଠାତା। ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡ୍, ଓଡ଼ିଶା ଶିଳ୍ପ ବିକାଶ ନିଗମ, ଓଡ଼ିଶା କ୍ଷୁଦ୍ରଶିଳ୍ପ ନିଗମ ଆଦି ବହୁ ନିଗମ ଓ ବୋର୍ଡ଼ ସ୍ଥାପନ ସେହି ସମୟରେ କରାଯାଇଥିଲା।

କଳିଙ୍ଗ ନାମଟିକୁ ପୁନଃପ୍ରତିଷ୍ଠା କରିବା ପାଇଁ ତାଙ୍କ ଉଦ୍ୟମ ଅସାମାନ୍ୟ ଥିଲା। ତାହାର କାରଣ ପୂର୍ବକାଳରେ ଭାରତର ବହୁ ଜାତି ସମୁଦ୍ରରେ ବାଣିଜ୍ୟ କରୁଥିଲେ ମଧ୍ୟ କଳିଙ୍ଗ ଲୋକମାନଙ୍କର ସାହସ ସମସ୍ତଙ୍କଦ୍ୱାରା ପ୍ରଶଂସିତ ହୋଇଥିଲା। ସମସ୍ତେ କହୁଥିଲେ, କଳିଙ୍ଗାଃ ସାହସିକାଃ। ତାଙ୍କ ଜୀବନରେ ସ୍ୱଅର୍ଜିତ ଧନରୁ ସେ ଯେଉଁସବୁ ଅନୁଷ୍ଠାନ ପ୍ରତିଷ୍ଠା କରିଥିଲେ, ତାହା ପୂର୍ବରୁ କଳିଙ୍ଗ ଶବ୍ଦଟିକୁ ଯୋଡ଼ିଦେଇ ଗର୍ବ ଅନୁଭବ କରୁଥିଲେ। ସେ ବିଶ୍ୱର ଶ୍ରେଷ୍ଠ ବୈଜ୍ଞାନିକଙ୍କ ପାଇଁ ୧୯୫୧ ମସିହାରେ

ଜାତିସଂଘର ୟୁନେସ୍କୋ ଜରିଆରେ 'କଳିଙ୍ଗ ପୁରସ୍କାର' ପ୍ରଚଳନର ଶୁଭାରମ୍ଭ କରିଥିଲେ। ଗରିବ ମେଧାବୀ ଛାତ୍ରମାନଙ୍କୁ ଆର୍ଥିକ ସାହାଯ୍ୟ ଦେବାକୁ ଯେଉଁ ଟ୍ରଷ୍ଟ ପ୍ରତିଷ୍ଠା କଲେ ତା' ନାଁ ଦେଇଥିଲେ 'କଳିଙ୍ଗ ଫାଉଣ୍ଡେସନ ଟ୍ରଷ୍ଟ'। ନିଜେ ପ୍ରତିଷ୍ଠା କରିଥିବା ଏୟାରଲାଇନ୍‌ସର ନାମକରଣ କଲେ 'କଳିଙ୍ଗ ଏୟରଲାଇନ୍‌ସ'। ସେହିଭଳି ଅନ୍ୟାନ୍ୟ ପ୍ରତିଷ୍ଠାନର ନାଁଗୁଡ଼ିକ ହେଲା କଳିଙ୍ଗ ଆଇରନ୍ ୱାର୍କସ, କଳିଙ୍ଗ ଟ୍ୟୁବ୍‌ସ ଇତ୍ୟାଦି, ତେଣୁ କଳିଙ୍ଗର ପୂର୍ବ ଗୌରବ ଫେରାଇ ଆଣିବା ପାଇଁ ତାଙ୍କର ଅବିରତ ଉଦ୍ୟମ ଓ କାର୍ଯ୍ୟାବଳୀକୁ ଲକ୍ଷ୍ୟକରି ଓଡିଶାର ଲୋକେ ତାଙ୍କୁ 'କଳିଙ୍ଗ ସମ୍ରାଟ' ବୋଲି ସମ୍ବୋଧନ କରୁଥିଲେ।

ରାଜ୍ୟର ସମସ୍ତ ପ୍ରାକୃତିକ ସମ୍ବଳ ସଦ୍‌ବ୍ୟବହାର କରିବା ଉଦ୍ଦେଶ୍ୟରେ ଯୋଜନା ପ୍ରସ୍ତୁତ କରିବାକୁ ଭାରତର ପ୍ରଖ୍ୟାତ ଇଂଜିନିୟର ଡକ୍ଟର ଅଯୋଧ୍ୟାନାଥ ଖୋସଲାଙ୍କୁ ୧୬ ସେପ୍ଟେମ୍ବର ୧୯୬୨ରେ ବିଜୁବାବୁ ଓଡ଼ିଶାର ରାଜ୍ୟପାଳ କରି ଆଣିଥିଲେ। ଡକ୍ଟର ଖୋସଲା ଓଡ଼ିଶାର ସମସ୍ତ ପ୍ରକାର ସମ୍ପଦ ଓ ସମ୍ବଳର ସର୍ଭେ କରାଇ ଏକ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରିଥିଲେ, ଯାହା ତାଙ୍କ ପ୍ରଣୀତ *Decade of Destiny* ପୁସ୍ତକରେ ଲିପିବଦ୍ଧ ହୋଇ ରହିଛି।

୧୯୯୦ ମସିହା ମାର୍ଚ୍ଚ ମାସ ୫ ତାରିଖରୁ ୧୯୯୫ ମସିହା ମାର୍ଚ୍ଚ ମାସ ୧୫ ତାରିଖ ପର୍ଯ୍ୟନ୍ତ ପୂର୍ଣ୍ଣ ପାଞ୍ଚ ବର୍ଷ ବିଜୁବାବୁ ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ଥିବାବେଳେ ରାଜ୍ୟରେ ବେକାରୀ ଓ ଦାରିଦ୍ର୍ୟ ଦୂରୀକରଣ ପାଇଁ ବହୁ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରିଥିଲେ। ଗରିବ ଲୋକମାନଙ୍କ ଦୈନ୍ୟ ଅବସ୍ଥା ତାଙ୍କ ମନରେ ବହୁତ କଷ୍ଟ ଦେଇଥିଲା, ତେଣୁ ସେ ଶ୍ରମିକମାନଙ୍କର ଦୈନିକ ମଜୁରୀ ୧୧ ଟଙ୍କାରୁ ୨୫ ଟଙ୍କାକୁ ବଢ଼ାଇ ଦେଇଥିଲେ। କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ 'ଆର୍ଥିକ ସାହାଯ୍ୟ ଯୋଜନା', ଗ୍ରାମାଞ୍ଚଳରେ ରହୁଥିବା ଦରିଦ୍ର ଲୋକଙ୍କ ବାସଗୃହ ନିର୍ମାଣ ପାଇଁ 'କଳିଙ୍ଗ କୁଟୀର ଯୋଜନା' ପ୍ରବର୍ତ୍ତନ କରାଇଥିଲେ। ଦୀର୍ଘ ୧୩ ବର୍ଷ ପରେ ଶାସନ ବିକେନ୍ଦ୍ରୀକରଣ ପାଇଁ ପଞ୍ଚାୟତ ଓ ମ୍ୟୁନିସପାଲିଟି ନିର୍ବାଚନ ଅନୁଷ୍ଠିତ କରିବା ସହିତ ଏଥିରେ ମହିଳାମାନଙ୍କ ପାଇଁ ଶତକଡ଼ା ୩୩ ଭାଗ ସ୍ଥାନ ସଂରକ୍ଷଣର ବ୍ୟବସ୍ଥା କରିଥିଲେ। ସରକାରୀ ଚାକିରିରେ ମଧ୍ୟ ମହିଳାଙ୍କ ପାଇଁ ୩୦ ପ୍ରତିଶତ ସ୍ଥାନ ସଂରକ୍ଷଣ ହୋଇଥିଲା। ମହିଳାଙ୍କ ନିଯୁକ୍ତି କ୍ଷେତ୍ରରେ ବୟସ ସୀମା କୋହଳ କରାଯାଇଥିଲା। ବିଧବା ପେନସନରମାନଙ୍କ ବୟସ ସୀମା ଉଚ୍ଛେଦ ହୋଇଥିଲା ଏବଂ ବୃଦ୍ଧ, ଅକ୍ଷମ ଓ ବିଧବା

ଭତ୍ତା ୧୦୦ ଟଙ୍କାକୁ ବୃଦ୍ଧି କରାଯାଇଥିଲା । ରାଜ୍ୟରେ ମହିଳା ବିକାଶ ନିଗମ, ମହିଳା ବ୍ୟାଙ୍କ ଓ ରାଜ୍ୟ ମହିଳା କମିଶନ ପ୍ରତିଷ୍ଠା କରାଯାଇଥିଲା । ଯୌତୁକ ପ୍ରଥାର ନିରାକରଣ ପାଇଁ ଯୌତୁକ ନିରୋଧ ଆଇନର ପ୍ରୟୋଗ ଉପରେ ଗୁରୁତ୍ୱ ଦେଇ 'ଶାଶୂ ହାତକଡ଼ି ନଣନ୍ଦକୁ ବେଡ଼ି' ଭଳି ସ୍ଲୋଗାନ ଦେଇ ଯୌତୁକ ଲୋଭୀମାନଙ୍କ ମନରେ ଭୟ ସଞ୍ଚାର କରାଇଥିଲେ ।

ଦକ୍ଷ ପ୍ରଶାସନ ପାଇଁ ଜିଲ୍ଲା ପୁନର୍ଗଠନ କରାଇ ସେ ରାଜ୍ୟରେ ଜିଲ୍ଲା ସଂଖ୍ୟା ୧୩ ରୁ ୩୦କୁ ବୃଦ୍ଧି କରିଥିଲେ । ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରାଇ ପ୍ରୌଢ଼ ଶିକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କରିଥିଲେ । ରାଜ୍ୟରେ ଦୁର୍ନୀତିମୁକ୍ତ ଶାସନ ପ୍ରଚଳନ କରିବା ଉଦ୍ଦେଶ୍ୟରେ କଳାଧନ ଠୁଳ କରିଥିବା ଅନେକ ରାଜନେତା ଓ ସରକାରୀ କର୍ମଚାରୀଙ୍କ ବିରୋଧରେ ଭିଜିଲାନ୍ସ ବିଭାଗ ଦ୍ୱାରା ତଦନ୍ତ କରାଇ ସେମାନଙ୍କ ଆୟ ବହିର୍ଭୂତ ସମ୍ପତ୍ତି ଜବତ କରାଇଥିଲେ ଏବଂ ସେମାନଙ୍କ ବିରୋଧରେ ମକଦ୍ଦମା ଦାୟର କରାଇଥିଲେ । ଉଚ୍ଚସ୍ତରରେ ଦୁର୍ନୀତି ନିରୋଧ ପାଇଁ ତାଙ୍କ ସମୟରେ ସ୍ୱତନ୍ତ୍ର ଭିଜିଲାନ୍ସ କୋର୍ଟମାନ ପ୍ରତିଷ୍ଠା କରାଯାଇଥିଲା । ମୁଖ୍ୟମନ୍ତ୍ରୀ ପଦବୀରେ ଥାଇ ଲୋକଙ୍କ ସ୍ୱାର୍ଥ ବିରୋଧୀ ଓ ଦୁର୍ନୀତିଗ୍ରସ୍ତ ଥାଇ ଲୋକଙ୍କ ସ୍ୱାର୍ଥ ବିରୋଧୀ ଓ ଦୁର୍ନୀତିଗ୍ରସ୍ତ ଅଫିସରଙ୍କୁ ମାଡ଼ ଦେବାକୁ କହି ନିଜେ ବିବଦମାନ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ ମଧ୍ୟ ସାଧାରଣ ଲୋକମାନଙ୍କ ମନରେ ଉତ୍ସାହ ସୃଷ୍ଟି କରିଥିଲେ । ବିଜୁବାବୁଙ୍କ ବିରୋଧରେ ବହୁ ଅଭିଯୋଗ ହୋଇଥିଲେ ମଧ୍ୟ ସେ କେବେ ଦୁର୍ନୀତି କରିଥିବା ପ୍ରମାଣିତ ହୋଇନାହିଁ । ଖାନ୍ନା କମିଶନ ତାଙ୍କୁ ଦୁର୍ନୀତିମୁକ୍ତ ବୋଲି ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଥିଲେ ।

ବିଜୁବାବୁ ନିଜେ ଜଣେ ଅସାଧାରଣ କ୍ରୀଡ଼ାବିତ୍ ଥିଲେ । ଯୁବସମାଜକୁ ଖେଳକୁଦରେ ଭାଗ ନେବାକୁ ସେ ସବୁବେଳେ ଆହ୍ୱାନ ଦେଉଥିଲେ ଏବଂ ରାଜ୍ୟରେ କ୍ରୀଡ଼ାର ଭିତ୍ତିଭୂମି ସୁଦୃଢ଼ କରାଇଥିଲେ । ତାଙ୍କ ସମୟରେ ସେ ଭୁବନେଶ୍ୱରରେ କଳିଙ୍ଗ ଷ୍ଟାଡ଼ିୟମ ଓ ରାଜ୍ୟର ଅନ୍ୟାନ୍ୟ ଜିଲ୍ଲାମାନଙ୍କରେ ୧୧ଟି ଷ୍ଟାଡ଼ିୟମ, ବହୁ ଜିମ୍ନାସିୟମ ଓ କ୍ରୀଡ଼ା ଛାତ୍ରାବାସ ପ୍ରତିଷ୍ଠା କରାଇଥିଲେ । କଳିଙ୍ଗ କପ୍ ଫୁଟ୍‌ବଲ୍ ଟୁର୍ଣ୍ଣାମେଣ୍ଟର ପୁନଃପ୍ରଚଳନ କରାଇଥିଲେ ।

ଦେଶ ପାଇଁ ସେ ନିଜର ସବୁକିଛି ଦାନ କରିଯାଇଛନ୍ତି । ନିଜସ୍ୱ ବିଚାରବୋଧରେ ସେ ଥିଲେ ଅଟଳ । ସେ ଅନ୍ୟର କଥାରେ ପ୍ରଭାବିତ ହେବା ଲୋକ ନ ଥିଲେ । ଅନ୍ୟାୟ ଅନୀତିର ସେ କଠୋର ସମାଲୋଚନା କରୁଥିଲେ । ପ୍ରଶାସନ କ୍ଷେତ୍ରରେ

ସଂସ୍କାର ଓ ଦକ୍ଷତା ବୃଦ୍ଧି ପାଇଁ ସତତ ଉଦ୍ୟମ କରୁଥିଲେ। ବାହାରକୁ ଯେତେ କଠୋର ଜଣାପଡ଼ିଲେ ମଧ୍ୟ ତାଙ୍କର ହୃଦୟଟା ଥିଲା ଅତି କୋମଳ, ସମ୍ବେଦନଶୀଳ।

ଏକ ମହାନ୍ ସ୍ୱାଧୀନତା ସଂଗ୍ରାମୀ, ଦୁଃସାହସିକ ବୈମାନିକ, ଦକ୍ଷ ରାଷ୍ଟ୍ରନାୟକ, ଦୀନଦୁଃଖୀର ଆଶା ଭରସା, ବିପ୍ଳବୀ ଚିନ୍ତାଧାରାର ରାଜନୀତିଜ୍ଞ, ଲୋକପ୍ରିୟ ଜନନାୟକ, ବିରଳ ସମାଜସେବୀ ଆଦି ବିଭିନ୍ନ ଭୂମିକାରେ ତାଙ୍କ କର୍ମମୟ ଜୀବନରେ ସେ ଅବତୀର୍ଣ୍ଣ ହୋଇଥିଲେ। ଓଡ଼ିଶା ମାଟିର ଅଭ୍ୟୁତ୍ଥାନରେ ଆଜୀବନ ବ୍ରତୀ ବ୍ୟକ୍ତି ଆଉ ଦ୍ୱିତୀୟ କେହି ଆଖି ଆଗରେ ପଡ଼ନ୍ତି ନାହିଁ। ବାସ୍ତବରେ ସେ ଥିଲେ ମୁକୁଟ ବିହୀନ ବାଦଶା। ୱିଲିୟମ ହଙ୍ଗେନ୍ ତାଙ୍କ ରଚିତ *After Nehru Who* ପୁସ୍ତକରେ ବିଜୁ ପଟ୍ଟନାୟକଙ୍କ ନେହେରୁଙ୍କ ପରେ ଭାରତର ପ୍ରଧାନମନ୍ତ୍ରୀ ପଦ ପାଇଁ ଅନ୍ୟତମ ଯୋଗ୍ୟ ବ୍ୟକ୍ତିରୂପେ ବର୍ଣ୍ଣନା କରିଥିଲେ। ଯଦି ବିଜୁବାବୁ ଓଡ଼ିଶାରେ ଜନ୍ମ ହୋଇନଥାନ୍ତେ, ତେବେ ସେ ଭାରତର ପ୍ରଧାନମନ୍ତ୍ରୀ ଆସନ ନିଶ୍ଚିତ ଅଳଙ୍କୃତ କରିପାରିଥାନ୍ତେ।

ବିଜୁ ପଟ୍ଟନାୟକଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ଯଦି ହଜାର ହଜାର ସ୍ୱାଭିମାନୀ, ଦେଶପ୍ରେମୀ ଓଡ଼ିଆ ପିଲା ବାହାରନ୍ତି, ସେହିମାନେ ହିଁ ଓଡ଼ିଶାବାସୀଙ୍କୁ ଦାରିଦ୍ର୍ୟରୁ ମୁକ୍ତି ଦେବେ ଓ ଓଡ଼ିଶାକୁ ଦୁର୍ନୀତିମୁକ୍ତ କରି ସମୃଦ୍ଧିପଥରେ ଆଗେଇ ନେବେ। ଫଳରେ ଓଡ଼ିଶା ତା'ର ପୂର୍ବ ବିଭବ ଓ ପୂର୍ବ ଗୌରବ ଫେରିପାଇବ।

***ସଂଘର - ୫.୩.୨୦୧୬***

# ଓଡ଼ିଶାକୁ ନ୍ୟୁୟର୍କ କରିଦେବି

୧୯୬୭ ମସିହା ମାର୍ଚ୍ଚ ମାସରେ ହୋଇଥିବା ଓଡ଼ିଶା ବିଧାନସଭା ନିର୍ବାଚନ ପୂର୍ବରୁ 'ଓଡ଼ିଶାକୁ ନ୍ୟୁୟର୍କ କରିଦେବି, ଆଉ ଗୋଟିଏ ଚାନ୍ସ ପ୍ଲିଜ୍' – ଏହିଭଳି ଆତ୍ମକଥନ ବିଜୁ ପଟ୍ଟନାୟକ କରିଥିଲେ ବୋଲି ଲେଖିଛନ୍ତି ପ୍ରଫେସର ରାଜକିଶୋର ରାୟ। ବିଜୁବାବୁଙ୍କର ସେ ସାମର୍ଥ୍ୟ ଥିଲା, କିନ୍ତୁ ଓଡ଼ିଶାବାସୀ ତାଙ୍କୁ ଚିହ୍ନିପାରିଲେ ନାହିଁ। ୧୯୬୭ ମସିହାରେ କଂଗ୍ରେସ ଦଳ ନିର୍ବାଚନରେ ପରାଜିତ ହେଲା। ସାର୍ ଜୁଲିଆନ ହକ୍ସଲେ ବିଜୁ ପଟ୍ଟନାୟକଙ୍କୁ ଭାରତର ଜଣେ ଅସାଧାରଣ ବ୍ୟକ୍ତିତ୍ୱ ଭାବରେ ଚିତ୍ରିତ କରିଛନ୍ତି। ଭାରତର ପ୍ରଧାନମନ୍ତ୍ରୀ ପଦ ପାଇଁ ବିଜୁ ପଟ୍ଟନାୟକ ଅନ୍ୟତମ ଯୋଗ୍ୟ ବ୍ୟକ୍ତି ଥିଲେ ବୋଲି *After Nehru Who* ପୁସ୍ତକରେ ୱିଲିୟମ ହଙ୍ଗେନ୍ ଲେଖିଛନ୍ତି। ଏହି ବିଜୁବାବୁ ଥରେ କଥାପ୍ରସଙ୍ଗରେ ରାଜକିଶୋର ରାୟଙ୍କୁ କହିପକାଇଲେ, "ରାଜକିଶୋରବାବୁ, ଜୀବନ ଶେଷ ହୋଇ ଆସୁଛି, ଓଡ଼ିଆଙ୍କ ପାଇଁ ଯାହା କରିବାକୁ ସଂକଳ୍ପ ନେଇଥିଲି, ଆଉ କେବେ କରିବି ? ସମସ୍ତେ ତ ପଛରେ ଲାଗିଲେ, କେତେ ସମ୍ଭାଳିବି ? ଗୋଟିଏ ଲଙ୍ଗ୍ସ ନାହିଁ, ଆରଟିରେ କାମ ଚଳାଇ ନେଉଛି। ସେଇଟା ବନ୍ଦ ହୋଇଗଲେ ?" ତାଙ୍କର ସ୍ୱର୍ଗପ୍ରାପ୍ତି ହେଲା ୧୭ ଏପ୍ରିଲ୍ ୧୯୯୭ ମସିହାରେ। ବିଜୁ ପଟ୍ଟନାୟକଙ୍କର ସ୍ୱପ୍ନ ଓଡ଼ିଶାକୁ ନ୍ୟୁୟର୍କ କରିଦେବେ ଅପୂରଣୀୟ ରହିଗଲା। ଓଡ଼ିଶାକୁ ନ୍ୟୁୟର୍କ ସହିତ ସମକକ୍ଷ କରିବାର ଦାୟିତ୍ୱ ଉତ୍ତରପୁରୁଷମାନଙ୍କ ଉପରେ ସେ ଛାଡ଼ିଯାଇଛନ୍ତି।

ଓଡ଼ିଶାକୁ ବିଶ୍ୱର ସର୍ବଶ୍ରେଷ୍ଠ ରାଜ୍ୟ କରିବାକୁ କେବଳ ଜଣେ ବ୍ୟକ୍ତି ଚାହୁଁଥିଲେ, ସେ ହେଉଛନ୍ତି ବିଜୁ ପଟ୍ଟନାୟକ – ଓଡ଼ିଶାର ଦ୍ୱିତୀୟ ଖାରବେଳ। ବିଜୁବାବୁ ଥିଲେ କେବଳ କାର୍ଯ୍ୟର ମଣିଷ। କାର୍ଯ୍ୟରତ ଥିଲେ ଓଡ଼ିଆ ଜାତିକୁ ଏକ ପ୍ରଗତିଶୀଳ, ଐଶ୍ୱର୍ଯ୍ୟଶୀଳ, ଶୌର୍ଯ୍ୟଶୀଳ ଜାତିଭାବେ ବିଶ୍ୱରେ ପ୍ରତିଷ୍ଠିତ କରାଇବାକୁ। ୧୯୪୫ ମସିହାରେ ବିଜୁ ପଟ୍ଟନାୟକ ପାରୋଲରେ ଜେଲ୍‌ରୁ ମୁକ୍ତ ହୋଇଥାନ୍ତି। ସେହି ସମୟରେ ହିଁ ସେ ଚିନ୍ତା କରିଥିଲେ ଯେ ଦ୍ରୁତ ଶିଳ୍ପାୟନ ବିନା ଓଡ଼ିଶାର ଅଗ୍ରଗତି ଅସମ୍ଭବ। ତାଙ୍କ ପୂର୍ବରୁ ଓଡ଼ିଶା ପ୍ରଦେଶର ନିର୍ମାତା ଉତ୍କଳ ଗୌରବ ମଧୁସୂଦନ ଏହିଭଳି ଚିନ୍ତାଧାରାର

ପ୍ରଥମ ପୁରୁଷ ଥିଲେ। ବିଜୁ ପଟ୍ଟନାୟକ କାଳ ବିଳମ୍ବ ନ କରି ୧୯୪୫ ମସିହାରେ 'B Patnaik & Co' ନାମରେ ଏକ କମ୍ପାନୀକୁ ପଞ୍ଜିକରଣ କରାଇଥିଲେ। ଏହି କମ୍ପାନୀର ଅଂଶୀଦାର ଥିଲେ ଭାରତର ଜଣାଶୁଣା ଶିଳ୍ପପତି ଲାଲା ଶ୍ରୀରାମ ପରିବାରର ଲୋକ ପ୍ରତାପ ସିଂ। ତାଙ୍କର ଅଂଶଧନ ଥିଲା ୪୫ ପ୍ରତିଶତ। ଅନ୍ୟତମ ଅଂଶୀଦାର ଥିଲେ ଓଡ଼ିଶାର ସ୍ୱନାମଧନ୍ୟ ବ୍ୟକ୍ତି ଭୁବନାନନ୍ଦ ଦାସ। ତାଙ୍କର ଅଂଶଧନ ଥିଲା ୧୦ ପ୍ରତିଶତ। ବିଜୁ ପଟ୍ଟନାୟକ ନିଜେ ୪୫ ପ୍ରତିଶତ ଅଂଶଧନ ଖଟାଇଥିଲେ। ଓଡ଼ିଶାରେ ଏକ ଲୁଗାକଳ ପ୍ରତିଷ୍ଠା କରିବାକୁ 'B Patnaik & Co'କୁ ଭାରତ ସରକାରଙ୍କଠାରୁ ଲାଇସେନ୍ସ ମିଳିଥିଲା।

ଡକ୍ଟର ହରେକୃଷ୍ଣ ମହତାବ ୧୯୪୫ ମସିହ ମେ' ମାସ ୧ ତାରିଖ ଦିନ ସମ୍ବଲପୁର ଜେଲ୍‌ରୁ ଖଲାସ ହୋଇ କଟକରେ ପହଞ୍ଚିଲେ ଓ ନିଜ ବନ୍ଧୁ ନିତ୍ୟାନନ୍ଦ କାନୁନଗୋଙ୍କର ବାଖରାବାଦ ଘରେ ଆତିଥ୍ୟ ଗ୍ରହଣ କଲେ। ସେହି ସମୟରେ ଦିନେ ନିତ୍ୟାନନ୍ଦ କାନୁନଗୋ ଓ ଅନ୍ୟ କେତେକ ବିଶିଷ୍ଟ ବ୍ୟକ୍ତି ବିଜୁ ପଟ୍ଟନାୟକଙ୍କ ଉପସ୍ଥିତିରେ ଚୌଦ୍ୱାରରେ ଲୁଗାକଳ ପ୍ରତିଷ୍ଠା ସମ୍ପର୍କରେ ଆଲୋଚନା କଲାବେଳେ ଡକ୍ଟର ମହତାବ ବିଜୁ ପଟ୍ଟନାୟକଙ୍କ ଉଦ୍ୟମକୁ ଭୂରି ଭୂରି ପ୍ରଶଂସା କରିଥିଲେ। ଡକ୍ଟର ମହତାବଙ୍କର ଆନ୍ତରିକ ଇଚ୍ଛା ଥିଲା ଯେ ବିଜୁ ପଟ୍ଟନାୟକ ତାଙ୍କର ସ୍ୱପ୍ନର ଓଡ଼ିଶାକୁ ଶିଳ୍ପସମୃଦ୍ଧ କରନ୍ତୁ ଏବଂ ତାଙ୍କର ରାଜନୈତିକ ଅଭିଳାଷ ଚରିତାର୍ଥ କରିବାରେ ସହଯୋଗ କରନ୍ତୁ। ଆମ ରାଜ୍ୟର ଜନପ୍ରିୟ ଲୋକସଭା ସଦସ୍ୟ ଭର୍ତ୍ତୃହରି ମହତାବ ଏହି କଥା 'ପ୍ରଜାତନ୍ତ୍ର'ର ୨୧ ମେ' ୨୦୦୦ ମସିହାରେ ପ୍ରକାଶିତ ଏକ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି।

ମାତ୍ର ୭୫ ଲକ୍ଷ ଟଙ୍କାରେ ୧୯୪୬ ମସିହାରେ ବିଜୁ ପଟ୍ଟନାୟକ ଓଟିଏମ୍ ଆରମ୍ଭ କରିଥିଲେ। ୧୯୫୦ ମସିହାରେ ଓଟିଏମ୍‌ର ଉଦ୍‌ଘାଟନ ସମୟରେ ସେଠାରେ ୫ ହଜାର ଲୋକ ନିଯୁକ୍ତ ଥିଲେ। ଟାଙ୍ଗରା ଭୂଇଁ ଚୌଦ୍ୱାରରେ ଏକ ସହର ଗଢ଼ି ଉଠିଲା ଯଦ୍ୱାରା ପ୍ରାୟ ୩୦ ହଜାର ଲୋକ ବିଭିନ୍ନ ଆନୁଷଙ୍ଗିକ କାର୍ଯ୍ୟ କରି ଜୀବିକାର୍ଜନ କରିବାକୁ ସକ୍ଷମ ହୋଇଥିଲେ। ଓଟିଏମ୍ ସେ ସମୟରେ ପ୍ରଚୁର ଲାଭ କରୁଥିଲା। ୧୯୬୦ ମସିହା ବେଳକୁ ଓଟିଏମ୍ ଏକ ପ୍ରତିଷ୍ଠିତ ଲୁଗାକଳ ହିସାବରେ ଦେଶରେ ଖ୍ୟାତିଲାଭ କରିଥିଲା। ବିଜୁ ପଟ୍ଟନାୟକ ଯେ ଜଣେ ଅସାଧାରଣ ଉଦ୍‌ଯୋଗୀ ପୁରୁଷ ଥିଲେ ତାହା ମାତ୍ର ଏକ ଦଶନ୍ଧି ଭିତରେ ସେ ପ୍ରତିଷ୍ଠା କରିଥିବା ଶିଳ୍ପସଂସ୍ଥାମାନଙ୍କରୁ

ଜଣାଯାଏ। ୧୯୫୦ରୁ ୧୯୬୦ ମଧ୍ୟରେ ଓଡ଼ିଶାରେ ବିଜୁବାବୁଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା କଳିଙ୍ଗ ଆଇରନ୍ ୱାର୍କସ୍, କଳିଙ୍ଗ ଟ୍ୟୁବ୍ସ, କଳିଙ୍ଗ ରେଫ୍ରିଜେରେଟର, କଳିଙ୍ଗ ଏୟାର ଲାଇନ୍ସ।

ସେ ୧୯୫୧ ମସିହାରେ ପ୍ରତିଷ୍ଠା କରିଥିଲେ 'କଳିଙ୍ଗ ଟ୍ରଷ୍ଟ ଫଣ୍ଡ'। ଏହି 'କଳିଙ୍ଗ ଟ୍ରଷ୍ଟ ଫଣ୍ଡ' ଦ୍ୱାରା ହଜାର ହଜାର ଗରିବ ମେଧାବୀ ଛାତ୍ରଙ୍କୁ ସେ ସମୟରୁ ଆଜି ପର୍ଯ୍ୟନ୍ତ ବୃତ୍ତି ପ୍ରଦାନ କରାଯାଉଛି। ଯାହାଦ୍ୱାରା ଉପଯୁକ୍ତ ଶିକ୍ଷା ଅର୍ଜନ କରି ବିଭିନ୍ନ ବ୍ୟକ୍ତି ଦେଶ ଓ ବିଦେଶରେ ସୁନାମ ଅର୍ଜନ କରିପାରିଛନ୍ତି। କେନ୍ଦ୍ରରେ ବୈଦେଶିକ ରାଷ୍ଟ୍ରମନ୍ତ୍ରୀ ଥିବାବେଳେ ସମରେନ୍ଦ୍ର କୁଣ୍ଡୁ ପୃଥିବୀର ବହୁ ଦେଶ ଭ୍ରମଣ କରିଥିଲେ। ସେହି ଅବସରରେ ସେ ବହୁ ଓଡ଼ିଆ ଡାକ୍ତର, ବୈଜ୍ଞାନିକ, ଇଂଜିନିୟର ଓ ବୁଦ୍ଧିଜୀବୀଙ୍କୁ ଭେଟିଥିଲେ। ସେମାନଙ୍କ ମଧ୍ୟରୁ ଅଧିକାଂଶ ତାଙ୍କୁ ବିଜୁ ପଟ୍ଟନାୟକଙ୍କ ସାହାଯ୍ୟ ଯୋଗୁଁ ସେମାନେ ଉଚ୍ଚ ସୋପାନରେ ପହଞ୍ଚି ପାରିଥିବା କଥା କହିଥିଲେ। ଏହି 'କଳିଙ୍ଗ ଟ୍ରଷ୍ଟ' ଜରିଆରେ ସେ ସ୍ଥାପନ କଲେ 'ଅନ୍ତର୍ଜାତୀୟ କଳିଙ୍ଗ ପୁରସ୍କାର'। ମିଳିତ ଜାତିସଂଘର ପ୍ରମୁଖ ଶାଖା United Nations Education Scientific and Cultural Organization (UNESCO) ମାଧ୍ୟମରେ ଏହି କଳିଙ୍ଗ ପୁରସ୍କାର ପ୍ରଦାନ କରାଯିବା ୧୯୫୨ ମସିହାରୁ ଆରମ୍ଭ ହୋଇଛି। ଏଥିପାଇଁ ସେ ଏକଲକ୍ଷ ପାଉଣ୍ଡ ସ୍ଥାୟୀ ଜମା UNESCOକୁ ପ୍ରଦାନ କରିଥିଲେ। କଳିଙ୍ଗ ନାମକୁ ସାରାବିଶ୍ୱରେ ପରିଚିତ କରାଇବାକୁ ସେ ଏହି ପୁରସ୍କାରର ପ୍ରଚଳନ କରାଇଥିଲେ, ଏହା କାହାକୁ ଅଛପା ନାହିଁ। ୧୯୫୨ରୁ ୨୦୧୫ ମସିହା ମଧ୍ୟରେ ୬୭ଜଣ ଏହି ପୁରସ୍କାର ପାଇସାରିଲେଣି।

ବିଜୁବାବୁଙ୍କର ରାଜନୈତିକ ପରିଚୟ ଆରମ୍ଭ ହେଲା ୧୯୪୬ ମସିହାରେ, ଯେତେବେଳେ ଡକ୍ଟର ହରେକୃଷ୍ଣ ମହତାବ ତାଙ୍କର ଉତ୍ସାହ, କର୍ମତତ୍ପରତା ଓ ଦୁଃସାହସିକ ବ୍ୟକ୍ତିତ୍ୱରେ ବିମୁଗ୍ଧ ହୋଇ ତାଙ୍କୁ କଟକ ବିଧାନସଭା ଆସନରୁ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ପରିବର୍ତ୍ତେ କଂଗ୍ରେସର ପ୍ରାର୍ଥୀ ରୂପେ ମନୋନୟନ କରିଥିଲେ। ଡକ୍ଟର ମହତାବ ହିଁ ବିଜୁ ପଟ୍ଟନାୟକଙ୍କ ରାଜନୀତି ଜୀବନର ଭିତ୍ତି ସ୍ଥାପନ କରିଥିଲେ। ବିଜୁ ପଟ୍ଟନାୟକ ଜଣେ ଉଚ୍ଚାଭିଳାଷୀ ବ୍ୟକ୍ତି ଥିଲେ ଏବଂ ଓଡ଼ିଶା ରାଜନୀତିକୁ କରାୟତ କରିବାକୁ ସଚେଷ୍ଟ ହେବାରୁ ଡକ୍ଟର ମହତାବ ଓ ତାଙ୍କ ଭିତରେ ତିକ୍ତତା ଜନ୍ମିଲା। ୧୯୬୧ ମସିହାରେ ବିଜୁ ପଟ୍ଟନାୟକ ଓଡ଼ିଶା କଂଗ୍ରେସର ସଭାପତି ରୂପେ

ନିର୍ବାଚିତ ହେଲେ। ୧୯୬୧ର ନିର୍ବାଚନ ରଣାଙ୍ଗନରେ ଅବତୀର୍ଣ୍ଣ ହେବା ପୂର୍ବରୁ ସେ କଂଗ୍ରେସର ନିର୍ବାଚନ ଇସ୍ତାହାରରେ ରାଜ୍ୟରେ ଶିଳ୍ପାୟନକୁ ପ୍ରାଥମିକତା ଦେଇ ସାଧାରଣ ଜନତାଙ୍କ ମନରେ ଏକ ନୂତନ ଆଶାର ସଞ୍ଚାର କରାଇଥିଲେ। ଗ୍ରାମାଞ୍ଚଳରେ ସ୍ୱଚ୍ଛ ପାନୀୟ ଜଳ ଯୋଗାଇ ଦେବାର ପ୍ରତିଶ୍ରୁତି, ଯୁବକମାନଙ୍କ ପାଇଁ କର୍ମନିଯୁକ୍ତିର ସୁଯୋଗ, ପାରମ୍ପରିକ କୃଷି ପ୍ରଣାଳୀର ପରିବର୍ତ୍ତନ ଆଣିବା ପାଇଁ କାଠ ହଳଲଙ୍ଗଳ ପରିବର୍ତ୍ତେ ଲୁହା ହଳଲଙ୍ଗଳର ପ୍ରଚଳନ ପାଇଁ ସେ ଆହ୍ୱାନ ଦେଇଥିଲେ। କାଠ ଚକର ଶଗଡ଼ ପରିବର୍ତ୍ତେ ବଲ୍ ବିଏରିଂର ଶଗଡ଼ ଚଳାଇବା, ଢିଙ୍କି ପରିବର୍ତ୍ତେ ଧାନକଳ, ଘଣା ପରିବର୍ତ୍ତେ ତେଲକଳ, ଜଳସେଚନ ପାଇଁ ପମ୍ପ ସେଟ୍ ଓ କୃଷିଦ୍ରବ୍ୟ ସଂରକ୍ଷିତ ରଖିବା ପାଇଁ ଗୋଦାମ ଘରର ବ୍ୟବସ୍ଥା ପ୍ରଭୃତି ପ୍ରଗତିଶୀଳ କାର୍ଯ୍ୟକ୍ରମର ଆହ୍ୱାନ ଦେଇ ସେ ଓଡ଼ିଶାବାସୀଙ୍କ ମନରେ ଉନ୍ମାଦନା ଜାଗରଣ କରିଥିଲେ।

୧୯୬୧ ନିର୍ବାଚନରେ କଂଗ୍ରସ ଦଳ ୧୪୦ଟି ଆସନରୁ ନିର୍ବାଚନ ଲଢ଼ି ୮୨ଟି ଆସନରେ ଜିତିଥିଲେ। ଏହା ବିଜୁବାବୁଙ୍କର ଅସାଧାରଣ ଦକ୍ଷତାକୁ ପ୍ରମାଣ କରିଥିଲା। ୨୩ ଜୁନ ୧୯୬୧ରେ ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ ଆସୀନ ହୋଇଥିଲେ ଏବଂ ତାଙ୍କର ଅନ୍ତରଙ୍ଗ ବନ୍ଧୁ ବିରେନ୍ ମିତ୍ର ଉପ-ମୁଖ୍ୟମନ୍ତ୍ରୀ ହୋଇଥିଲେ। ୨ ଅକ୍ଟୋବର ୧୯୬୩ ମସିହାରେ ମାତ୍ର ୨ବର୍ଷ ୪ମାସର ମୁଖ୍ୟମନ୍ତ୍ରୀତ୍ୱ ପରେ କାମରାଜ ଯୋଜନା ଅନୁଯାୟୀ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ। ଯଦି ପଶ୍ଚିମବଙ୍ଗର ଜ୍ୟୋତି ବସୁଙ୍କ ଭଳି ବିଜୁବାବୁ ୩୦ବର୍ଷ ନିରନ୍ତର ମୁଖ୍ୟମନ୍ତ୍ରୀ ହେବାର ସୁଯୋଗ ପାଇଥାନ୍ତେ ତେବେ ଓଡ଼ିଶାକୁ ନିଶ୍ଚିତ ଭାବେ ଭାରତର ସର୍ବଶ୍ରେଷ୍ଠ ରାଜ୍ୟରେ ପରିଣତ କରିପାରିଥାନ୍ତେ।

ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଓଡ଼ିଶା ଇତିହାସରେ ପ୍ରଗତିର ଏକ ନୂତନ ଅଧ୍ୟାୟ ସୃଷ୍ଟି ହୋଇଥିଲା। ଶିକ୍ଷା, ଶିଳ୍ପ, ସ୍ୱାସ୍ଥ୍ୟ, ଗମନାଗମନ, କୃଷି, ବୈଷୟିକ ଶିକ୍ଷା, ଗବେଷଣା, ଜଳସେଚନ ସମସ୍ତ କ୍ଷେତ୍ରରେ ବିଜୁବାବୁ ଓଡ଼ିଶା ନିର୍ମାଣର ଅୟମାରମ୍ଭ କରିଥିଲେ। ଏହି ସମୟରେ ପାରାଦ୍ୱୀପ ବନ୍ଦର, ଏକ୍ସପ୍ରେସ ହାଇୱେ, ଜାତୀୟ ରାଜପଥ, ସୁନାବେଡ଼ାଠାରେ ମିଗ୍ ବିମାନ କାରଖାନା, ବରଗଡ଼ ସିମେଣ୍ଟ କାରଖାନା, ପଞ୍ଚାୟତ ଶିଳ୍ପ ସମେତ ଅନେକ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ, ବ୍ରହ୍ମପୁର ଓ ସମ୍ବଲପୁରଠାରେ ଦୁଇଟି ବିଶ୍ୱବିଦ୍ୟାଳୟ, ବୁର୍ଲାଠାରେ ବୀର ସୁରେନ୍ଦ୍ର ସାଏ ମେଡିକାଲ କଲେଜ, ବ୍ରହ୍ମପୁରଠାରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମେଡିକାଲ କଲେଜ,

ଭୁବନେଶ୍ୱରରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ଆଞ୍ଚଳିକ ଗବେଷଣାଗାର, ସୈନିକ ସ୍କୁଲ, ରିଜିଓନାଲ କଲେଜ୍ ଅଫ୍ ଏଜୁକେଶନ, ଚାରିବାଟିଆଠାରେ ଏୟାର ଫୋର୍ସ ଷ୍ଟେସନ୍, ବୁର୍ଲାଠାରେ ଇଞ୍ଜିନିୟରିଂ କଲେଜ ଓ ରାଉରକେଲାଠାରେ ରିଜିଓନାଲ ଇଞ୍ଜିନିୟରିଂ କଲେଜ, ବାଲିମେଳା ଡ୍ୟାମ୍ ପ୍ରୋଜେକ୍ଟ ପ୍ରଭୃତି ସ୍ଥାପିତ ହୋଇଥିଲା। ତାଳଚେର ଥର୍ମାଲର ପ୍ରାରମ୍ଭିକ କାର୍ଯ୍ୟ ମଧ୍ୟ ଆରମ୍ଭ ହୋଇଥିଲା।

୧୯୬୧ ମସିହାରେ ବିଜୁବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାପରେ ରାଜ୍ୟରେ ଶିଳ୍ପ, କୃଷି ଓ ବାଣିଜ୍ୟ ବ୍ୟବସାୟର ବିକାଶ ପାଇଁ ବହୁ ପଦକ୍ଷେପ ନେବା ଆରମ୍ଭ କଲେ। ସେ ସରକାରୀ ଉଦ୍ୟମରେ ରାଜ୍ୟରେ ବୃହତ, ମଧ୍ୟମ ଓ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା ପାଇଁ ସ୍ଥିର କଲେ। ବୃହତ ଓ ମଧ୍ୟମ ଶିଳ୍ପର ବିକାଶ ପାଇଁ 'ଓଡ଼ିଶା ଶିଳ୍ପ ବିକାଶ ନିଗମ' ଗଠନ କଲେ। ସେହିପରି କ୍ଷୁଦ୍ରଶିଳ୍ପର ବିକାଶ ପାଇଁ 'ଓଡ଼ିଶା କ୍ଷୁଦ୍ରଶିଳ୍ପ ନିଗମ' ଗଠନ କଲେ। ଗ୍ରାମାଞ୍ଚଳରେ ଶିଳ୍ପ ବିକାଶ ପାଇଁ 'ପଞ୍ଚାୟତ ଶିଳ୍ପ ଯୋଜନା' କାର୍ଯ୍ୟକାରୀ କଲେ। ଓଡ଼ିଶାର ଜଙ୍ଗଲ ସମ୍ପଦର ବିକାଶ ପାଇଁ 'ଓଡ଼ିଶା ଜଙ୍ଗଲ ଉନ୍ନୟନ ନିଗମ', ଖଣିଜ ସମ୍ପଦର ଉପଯୁକ୍ତ ବିନିଯୋଗ ପାଇଁ 'ଓଡ଼ିଶା ଖଣି ନିଗମ' ଗଠନ କରିଥିଲେ। ବିଜୁବାବୁଙ୍କ ନିରନ୍ତର ଉଦ୍ୟମ ଫଳରେ ଓଡ଼ିଶାରେ ବାଣିଜ୍ୟ, ବ୍ୟବସାୟ ଓ ଶିଳ୍ପର ଅଭିବୃଦ୍ଧି ପାଇଁ ବାଟ ଫିଟିଲା।

୧୯୬୭ ମସିହା ବେଳକୁ ଓଡ଼ିଶାରେ କଂଗ୍ରେସ ଓ ଏହାର ନେତୃତ୍ୱ ବିରୋଧରେ ଅପପ୍ରଚାର ତୀବ୍ର ହୋଇଉଠିଲା। ଭଲ ଭେଲ ପରୀକ୍ଷା ନ କରି ବିଜୁବାବୁ କରିଥିବା ଅସାଧାରଣ କାର୍ଯ୍ୟସବୁର ସକାରାତ୍ମକ ଦିଗକୁ ଆଖି ବୁଜିଦେଇ କେବଳ ଅସୂୟାପରବଶ ହୋଇ ଡକ୍ଟର ହରେକୃଷ୍ଣ ମହତାବ, ରାଜେନ୍ଦ୍ର ନାରାୟଣ ସିଂହଦେଓ ପ୍ରଭୃତି ବ୍ୟକ୍ତିମାନେ ଯେଭଳି ଆକ୍ରମଣ କଲେ ତାହା ବିଜୁବାବୁଙ୍କ ଭାବମୂର୍ତ୍ତିକୁ କ୍ଷୁଣ୍ଣ କଲା। ବିଜୁବାବୁ ଓ କଂଗ୍ରେସ ଦଳ ୧୯୬୭ ନିର୍ବାଚନରେ ପରାଜୟ ବରଣ କଲେ। ଯଦି ବିଜୁବାବୁଙ୍କ କଂଗ୍ରେସ ଦଳ ଜିତିଥାନ୍ତା, ତେବେ ଓଡ଼ିଶାର ପ୍ରଗତି କ୍ଷିପ୍ରତର ହୋଇଥାନ୍ତା। ୧୯୯୦ ମସିହାରେ ବିଜୁ ପଟ୍ଟନାୟକ ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ହେଲାବେଳକୁ ଦେଶର ରାଜନୈତିକ ବାତାବରଣରେ ଘୋର ପରିବର୍ତ୍ତନ ଘଟିଥିଲା। ୧୯୯୦ରୁ ୧୯୯୫ ଯାଏ ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଶାସନରେ ସେ ବହୁ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଥିଲେ, କିନ୍ତୁ ଓଡ଼ିଶାକୁ ନ୍ୟୁୟର୍କ କରିପାରିଲେ ନାହିଁ।

*ସମାଜ- ୫.୩.୨୦୧୬*

# ଅଖ୍ୟାତ ଗାଁର ବିଖ୍ୟାତ ମଣିଷ ବରେନ୍ଦ୍ରକୃଷ୍ଣ ଧଳ

ଓଡ଼ିଶାର ଶିକ୍ଷିତ ସମାଜରେ ବରେନ୍ଦ୍ରକୃଷ୍ଣ ଧଳ ଏକ ଜଣାଶୁଣା ନାଁ। ବହୁଲୋକ ତାଙ୍କୁ ଜଣେ ସତ୍ୟନିଷ୍ଠ, ନିର୍ଭୀକ, ନିରପେକ୍ଷ ଓ ସାଲିସବିହୀନ ସାମ୍ବାଦିକ ଭାବେ ଜାଣିଥିଲାବେଳେ ଓଡ଼ିଆ ସାହିତ୍ୟରେ ଯେଉଁମାନେ ରୁଚି ରଖନ୍ତି, ସେମାନେ ବରେନ୍ଦ୍ରବାବୁଙ୍କୁ ଜଣେ ଶକ୍ତିଶାଳୀ କଥାକାର ଭାବେ ଜାଣନ୍ତି। ତାଙ୍କର ଆଜି ପର୍ଯ୍ୟନ୍ତ ବାଇଶିଖଣ୍ଡ ଗଳ୍ପ ସଂକଳନ ପ୍ରକାଶ ପାଇଛି। ଗଳ୍ପ ବ୍ୟତୀତ ଶ୍ରୀ ଧଳଙ୍କର ସାତୋଟି ମୌଳିକ ଓଡ଼ିଆ ଉପନ୍ୟାସ, ଛଅଟି ଅନୁବାଦ ଉପନ୍ୟାସ, ଅଠରଟି ରାଜନୀତିକ ଓ ସାହିତ୍ୟ ସମାଲୋଚନା ପୁସ୍ତକ ଓ ଦୁଇଟି ଶିଶୁସାହିତ୍ୟ ପୁସ୍ତକ ପ୍ରକାଶ ପାଇଛି। ଓଡ଼ିଶାରେ ଖୁବ କମ୍ ଲେଖକ ଅଛନ୍ତି ଯେଉଁମାନେ ସାହିତ୍ୟର ପ୍ରାୟ ସବୁକ୍ଷେତ୍ରରେ ଲେଖନୀ ଚାଳନା କରି ବରେନ୍ଦ୍ରବାବୁଙ୍କ ଭଳି ସଫଳତା ହାସଲ କରିଛନ୍ତି। ବରେନ୍ଦ୍ରବାବୁ ବିଭିନ୍ନ ଭାଷାର ପୁସ୍ତକ ଓଡ଼ିଆରେ ଅନୁବାଦ କରି ଆମ ଭାଷାକୁ ପରିପୁଷ୍ଟ କରିଥିବା ଜଣେ ନିପୁଣ ଅନୁବାଦକ। ତାଙ୍କ ଅନୁବାଦକ ପୁସ୍ତକ ଶାମ୍ବ (ମୂଳ ବଙ୍ଗଳା ରଚନା କାଳକୂଟ) ୧୯୯୩ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିଲା।

ବରେନ୍ଦ୍ରବାବୁଙ୍କ ଭଳି ଖ୍ୟାତି ଲାଭ କରିଥିବା ସାମ୍ବାଦିକ ଓଡ଼ିଶାରେ ବୋଧହୁଏ ଆଉ କେହି ନାହାଁନ୍ତି। ସେ ପ୍ରଥମ ଓଡ଼ିଆ ସାମ୍ବାଦିକ ଯେ କି ନ୍ୟାସନାଲ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟର ସର୍ବଭାରତୀୟ ସଭାପତି ଭାବେ ୧୯୯୦ ମସିହାରେ ନିର୍ବାଚିତ ହୋଇ ୨ବର୍ଷ ପର୍ଯ୍ୟନ୍ତ ଦକ୍ଷତାର ସହ କାର୍ଯ୍ୟ କରି ଉଚ୍ଚ ପ୍ରଶଂସିତ ହୋଇଥିଲେ। ସାମ୍ବାଦିକ ଭାବରେ ତାଙ୍କର ଅଭିଜ୍ଞତା ବୋଧହୁଏ ବହୁତ କମ୍ ଲୋକଙ୍କ ପାଖରେ ଥିବ। ୧୯୬୧ ମସିହାରେ ସେତେବେଳର ବହୁଳ ପ୍ରସାରିତ ଓ ନିରପେକ୍ଷ ସମ୍ବାଦ ପରିବେଷଣ ଯୋଗୁଁ ଖ୍ୟାତି ଲାଭ କରିଥିବା କଟକରୁ ପ୍ରକାଶିତ 'ମାତୃଭୂମି' ଖବରକାଗଜରେ ଷ୍ଟାଫ୍ ରିପୋର୍ଟର ଭାବେ ସେ ଯୋଗ ଦେଇଥିଲେ। କଟକରୁ ସେ ସମୟରେ ଅନ୍ୟ ଦୁଇଟି ପ୍ରମୁଖ ଖବରକାଗଜ 'ସମାଜ' ଓ 'ପ୍ରଜାତନ୍ତ୍ର' ପ୍ରକାଶ ପାଉଥିଲା। ସବୁ ଖବରକାଗଜଗୁଡ଼ିକ ମଧ୍ୟରେ ତାଜା ଖବର ପ୍ରକାଶ କରିବାକୁ

ପ୍ରତିଦ୍ୱନ୍ଦ୍ୱିତା ଲାଗି ରହିଥିଲା। ବରେନ୍ଦ୍ରବାବୁ ମାତୃଭୂମିର ଷ୍ଟାଫ୍ ରିପୋର୍ଟର ଭାବେ କାର୍ଯ୍ୟ କରିବା ପରେ ସେ କାଗଜର କାଟତି ଢେର ବଢ଼ିଯାଇଥିଲା। ମୁଁ ୧୯୬୦ ମସିହା ଅଗଷ୍ଟ ମାସରୁ ଷ୍ଟୁଆର୍ଟ୍ ସାଇନ୍ସ କଲେଜରେ ଅଧ୍ୟାପକ ଭାବେ ଯୋଗ ଦେଇଥିଲି। କ୍ରୀଡ଼ା କ୍ଷେତ୍ରରେ ମୁଁ ବିଶେଷ ରୁଚି ରଖୁଥିବାରୁ ଅଧିକାଂଶ ଦିନ କଲେଜ ସରିବା ପରେ ମୁଁ ଓ ଅନ୍ୟ ଜଣେ ସିନିଅର ପ୍ରଫେସର ଏନ୍.ବି. ବାନାର୍ଜୀ ସାଙ୍ଗହୋଇ ବାରବାଟୀ ଷ୍ଟାଡିୟମକୁ ଯାଉଥିଲୁ। ୧୯୬୧ ମସିହା ଡିସେମ୍ବର ମାସରେ ଆନ୍ତଃ ମହାବିଦ୍ୟାଳୟ ଦୌଡ଼କୁଦ ପ୍ରତିଯୋଗିତା ବାରବାଟୀ ଷ୍ଟାଡିୟମରେ ଅନୁଷ୍ଠିତ ହେଉଥିବାବେଳେ ସେହିଠାରେ ମୋର ପ୍ରଥମ ପରିଚୟ ହୋଇଥିଲା ବରେନ୍ଦ୍ରବାବୁଙ୍କ ସହିତ। ମାତୃଭୂମିର ସେ କ୍ରୀଡ଼ା ରିପୋର୍ଟର ଥିଲେ। ଫୁଟବଲ ମ୍ୟାଚଗୁଡ଼ିକୁ ଏଭଳି ସୁନ୍ଦର ଭାବରେ ତାଙ୍କ ଖବରକାଗଜରେ ପରିବେଷଣ କରୁଥିଲେ ଯେ ତାହା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା। ଥରେ ମୁଁ ତାଙ୍କୁ ପଚାରିଲି, 'ଆପଣ କିଭଳି ସବୁ ଖେଳ ବିଶେଷ କରି ଫୁଟବଲ ମ୍ୟାଚଗୁଡ଼ିକୁ ଏଭଳି ନିଖୁଣ ଭାବରେ ଉପସ୍ଥାପନ କରୁଛନ୍ତି।' ତାଙ୍କଠାରୁ ଜାଣିଲି ଯେ ସେ ବାଙ୍କୀର ବରେନ୍ଦ୍ରକୃଷ୍ଣ ବିଦ୍ୟାପୀଠରେ ପଢ଼ିଲାବେଳେ ସ୍କୁଲ ଫୁଟବଲ ଟିମ୍‌ର କ୍ୟାପଟେନ୍ ଥିଲେ ଓ କଟକ ଜିଲ୍ଲାର ବିଭିନ୍ନ ଟୁର୍ଣ୍ଣାମେଣ୍ଟରେ ଯୋଗ ଦେଉଥିଲେ ଏବଂ ସ୍କୁଲ କ୍ରିକେଟ ଟିମ୍‌ର ଜଣେ ସଦସ୍ୟ ଥିଲେ। ୧୯୬୧ ମସିହା ଡିସେମ୍ବର ମାସଠାରୁ ବରେନ୍ଦ୍ରବାବୁଙ୍କ ସହ ମୋର ବନ୍ଧୁତା ଧୀରେ ଧୀରେ ନିବିଡ଼ ହୋଇଥିଲା। ସେ ଜଣେ ସ୍ନେହୀ, ବନ୍ଧୁବତ୍ସଳ ଓ ପରୋପକାରୀ ବ୍ୟକ୍ତି ଭାବେ ସମସ୍ତଙ୍କ ପାଖରେ ପରିଚିତ; କିନ୍ତୁ ମୋତେ ବିପଦ ସମୟରେ ବ୍ୟକ୍ତିଗତ ଭାବେ ସେ ଯେଉଁ ସହାୟତା କରିଛନ୍ତି ତାହା ଅବର୍ଣ୍ଣନୀୟ। ତାଙ୍କ ପରିବାର ଓ ଆମ ପରିବାର ମଧ୍ୟରେ ଏକ ଅତୁଟ ସମ୍ବନ୍ଧ ରହିଛି।

କଟକରେ ସାମ୍ବାଦିକତା କରୁଥିବାବେଳେ ସେ ସାହିତ୍ୟ, ସଂସ୍କୃତି, ନୃତ୍ୟ, ସଂଗୀତ ଓ ନାଟକ ସମ୍ବନ୍ଧରେ ମଧ୍ୟ ମାତୃଭୂମିର ରବିବାର ପତ୍ରିକାରେ ଆଲେଖ୍ୟମାନ ପ୍ରକାଶ କରୁଥିଲେ। ପରେ ଜାଣିବାକୁ ପାଇଲି ଯେ ସେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ କଟକସ୍ଥିତ ଜଗନ୍ନାଥବଲ୍ଲଭ ଘରେ ବହୁଦିନ ଧରି ରହୁଥିଲେ। କାଳୀଚରଣ ପଟ୍ଟନାୟକଙ୍କ ସହ ବରେନ୍ଦ୍ରବାବୁଙ୍କର ପାରିବାରିକ ସମ୍ପର୍କ ଥିଲା। ବରେନ୍ଦ୍ରବାବୁ ଜଣେ ଜିଜ୍ଞାସୁ ବ୍ୟକ୍ତି ହୋଇଥିବାରୁ ସେ କାଳୀବାବୁଙ୍କ ପାଖରୁ ସଂସ୍କୃତି ବିଷୟରେ ବହୁ ଅଜଣାକଥା ଜାଣିବାକୁ ସକ୍ଷମ ହୋଇଥିଲେ।

ବରେନ୍ଦ୍ରବାବୁ ଜଣେ ନିର୍ଭୀକ ବ୍ୟକ୍ତି ହୋଇଥିବାରୁ ସେ କ୍ଷମତାରେ ଥିବା ଉଚ୍ଚପଦାଧିକାରୀ କିମ୍ବା ଯେକୌଣସି ରାଜନେତାଙ୍କୁ ଭେଟି ସମ୍ବାଦ ସଂଗ୍ରହ କଲାବେଳେ ସଂକୋଚ କରୁନଥିଲେ। ଡକ୍ଟର ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ, ବୀରେନ ମିତ୍ର, ନୀଳମଣି ରାଉତରାୟ, ସତ୍ୟପ୍ରିୟ ମହାନ୍ତି, ସୁରେନ୍ଦ୍ରନାଥ ଦ୍ୱିବେଦୀ, ବାଙ୍କବିହାରୀ ଦାସଙ୍କ ଭଳି ଅନେକ ରାଜନେତାଙ୍କ ସହ ତାଙ୍କର ବ୍ୟକ୍ତିଗତ ପରିଚୟ ଥିଲା। ଓଡ଼ିଶାର ସବୁ ରାଜନେତା ତାଙ୍କର ସତ୍ୟବାଦିତା ଓ ନିଷ୍କପଟ ବ୍ୟବହାର ପାଇଁ ତାଙ୍କୁ ଶ୍ରଦ୍ଧା କରୁଥିଲେ।

ସ୍ତମ୍ଭକାର ଭାବରେ ତାଙ୍କର ସୁଖ୍ୟାତି ଓଡ଼ିଶାର ଚତୁର୍ଦ୍ଦିଗରେ ବ୍ୟାପ୍ତ। ଦୀର୍ଘବର୍ଷଧରି ଖବରକାଗଜରେ 'ମୁକ୍ତବିଚାର' ଓ 'ଖୋଲାବିଚାର' ନାମରେ ଦୁଇଟି ସ୍ତମ୍ଭ ମାଧ୍ୟମରେ ରାଜ୍ୟ ରାଜନୀତି ଓ ସାମାଜିକ ଘଟଣାବଳିର ତୀକ୍ଷ୍ଣ ବିଶ୍ଳେଷଣ ତାଙ୍କ ସାମ୍ବାଦିକତା ଜୀବନରେ ବହୁ ସଫଳତା ଆଣି ଦେଇଛି। ଏହି ସ୍ତମ୍ଭ ଦୁଇଟି ଏତେ ଜନପ୍ରିୟ ଯେ ସାଧାରଣ ପାଠକ ବରେନ୍ଦ୍ରକୃଷ୍ଣବାବୁଙ୍କୁ 'ମୁକ୍ତବିଚାର' ଓ 'ଖୋଲାବିଚାର' ସ୍ତମ୍ଭର ଲେଖକ ଭାବେ ସମ୍ମାନ କରନ୍ତି। ଏହି ସ୍ତମ୍ଭକୁ ଡକ୍ଟର ହରେକୃଷ୍ଣ ମହତାବଙ୍କର 'ଗାଁ ମଜଲିସ' ଓ ଡକ୍ଟର ରାଧାନାଥ ରଥଙ୍କର 'ଝିଟିପିଟି କହେ' ସ୍ତମ୍ଭ ସହିତ ତୁଳନୀୟ କହିଲେ ଅତ୍ୟୁକ୍ତି ହେବନାହିଁ।

ବରେନ୍ଦ୍ରବାବୁ ଜଣେ ଦକ୍ଷ ସଂଗଠକ ଭାବେ ସୁପରିଚିତ। ଭୁବନେଶ୍ୱର ପୁସ୍ତକ ମେଳାର ସେ ପ୍ରତିଷ୍ଠାତା। ଗତ ୩୩ବର୍ଷ ଧରି ଭୁବନେଶ୍ୱରରେ ସେ ଯେଉଁ ପୁସ୍ତକ ମେଳାର ଆୟୋଜନ କରିଥିଲେ, ତାହା ଭାରତ ଓ ଭାରତ ବାହାରେ ଆଦୃତି ଲାଭ କରିଛି। ତାଙ୍କ ପଦାଙ୍କ ଅନୁସରଣ କରି ଓଡ଼ିଶାର ସମସ୍ତ ଜିଲ୍ଲାରେ, ଉପଖଣ୍ଡମାନଙ୍କରେ ପ୍ରତିବର୍ଷ ପୁସ୍ତକ ମେଳାମାନ ଆୟୋଜନ କରାଯାଉଛି। ପୁସ୍ତକ ମେଳା ପ୍ରତି ସାଧାରଣଲୋକଙ୍କ ଆଦୃତି ସୃଷ୍ଟି କରିବାରେ ତାଙ୍କର ଅବଦାନ ଅତୁଳନୀୟ। 'ଓଡ଼ିଶା ଲେଖକ ସାମ୍ମୁଖ୍ୟ' ନାମକ ଏକ ସାହିତ୍ୟ ଅନୁଷ୍ଠାନ ପ୍ରତିଷ୍ଠା କରି ସାହିତ୍ୟିକମାନଙ୍କ ମଧ୍ୟରେ ଭାବବିନିମୟ କରିବାର ସେ ଏକ ସୁଯୋଗ ସୃଷ୍ଟି କରିଛନ୍ତି। ଏହାଛଡା ସେ 'ଓଡ଼ିଶା ଲେଖକ ସମବାୟ ସମିତି ଲିଃ'ର ଅନ୍ୟତମ ପ୍ରତିଷ୍ଠାତା। ଜଣେ କ୍ରୀଡ଼ା ସଂଗଠକ ଭାବେ ଓଡ଼ିଆ କ୍ରୀଡ଼ା ଜଗତରେ ସେ ସୁପରିଚିତ। ମାର୍ଶାଲ ଆର୍ଟର ପ୍ରଶିକ୍ଷଣ ଓଡ଼ିଶାରେ ସେ ପ୍ରଥମେ ପ୍ରବର୍ତ୍ତନ କରିଥିଲେ। ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟରେ ଛାତ୍ର କଲ୍ୟାଣ ବିଭାଗର ମୁଁ 'ଡିନ୍' ଥିଲାବେଳେ ସେ ତାମିଲନାଡୁରୁ ପ୍ରସିଦ୍ଧ କରାଟେ

ପ୍ରଶିକ୍ଷକ କଳାମଣିଙ୍କୁ ଆମନ୍ତ୍ରିତ କରି ଭୁବନେଶ୍ୱରର ଛାତ୍ରଛାତ୍ରୀମାନଙ୍କୁ ଆତ୍ମରକ୍ଷାର କଳାକୌଶଳ ପ୍ରଶିକ୍ଷଣର ଆୟୋଜନ କରିଥିଲେ। ଆମ ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀ ମଧ୍ୟ ଏହି ପ୍ରଶିକ୍ଷଣର ସୁଯୋଗ ନେଇଥିଲେ। ମାର୍ଶାଲ ଆର୍ଟ ଟ୍ରେନର୍ ତଥା ଉତ୍କଳ କରାଟେ ସ୍କୁଲର ପ୍ରତିଷ୍ଠାତା ଡକ୍ଟର ହରି ପଟ୍ଟନାୟକ (କାଟ) ସେ ସମୟରେ ମାର୍ଶାଲ ଆର୍ଟର ଉଚ୍ଚତର ତାଲିମ ଗ୍ରହଣ କରି ନିଜକୁ ଅନ୍ତର୍ଜାତୀୟ ସ୍ତରରେ ପ୍ରତିଷ୍ଠିତ କରିପାରିଥିଲେ।

ସମାଜସେବୀ ଭାବେ ବରେନ୍ଦ୍ରବାବୁ ଅଦ୍ୱିତୀୟ। ବାଙ୍କୀ ଭୂଖଣ୍ଡର ଲୋକମାନଙ୍କର କିଛି ଅସୁବିଧା ହେଲେ ସେମାନେ ବରେନ୍ଦ୍ରବାବୁଙ୍କ ଦୁଆରମୁହଁକୁ ଆସନ୍ତି। ତାହା ମୁଁ ବ୍ୟକ୍ତିଗତ ଭାବେ ଦେଖିଛି। ବାଙ୍କୀର ବିଧାୟକ ଡକ୍ଟର ଯୋଗେଶ ଚନ୍ଦ୍ର ରାଉତ, ତାଙ୍କ ପୂର୍ବରୁ ବିଧାୟକ ଥିବା ଗୋକୁଳାନନ୍ଦ ପ୍ରହରାଜ ଓ ଶ୍ୟାମସୁନ୍ଦର ସାହୁଙ୍କ ଭଳି ଜନପ୍ରିୟ ନେତାମାନେ କିଛି ଅସୁବିଧା ହେଲେ ପରାମର୍ଶ ପାଇଁ ଦୌଡ଼ି ଆସନ୍ତି ବରେନ୍ଦ୍ରବାବୁଙ୍କ ପାଖକୁ। ବିନାଦ୍ୱିଧାରେ, ବିନାସ୍ୱାର୍ଥରେ ସେ ସମସ୍ତଙ୍କୁ ସାହାଯ୍ୟ କରନ୍ତି। ଅନେକ ମୁଖ୍ୟମନ୍ତ୍ରୀ, ଦଳୀୟ ନେତା ବରେନ୍ଦ୍ରବାବୁଙ୍କୁ ବାଙ୍କୀ ବିଧାନସଭା ଆସନରୁ ପ୍ରାର୍ଥୀ ହେବାକୁ ପ୍ରରୋଚିତ କରିଥିଲେ; କିନ୍ତୁ ସେ ବିନମ୍ରତାର ସହିତ ପ୍ରତ୍ୟକ୍ଷ ରାଜନୀତି ସହ ସଂଶ୍ଳିଷ୍ଟ ହେବାକୁ ମନା କରି ଦେଇଥିଲେ।

୧୯୭୧ ଜୁନ୍ ୨୭ ତାରିଖରେ ତାଙ୍କର ବିବାହ ହୋଇଥିଲା। ଜାନୁଆରୀ ୨୦୧୬ରେ ତାଙ୍କ ସ୍ତ୍ରୀଙ୍କ ମୃତ୍ୟୁ ପରେ ସେ ଧୈର୍ଯ୍ୟହରା ହୋଇ ପଡ଼ିଥିଲେ; କିନ୍ତୁ ପୁଅ ଲକୁ ଓ ବୋହୂ ରିକିର ସେବାଯତ୍ନ ଏବଂ ନାତି ଶିବେନ୍‌ର ଜେଜେ ଜେଜେ ଡ଼ାକ ଶୁଣି ପୁଣି ଲେଖାଲେଖିରେ ମନୋନିବେଶ କରିଥିଲେ। କିନ୍ତୁ ଅଚାନକ ପରିବାରର ସଦସ୍ୟବୃନ୍ଦ, ବନ୍ଧୁ ବିରାଦର, ଅଗଣିତ ଶୁଭେଚ୍ଛୁଙ୍କୁ ଶୋକ ସାଗରରେ ଭସାଇ ଦେଇ ୨୦୧୬ ଅଗଷ୍ଟ ୯ ତାରିଖରେ ହୃଦଘାତର ଶିକାର ହୋଇ ଇହଲୀଳା ସମ୍ବରଣ କଲେ। ତାଙ୍କ ଦେହାନ୍ତ ଓଡ଼ିଶା ପାଇଁ ଏକ ଅତୁଳନୀୟ କ୍ଷତି। ସାର୍ଥକଜନ୍ମା, ପ୍ରଜ୍ଞାବାନ୍, କର୍ମବୀର, ପରୋପକାରୀ, ଜାତିପ୍ରାଣ ବରେନ୍ଦ୍ରବାବୁଙ୍କ ପ୍ରତି ମୋର ଓ ମୋ ପରିବାରର ସଦସ୍ୟବୃନ୍ଦଙ୍କର ଶ୍ରଦ୍ଧା ସମ୍ମାନ ରହିଥିଲା ଓ ରହିଥିବ।

# ଭାରତର ବିପର୍ଯ୍ୟସ୍ତ ଗଣତନ୍ତ୍ର

ମେ’ ମାସ ୨୮ ତାରିଖରେ ଭୁବନେଶ୍ୱରରେ ଏକ ସମ୍ବାଦପତ୍ର ଦ୍ୱାରା ଆୟୋଜିତ ସଭାରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଆମ ରାଜ୍ୟର ବରିଷ୍ଠ ମନ୍ତ୍ରୀ ଡାକ୍ତର ଦାମୋଦର ରାଉତ ପ୍ରସଙ୍ଗକ୍ରମେ କହିଥିଲେ ଯେ, ଭାରତୀୟ ସମ୍ବିଧାନରେ ୩ଟି ସ୍ତମ୍ଭ ରହିଛି । ସେଥିମଧ୍ୟରୁ ୨ଟି ସ୍ତମ୍ଭ ବ୍ୟବସ୍ଥାପକ ଓ କାର୍ଯ୍ୟନିର୍ବାହୀ ଲୋକଙ୍କର ଅନାସ୍ଥାଭାଜନ ହୋଇଛି ଓ ଅନ୍ୟ ଏକ ସ୍ତମ୍ଭ ନ୍ୟାୟିକ ବ୍ୟବସ୍ଥା ମଧ୍ୟ ସନ୍ଦେହର ପରିସରଭୁକ୍ତ ହେବାରେ ଲାଗିଛି, ତେଣୁ ଗଣତନ୍ତ୍ରକୁ ସଠିକ୍ ଭାବରେ ପରିଚାଳନା କରିବାରେ ସାଧାରଣ ଲୋକେ ୪ର୍ଥ ସ୍ତମ୍ଭ ରୂପେ ବିବେଚନା କରୁଥିବା ସମ୍ବାଦପତ୍ର ତଥା ଗଣମାଧ୍ୟମର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, କିନ୍ତୁ ସମ୍ବାଦପତ୍ର ଓ ଗଣମାଧ୍ୟମ ସେମାନଙ୍କର ନିର୍ଭୀକ ଓ ନିରପେକ୍ଷ ମତପ୍ରଦାନ ପାଇଁ ଆବଶ୍ୟକ ସୁବିଧାସୁଯୋଗ ପାଇବା ଏକାନ୍ତ ଆବଶ୍ୟକ । ଗ୍ରୀକ୍ ଦାର୍ଶନିକ ପ୍ଲେଟୋଙ୍କ ମତରେ ଗଣତନ୍ତ୍ର ଶାସନ ଉନ୍ନତମାନର ଲୋକଚରିତ୍ର ଉପରେ ତିଷ୍ଠି ରହେ । ଏହାର ଅଭାବରେ ଗଣତନ୍ତ୍ର ଶାସନ ବିଫଳ ହୁଏ । ଅନ୍ୟତମ ଦାର୍ଶନିକ ଆରିଷ୍ଟୋଟଲଙ୍କ ମତରେ ଗଣତନ୍ତ୍ରରେ ପ୍ରଚଳିତ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା ଦ୍ୱାରା ସାଧାରଣ ଲୋକଙ୍କର କିଛି ଉପକାର ହୁଏନାହିଁ ।

ଭାରତର ଗଣତନ୍ତ୍ର ବର୍ତ୍ତମାନ ଏକ ବିଚିତ୍ର ସ୍ଥିତିରେ ଗତି କରୁଛି । ସର୍ବଭାରତୀୟ ଦଳଗୁଡ଼ିକର ଲୋକପ୍ରିୟତା କ୍ରମେ କ୍ରମେ ହ୍ରାସ ପାଉଛି । ୨୦୧୪ ନିର୍ବାଚନରେ କେନ୍ଦ୍ରରେ ସରକାର ଗଢ଼ିବାକୁ ଦେଶବାସୀ ଭାରତୀୟ ଜନତା ପାର୍ଟିକୁ ଏକକ ସଂଖ୍ୟାଗରିଷ୍ଠତାର ମର୍ଯ୍ୟାଦା ଦେଇଛନ୍ତି; କିନ୍ତୁ ଅନେକ ରାଜ୍ୟରେ ଆଞ୍ଚଳିକ ଦଳମାନ ଗଠିତ ହୋଇ ସେମାନେ ଶାସନ କ୍ଷମତାକୁ ଅକ୍ତିଆର କରିଛନ୍ତି । ସେସବୁ ଦଳଗୁଡ଼ିକ ବ୍ୟକ୍ତିବାଦୀ ରାଜନୀତିରେ ବିଶ୍ୱାସ ସ୍ଥାପନ କରିଛନ୍ତି । ଜଣେଜଣେ ବ୍ୟକ୍ତି ଦଳର ସର୍ବେସର୍ବା ହୋଇ ସଭାପତି ଓ ମୁଖ୍ୟମନ୍ତ୍ରୀ ଭାବେ ରାଜ୍ୟଗୁଡ଼ିକରେ ଏକଛତ୍ରବାଦୀ ଶାସନ ଚଳାଉଛନ୍ତି । ଜଣେ ବ୍ୟକ୍ତିଙ୍କ ହାତରେ ସବୁ କ୍ଷମତା ଠୁଳ ହୋଇ ରହୁଥିବାରୁ ସେ ସ୍ୱେଚ୍ଛାଚାରୀ ହୋଇଯାଉଛନ୍ତି । ଏଠାରେ ମାୟାବତୀ ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀ ଥିବାବେଳର ଏକ ଉଦାହରଣ ଦେବା ସମୀଚୀନ ହେବ । ସେ ଉତ୍ତରପ୍ରଦେଶର

ବିଭିନ୍ନ ସ୍ଥାନରେ ନିଜର ପ୍ରତିମୂର୍ତ୍ତି ସ୍ଥାପନ ନିମନ୍ତେ ରାଜ୍ୟ ତହବିଲରୁ ଦୁଇ ହଜାର କୋଟି ଟଙ୍କା ଖର୍ଚ୍ଚ କରିଛନ୍ତି; କିନ୍ତୁ ତାଙ୍କର ଏହି ଅଯୌକ୍ତିକ କାର୍ଯ୍ୟକୁ ବହୁଜନ ସମାଜ ପାର୍ଟିର କେହି ଜଣେ ହେଲେ ପ୍ରତିବାଦ କରିନାହାନ୍ତି। ରାଜ୍ୟର ପ୍ରଶାସକମାନେ ମାୟାବତୀଙ୍କର ଏଭଳି ନିଷ୍ପତ୍ତିକୁ ମୁଣ୍ଡ ନୁଆଁଇ କାର୍ଯ୍ୟକାରୀ କଲେ। ସୁପ୍ରିମକୋର୍ଟ ମଧ୍ୟ ଏହି ଘଟଣାରେ ହସ୍ତକ୍ଷେପ କରିବାକୁ ମନା କରିଦେଲେ। ସେହିଭଳି ଆନାଡି.ଏମ୍.କେ. ଦଳର ସର୍ବମୟ କର୍ତ୍ତ୍ରୀ ହେଲେ ଜୟଲଳିତା। ତାଙ୍କ ସମ୍ମତି ବିନା ଦଳ କିମ୍ବା ସରକାରରେ କୌଣସି କାର୍ଯ୍ୟ ହୋଇପାରେ ନାହିଁ। ପୂର୍ବତନ ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହଙ୍କ ମନ୍ତବ୍ୟ ଏଠାରେ ପ୍ରଣିଧାନ ଯୋଗ୍ୟ। ସେ ଜାନୁଆରୀ ୨୫, ୨୦୧୦ରେ ନିର୍ବାଚନ କମିଶନ ସଂସ୍ଥାର ହୀରକ ଜୟନ୍ତୀ ଉତ୍ସବରେ କହିଥିଲେ ଯେ, ଲୋକସଭା ଓ ବିଧାନସଭାରେ ଥିବା ବହୁ ପ୍ରତିନିଧିମାନଙ୍କର ଅପରାଧ ପୃଷ୍ଠଭୂମି ଥିବାରୁ ସେମାନେ ଆଉ ଲୋକମାନଙ୍କର ଆସ୍ଥାଭାଜନ ହୋଇପାରୁନାହାନ୍ତି। ୟୁପିଏ ଅଧ୍ୟକ୍ଷା ସୋନିଆ ଗାନ୍ଧୀ ଅପରାଧୀମାନଙ୍କୁ ନିର୍ବାଚନରୁ ଦୂରରେ ରଖିବା ଏକ ଅସାଧ୍ୟ କାର୍ଯ୍ୟ ବୋଲି ମତବ୍ୟକ୍ତ କରିଥିଲେ। ଜାମ୍ମୁ-କାଶ୍ମୀରର ପୂର୍ବତନ ମୁଖ୍ୟମନ୍ତ୍ରୀ ଓମାର ଅବଦୁଲ୍ଲା ୨୦୧୦ ମସିହା ଅକ୍ଟୋବର ମାସରେ ଏକ ସାକ୍ଷାତକାରରେ କହିଥିଲେ ଯେ, ତାଙ୍କ ରାଜ୍ୟର ପୂର୍ବତନ ଓ ତାଙ୍କ ସମୟର ୬୦୦ ଜଣ ମନ୍ତ୍ରୀ ଓ ପ୍ରଶାସକ ଚରମ ଦୁର୍ନୀତିଗ୍ରସ୍ତ। ଅବସରପ୍ରାପ୍ତ ସେଣ୍ଟ୍ରାଲ୍ ଭିଜିଲାନ୍ସ କମିଶନର ପ୍ରତ୍ୟୁଷ ସିହ୍ନା ମଧ୍ୟ ଏକ ବିବୃତିରେ କହିଥିଲେ ଯେ ଭାରତର ଏକ-ତୃତୀୟାଂଶ ଜନସାଧାରଣ ଦୁର୍ନୀତିଗ୍ରସ୍ତ।

ରାଜନୈତିକ ବ୍ୟକ୍ତିମାନଙ୍କ କଳାଟଙ୍କାକୁ ଧଳା କରିଥିବା ଅଭିଯୋଗର ତଦନ୍ତ ପାଇଁ ଗଠିତ ଏସ୍.ଏନ୍. ଭୋରା କମିଟି ୫ ଅକ୍ଟୋବର ୧୯୯୩ ମସିହାରେ ଦର୍ଶାଇଥିଲେ ଯେ ରାଜନୈତିକ ବ୍ୟକ୍ତି, ବ୍ୟୁରୋକ୍ରାଟ ଓ ମାଫିଆମାନଙ୍କ ମଧ୍ୟରେ ଗଭୀର ସଂପର୍କ ରହିଛି ଏବଂ ସେମାନେ ଏକ ସମାନ୍ତରାଳ ସରକାର ଚଳାଇଛନ୍ତି। ୧୮ ଡିସେମ୍ବର ୧୯୯୭ରେ ସୁପ୍ରିମକୋର୍ଟ ବିନୀତ ନାରାୟଣ ମକଦ୍ଦମାରେ ଭୋରା କମିଟିର ରିପୋର୍ଟ ସହିତ ଏକମତ ହୋଇଥିଲେ। ଭାରତବର୍ଷରେ ସବୁ ରାଜନୈତିକ ଦଳରେ ଅପରାଧୀମାନେ ଅଛନ୍ତି। ୨୦୧୩ ମସିହାର ଏକ ଆକଳନରୁ ଜଣାପଡିଥିଲା ଯେ, ଲୋକସଭାର ୫୪୩ ସଦସ୍ୟଙ୍କ ମଧ୍ୟରୁ ୧୬୨ ଜଣଙ୍କ ନାମରେ ଫୌଜଦାରୀ ମକଦ୍ଦମାମାନ ରହିଛି ଏବଂ ବିଭିନ୍ନ ବିଧାନସଭାର ୪୦୩୨ ବିଧାୟକଙ୍କ ମଧ୍ୟରୁ ୧୨୫୮ ଜଣ ବିଧାୟକ ଅପରାଧୀ ତାଲିକାଭୁକ୍ତ। ପୂର୍ବତନ ମୁଖ୍ୟ ନିର୍ବାଚନ କମିଶନର

ଜେ.ଏମ୍. ଲିଙ୍ଗଡୋ ସୁପ୍ରିମକୋର୍ଟରେ ଏକ ପିଆଇଏଲ ଦାଖଲ କରି ପ୍ରାର୍ଥନା କରିଥିଲେ ଯେ ସଂସଦ କିମ୍ୱା ବିଧାନସଭାର ସଦସ୍ୟମାନଙ୍କ ବିରୋଧରେ ଫୌଜଦାରୀ ମକଦ୍ଦମାଗୁଡ଼ିକ ଫାଷ୍ଟଟ୍ରାକ୍ କୋର୍ଟରେ ବିଚାର ହେବା ଉଚିତ୍। ସୁପ୍ରିମକୋର୍ଟ ଏହା ଉପରେ ଉଦ୍‌ବେଗ ପ୍ରକାଶ କରି କହିଥିଲେ ଯେ, ଏହି ମକଦ୍ଦମାଗୁଡ଼ିକ ତୁରନ୍ତ ବିଚାର କରିବାର ଆବଶ୍ୟକତା ରହିଛି। ସଂସଦ ଓ ରାଜ୍ୟ ବିଧାନସଭାର ଏହି ସଦସ୍ୟମାନେ ଦେଶର ସାମାଜିକ, ରାଜନୈତିକ ବ୍ୟବସ୍ଥାକୁ କଳୁଷିତ କରି ସମଗ୍ର ଦେଶରେ ଗଣତନ୍ତ୍ରକୁ ଦୁର୍ବଳ କରିଦେଉଛନ୍ତି। ସୁପ୍ରିମକୋର୍ଟରେ ଅନ୍ୟ ଏକ ରିଟ୍ ପିଟିସନ୍ ଯାହାକି ଆଡ଼ଭୋକେଟ୍ ଲିଲି ଥୋମାସ ଓ ଲକ୍ଷ୍ନୌର ଲୋକପ୍ରହରୀ ପ୍ରତିଷ୍ଠାନର ସାଧାରଣ ସମ୍ପାଦକ ଏସ୍.ଏନ୍. ଶୁକ୍ଲାଙ୍କ ଦ୍ୱାରା ଦାଏର ହୋଇଥିଲା। ତା' ଉପରେ ବିଚାର କରି ୧୦ ଜୁଲାଇ ୨୦୧୩ରେ ସୁପ୍ରିମକୋର୍ଟର ଏକ ଡିଭିଜନ ବେଞ୍ଚର ବରିଷ୍ଠ ବିଚାରପତି ଅନଙ୍ଗ କୁମାର ପଟ୍ଟନାୟକ ଓ ଅନ୍ୟତମ ବିଚାରପତି ଏସ୍.କେ ମୁଖୋପାଧ୍ୟାୟ ଯେଉଁ ସଦସ୍ୟମାନେ ଦୋଷୀସାବ୍ୟସ୍ତ ହେଉଛନ୍ତି, ସେମାନଙ୍କ ସଭ୍ୟପଦକୁ ସଙ୍ଗେସଙ୍ଗେ ରଦ୍ଦ କରାଯାଉ ବୋଲି ଏକ ଯୁଗାନ୍ତକାରୀ ରାୟ ପ୍ରଦାନ କରିଥିଲେ ଏବଂ ଜେଲରେ ଥିବା କୌଣସି ବ୍ୟକ୍ତି ଲୋକପ୍ରତିନିଧି ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିପାରିବ ନାହିଁ ବୋଲି ଉଲ୍ଲେଖ କରିଥିଲେ। ଏହି ରାୟ ଦ୍ୱାରା ଦେଶର ଦାଗୀ ରାଜନେତାଙ୍କ ଉପରେ କିଛିଟା ଲଗାମ ଲାଗିଛି।

ହଂକଂର ପଲିଟିକାଲ ଏବଂ ଇକୋନୋମିକ ରିସ୍କ କନସଲଟାନ୍ସି ଏସିଆ ମହାଦେଶର ବିଭିନ୍ନ ରାଷ୍ଟ୍ରର ସାମାଜିକ, ରାଜନୈତିକ ଓ ପ୍ରଶାସନିକ ବ୍ୟବସ୍ଥାର ସ୍ଥିତି ସମ୍ପର୍କରେ ତଥ୍ୟ ସମ୍ବଳିତ ରିପୋର୍ଟ ପ୍ରକାଶ କରିଥାନ୍ତି। ୨୦୧୨ ମସିହା ରିପୋର୍ଟରେ ଭାରତୀୟ ପ୍ରଶାସନ ସବୁଠାରୁ ଦୁର୍ନୀତିଗ୍ରସ୍ତ ବୋଲି ଉଲ୍ଲେଖ ରହିଛି। ସିଙ୍ଗାପୁର ପ୍ରଶାସନ ସବୁଠାରୁ ସ୍ୱଚ୍ଛ ବୋଲି ବିବେଚିତ ହୋଇଛି। ପ୍ରଶାସକମାନେ ଦେଶର ଦୁର୍ନୀତିର କେନ୍ଦ୍ରବିନ୍ଦୁ ଭାବରେ ବିବେଚିତ ହେଉଛନ୍ତି। ଅବସରପ୍ରାପ୍ତ କେନ୍ଦ୍ରୀୟ ଭିଜିଲାନ୍ସ କମିଶନର ଏନ୍. ଭିଟ୍ଟଲଙ୍କର ୨୦୧୨ ମସିହାରେ ପ୍ରକାଶିତ ପୁସ୍ତକ 'ଏଣ୍ଡିଂ କରପ୍‌ସନ୍? ହାଓ ଟୁ କ୍ଲିନ୍ ଅପ୍ ଇଣ୍ଡିଆ'ରେ ସେ ଦେଶର ଦୁର୍ନୀତି ବ୍ୟାପିବାରେ ପ୍ରଶାସକମାନଙ୍କର ପ୍ରମୁଖ ଭୂମିକା ରହିଛି ବୋଲି ଉଲ୍ଲେଖ କରିଛନ୍ତି। ଉତ୍ତରପ୍ରଦେଶର ଦୁଇଜଣ ପୂର୍ବତନ ମୁଖ୍ୟ ଶାସନ ସଚିବ ଅଖଣ୍ଡ ପ୍ରତାପ ସିଂହ ଓ ନୀରା ଯାଦବ ଚରମ ଦୁର୍ନୀତିଗ୍ରସ୍ତ ହୋଇଥିବାରୁ ସୁପ୍ରିମକୋର୍ଟ ଦ୍ୱାରା ଦଣ୍ଡିତ ହୋଇଛନ୍ତି। ମହାରାଷ୍ଟ୍ରର ଅତିରିକ୍ତ ମୁଖ୍ୟ

ଶାସନ ସଚିବ ଡକ୍ଟର ଯଶରାଜ ଫଟକ ଆଦର୍ଶ ହାଉସିଂ ସ୍କାମ ଦୁର୍ନୀତି ଓ ଅନ୍ୟଜଣେ ବରିଷ୍ଠ ଆଇଏଏସ୍ ନୀତିଶ ଜନାର୍ଦ୍ଦନ ଠାକୁର ୧୧୮ କୋଟି ଟଙ୍କାର ଆୟ ବହିର୍ଭୂତ ସମ୍ପତ୍ତି ଠୁଳ କରିଥିବା ଅଭିଯୋଗରେ ଗିରଫ ହୋଇ ଜେଲ ଯାଇଥିଲେ । ମଧ୍ୟପ୍ରଦେଶର ଆଇଏଏସ୍ ଦମ୍ପତି ଅରବିନ୍ଦ ଯୋଶୀ ଓ ତାଙ୍କ ଧର୍ମପତ୍ନୀ ଟିନୁଙ୍କର ୩୫୦ କୋଟି ଟଙ୍କାର ସମ୍ପତ୍ତି ଏନ୍‌ଫୋର୍ସମେଣ୍ଟ ଡାଇରେକ୍ଟୋରେଟ ଦ୍ୱାରା ଜବତ ହୋଇଛି ଓ ଦୁହେଁ ଜେଲ୍‌ରେ ଅଛନ୍ତି । ଭାରତ ସରକାରଙ୍କ ଡିପାର୍ଟମେଣ୍ଟ ଅଫ୍ ପର୍ସୋନାଲ ଆଣ୍ଡ ଟ୍ରେନିଂ ସୂତ୍ରରୁ ପ୍ରକାଶ ପାଇଥିଲା ଯେ, ଦେଶର ବିଭିନ୍ନ ରାଜ୍ୟର ୩୧ ଜଣ ଆଇଏଏସ୍ ଅଫିସରଙ୍କୁ ଦୁର୍ନୀତି ଅଭିଯୋଗରେ ନିଲମ୍ବିତ କରାଯାଇଛି । ତଥାପି ଆମ ଦେଶରେ ଅନେକ ଆଇଏଏସ୍ ଅଫିସର ଭଲକାମ କରି ମଧ୍ୟ ସରକାରଙ୍କ ରୋଷର ଶିକାର ହେଉଥିବାର ନଜିର ରହିଛି । ସେମାନେ ନୀତିନିଷ୍ଠ, ନିର୍ଭୀକ ଭାବରେ ନିଜର କର୍ତ୍ତବ୍ୟ କରି ସ୍ୱଚ୍ଛତା ବଜାୟ ରଖିବାରେ କେବେହେଲେ ପଶ୍ଚାତପଦ ହୋଇନାହାନ୍ତି । ଏହି ପରିପ୍ରେକ୍ଷୀରେ କେତେକ ଚର୍ଚ୍ଚିତ ଆଇଏଏସ୍ ଅଫିସରଙ୍କ ନାମ ହେଲା ହରିଆନାର ଅଶୋକ ଖେମକା, ମହାରାଷ୍ଟ୍ରର ଅରୁଣ ଭାଟିଆ, ଉତ୍ତର ପ୍ରଦେଶର ଦୁର୍ଗାଶକ୍ତି ନାଗପାଳ ।

ଭାରତରେ ଜନସାଧାରଣଙ୍କର ନ୍ୟାୟିକ ବ୍ୟବସ୍ଥାର ସ୍ୱଚ୍ଛତା ଉପରେ ଧୀରେଧୀରେ ଆସ୍ଥା ତୁଟିବାରେ ଲାଗିଛି । ପୂର୍ବତନ କେନ୍ଦ୍ରମନ୍ତ୍ରୀ ଶାନ୍ତିଭୂଷଣ ସୁପ୍ରିମକୋର୍ଟର ପୂର୍ବତନ ୧୬ ଜଣ ବିଚାରପତିଙ୍କ ମଧ୍ୟରୁ ୮ ଜଣ ଦୁର୍ନୀତିଗ୍ରସ୍ତ ବୋଲି ଅଭିଯୋଗ କରି ଏକ ବନ୍ଦ ଲଫାପାରେ ତତ୍କାଳୀନ ମୁଖ୍ୟ ବିଚାରପତିଙ୍କୁ ସେମାନଙ୍କ ନାମ ଦୁର୍ନୀତି ସମ୍ବନ୍ଧୀୟ ତଥ୍ୟ ପ୍ରଦାନ କରି ଜନସାଧାରଣଙ୍କ ମନରେ ନ୍ୟାୟିକ ବ୍ୟବସ୍ଥା ଉପରେ ସନ୍ଦେହର ବୀଜ ରୋପଣ କରିଥିଲେ । ତାପରେ ମଧ୍ୟ ସୁପ୍ରିମକୋର୍ଟର ୨ ଜଣ ମୁଖ୍ୟ ବିଚାରପତିଙ୍କ ନାମରେ ଠୋସ ଦୁର୍ନୀତିର ପ୍ରମାଣ ସହିତ ତଥ୍ୟମାନ ଗଣମାଧ୍ୟମରେ ପ୍ରକାଶିତ ହେଲା । ନିକଟ ଅତୀତରେ ଅଦାଲତଙ୍କ ଜୟଲଳିତାଙ୍କୁ ନିର୍ଦ୍ଦୋଷରେ ଖଲାସ ଓ ସଲମନଙ୍କୁ ଜାମିନ ପ୍ରଦାନରେ ଅହେତୁକ ତତ୍ପରତା ଗଣମାଧ୍ୟମରେ ବହୁଳ ଭାବେ ଚର୍ଚ୍ଚିତ ହୋଇଛି ଏବଂ ଭାରତୀୟ ନ୍ୟାୟ ବ୍ୟବସ୍ଥା ଧନୀ, ପ୍ରଭାବଶାଳୀ ଓ କ୍ଷମତାଶାଳୀଙ୍କର ପକ୍ଷପାତୀ ବୋଲି ବିବେଚିତ ହେଉଛି । ଭାରତର ବିଭିନ୍ନ ନ୍ୟାୟାଳୟରେ ଘଟୁଥିବା ଅନ୍ୟାୟ ବିଷୟରେ ବହୁ ତଥ୍ୟ ଲୋକଲୋଚନକୁ ଆସିପାରନ୍ତା, କିନ୍ତୁ 'କଣ୍ଟେମ୍ପଟ୍ ଅଫ୍ କୋର୍ଟ' ଆଇନ୍ ଭୟରେ ଏହି ତଥ୍ୟ ସବୁ ପଦାକୁ ଆସିପାରୁନାହିଁ । କାରଣ ଏହି ଆଇନର ସଂଜ୍ଞା ଅତ୍ୟନ୍ତ ଅସ୍ପଷ୍ଟ

ଏବଂ ବିଚାରପତିମାନେ ଏହାକୁ ମନମୁତାବକ ବ୍ୟାଖ୍ୟା କରି ଯେକୌଣସି ଲୋକକୁ ଜେଲ ଦଣ୍ଡ ଦେବା ଅସମ୍ଭବ ନୁହେଁ। ବ୍ରିଟେନରେ ଏହି ଆଇନକୁ ପ୍ରତ୍ୟାହାର କରିନିଆଗଲାଣି ଓ ଆମ ଦେଶରେ ମଧ୍ୟ ଏହି ଆଇନକୁ ଉଠାଇ ଦେବା ଉଚିତ୍ ହେବ ବୋଲି ବୁଦ୍ଧିଜୀବୀମାନେ ମତପୋଷଣ କରୁଛନ୍ତି।

ଭାରତରେ ନିର୍ବାଚିତ ପ୍ରତିନିଧିଗଣ ଜନସେବାକୁ ଭୁଲିଯାଇ ଲୋଭାସକ୍ତ ଓ ସ୍ୱାର୍ଥପର ହୋଇ ଶାସନ ଚଳାଉଛନ୍ତି। ପ୍ରଶାସକମାନେ ଆଇନ୍ ଅନୁମୋଦିତ ନିଜ କର୍ତ୍ତବ୍ୟ ଭୁଲିଯାଇ ରାଜନେତାଙ୍କ ବଚସ୍କର ସାଜିଛନ୍ତି। ଗଣତନ୍ତ୍ରର ଦୁଇଟି ବ୍ୟବସ୍ଥା ବ୍ୟବସ୍ଥାପକ ଓ ଅମଲାତନ୍ତ୍ର ବିଶ୍ୱାସନୀୟତା ହରାଇଛି ଏବଂ ଜନସାଧାରଣଙ୍କର ବିଚାର ବିଭାଗ ଉପରେ ଯେଉଁ ଅତୁଟ ବିଶ୍ୱାସ ଥିଲା, ତାହା ଦୋହଲି ଯାଇଛି। ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ରୂପେ ବିବେଚିତ ସମ୍ବାଦପତ୍ର ଓ ବୈଦ୍ୟୁତିକ ଗଣମାଧ୍ୟମ ସମସ୍ତଙ୍କ ଦୋଷତ୍ରୁଟି ସୁଧାରିବାକୁ ସଂକଳ୍ପବଦ୍ଧ ହେଲେ ବିପଦର ସମ୍ମୁଖୀନ ହୋଇଥିବା ଭାରତର ଗଣତନ୍ତ୍ର ସୁଦୃଢ଼ ହେବ ଓ ତିଷ୍ଠି ରହିବ।

*ସମାଜ - ୨୦.୦୬.୨୦୧୫*

# କଳାଧନ: ଅତୀତ ଓ ବର୍ତ୍ତମାନ

ନଭେମ୍ବର ୨, ୨୦୧୪ ମସିହାରେ ଆକାଶବାଣୀରେ ପ୍ରସାରିତ 'ମନ୍ କୀ ବାତ୍' କାର୍ଯ୍ୟକ୍ରମରେ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ବିଦେଶରେ ଗଚ୍ଛିତ ସବୁ କଳାଟଙ୍କା ଦେଶକୁ ନିଶ୍ଚୟ ଫେରାଇ ଅଣାଯିବା ନେଇ ଦେଶବାସୀଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇଛନ୍ତି। ନଭେମ୍ବର ୯ ତାରିଖ ଦିନ ମଧ୍ୟ ଭୁବନେଶ୍ୱରଠାରେ ଏକ ସାମ୍ବାଦିକ ସମ୍ମିଳନୀରେ ବିଜେପି ବରିଷ୍ଠ ନେତା ଓ ସାଂସଦ ସୁବ୍ରମଣ୍ୟମ୍ ସ୍ୱାମୀ ଦୃଢ଼ୋକ୍ତି ପ୍ରକାଶ କରିଛନ୍ତି ଯେ, ବିଶ୍ୱର ସତୁରିଟି ଦେଶର ବିଭିନ୍ନ ବ୍ୟାଙ୍କରେ ଭାରତୀୟମାନଙ୍କର ଯେଉଁ ୧୨୦ ଲକ୍ଷ କୋଟି କଳାଟଙ୍କା ଗଚ୍ଛିତ ରହିଛି, ତାହା ମୋଦି ସରକାର ଆଗାମୀ ଏକ ବର୍ଷ ମଧ୍ୟରେ ଆମ ଦେଶକୁ ଫେରାଇ ଆଣିବାକୁ ସକ୍ଷମ ହେବେ। ଯଦି ଆମେରିକା ସରକାର ସୁଇସ୍ ବ୍ୟାଙ୍କଗୁଡ଼ିକରୁ କଳାଧନ ଠୁଳକାରୀଙ୍କ ତାଲିକା ପାଇବା ପରେ କାଳବିଳମ୍ବ ନ କରି ନିଜ ଦେଶକୁ କଳାଟଙ୍କା ଫେରାଇ ନେଇପାରିଲେ, ଭାରତ ମଧ୍ୟ ସେହିପରି ନିଜ ଦେଶର ଲୋକମାନେ ବିଦେଶରେ ଜମା କରିଥିବା ଅର୍ଥ ଫେରାଇ ଆଣିବାକୁ ସମର୍ଥ ହେବେନାହିଁ କାହିଁକି ? ଏଥିଲାଗି ପ୍ରୟୋଜନ ସରକାରଙ୍କର ଦୃଢ଼ ଇଚ୍ଛାଶକ୍ତି, ଯାହାକି ମୋଦିଙ୍କଠାରେ ଅଭାବ ନାହିଁ। ୨୦୦୮ ମସିହାରେ ଜର୍ମାନ୍ ସରକାରଙ୍କ ପାଖରେ ଲିସେନ୍‌ଷ୍ଟିନ୍‌ର ଏଲ୍‌ଜିଟି ବ୍ୟାଙ୍କରେ କଳାଧନ ଜମା ରଖୁଥିବା ପ୍ରାୟ ୧୪ ଶହ ଜମାକାରୀଙ୍କର ଟିକିନିଖି ବିବରଣୀ ଥିଲା। ସେମାନଙ୍କର ଜାତୀୟତା ଜାଣିବା ପରେ ଜର୍ମାନ୍ ସରକାର ଆମ ଦେଶର ତତ୍କାଳୀନ ୟୁପିଏ ସରକାରଙ୍କୁ ମଧ୍ୟ ଚିଠି ଲେଖି ତାହାର ସୂଚନା ପ୍ରଦାନ କରିଥିଲେ; କିନ୍ତୁ ସରକାର ଜର୍ମାନୀ ଚିଠି ଉପରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ ନାହିଁ। ଟ୍ରାନ୍ସପାରେନ୍ସି ଇଣ୍ଟରନେସ୍‌ନାଲ ଓ ଗଣମାଧ୍ୟମର ଚପର ସମ୍ମୁଖୀନ ହେବାରୁ ବହୁ ବିଳମ୍ବରେ ଭାରତ ସରକାର ଜର୍ମାନୀଠାରୁ ତାଲିକା ସଂଗ୍ରହ କଲେ। କଂଗ୍ରେସ ନେତୃତ୍ୱାଧୀନ ଦୁଇ ଦୁଇଟି ସରକାର ବିଦେଶରୁ କଳାଧନ ଫେରାଇ ଆଣିବା ପାଇଁ ସାମାନ୍ୟତମ ଉଦ୍ୟମ କଲେ ନାହିଁ; ବରଂ ଏହି କଳାଟଙ୍କାକୁ ଫେରାଇ ଆଣିବା ଦାବି ନେଇ ଦିଲ୍ଲୀର ରାମଲୀଳା ମୈଦାନଠାରେ ଲକ୍ଷାଧିକ ସମର୍ଥକଙ୍କ ଗହଣରେ ଅନଶନରତ ବାବା ରାମଦେବଙ୍କ ଶିବିରରେ

ରାତିଅଧିଆ ଆକ୍ରମଣ କରାଗଲା; ଏପରିକି ପୋଲିସ୍ ପକ୍ଷରୁ ଭକ୍ତମାନଙ୍କ ତମ୍ବୁରେ ନିଆଁ ମଧ୍ୟ ଲଗାଇ ଦିଆଗଲା।

ବରିଷ୍ଠ ଆଇନଜୀବୀ ରାମ ଜେଠମାଲାନୀ ଓ ଅନ୍ୟ ପାଞ୍ଚଜଣ ସୁପ୍ରିମକୋର୍ଟରେ ୧୫ ମାର୍ଚ୍ଚ ୨୦୦୯ରେ ଏକ ଜନସ୍ୱାର୍ଥ ମାମଲା ଦାୟର କରି ବିଦେଶୀ ବ୍ୟାଙ୍କରେ ଗଚ୍ଛିତ ଭାରତୀୟଙ୍କର ୭୦ ଲକ୍ଷ କୋଟି ଟଙ୍କାର କଳାଧନକୁ ଫେରାଇ ଆଣିବା ପାଇଁ ଅନୁରୋଧ କଲେ। ଏହି ମାମଲାର ଶୁଣାଣି ବେଳେ ୧୭ ଜୁନ୍ ୨୦୧୦ ମସିହାରେ ସୁପ୍ରିମକୋର୍ଟ ବିଦେଶରେ ଥିବା କଳାଧନକୁ ଫେରାଇ ଆଣିବା ପାଇଁ କେନ୍ଦ୍ର ସରକାରଙ୍କୁ ନିର୍ଦ୍ଦେଶ ଦେଲେ। ୨୦୧୧ ମସିହା ଜୁଲାଇ ୪ ତାରିଖରେ ସୁପ୍ରିମକୋର୍ଟ ପୁନର୍ବାର ବିଚାର କରି କଳାଧନ ସମ୍ପର୍କରେ ତୁରନ୍ତ ପଦକ୍ଷେପ ନେବାପାଇଁ ଏକ ସ୍ୱତନ୍ତ୍ର ଟିମ୍ ଗଠନ କରିବାକୁ କେନ୍ଦ୍ର ସରକାରଙ୍କୁ ପରାମର୍ଶ ଦେଲେ, କିନ୍ତୁ ୟୁପିଏ ସରକାର ବିଭିନ୍ନ ଆଳରେ ସୁପ୍ରିମକୋର୍ଟର ନିର୍ଦ୍ଦେଶ ପାଳନ କରିନଥିଲେ। ସେହିଦିନଠାରୁ ବାରମ୍ବାର ସୁପ୍ରିମକୋର୍ଟ କଳାଧନକୁ ଫେରାଇ ଆଣିବା ପାଇଁ ସରକାରଙ୍କୁ ବିଭିନ୍ନ ସମୟରେ ନିର୍ଦ୍ଦେଶ ଦେଇଥିଲେ ମଧ୍ୟ ୨୮ ଅକ୍ଟୋବର ୨୦୧୪ରେ ସୁପ୍ରିମକୋର୍ଟଙ୍କ କଡ଼ା ଆଭିମୁଖ୍ୟ ଯୋଗୁଁ ୨୯ ଅକ୍ଟୋବର ଦିନ ବର୍ତ୍ତମାନର ସରକାର ୬୨୭ ଜଣ ଭାରତୀୟଙ୍କ ତାଲିକା ସୁପ୍ରିମକୋର୍ଟରେ ଦାଖଲ କଲେ, ଯାହାକୁ କୋର୍ଟ ସ୍ପେଶାଲ ଇନ୍‌ଭେଷ୍ଟିଗେସନ୍ ଟିମ୍‌କୁ ହସ୍ତାନ୍ତର କରି ୨୦୧୫ ମାର୍ଚ୍ଚ ସୁଦ୍ଧା ରିପୋର୍ଟ ଦେବାକୁ କହିଛନ୍ତି। ସୁବ୍ରମଣ୍ୟମ୍ ସ୍ୱାମୀଙ୍କର ଅନୁମାନ ଠିକ୍ ହେଲେ ୨୦୧୫ ଶେଷ ସୁଦ୍ଧା ବିଦେଶରେ ଥିବା କଳାଟଙ୍କା ଫେରିଆସିବ, ଯାହାକି ଦେଶର ଅର୍ଥନୀତିକୁ ଅଭୂତପୂର୍ବ ଶକ୍ତି ପ୍ରଦାନ କରିବ।

ଦେଶର ସାଧାରଣ ନାଗରିକ ଓ ବୁଦ୍ଧିଜୀବୀମାନଙ୍କର ଏକାନ୍ତ ଇଚ୍ଛା ଯେ ବିଦେଶରେ ରହିଥିବା କଳାଧନ ସ୍ୱଦେଶକୁ ଫେରାଇ ଆଣିବାକୁ ଉଦ୍ୟମ କରିବା ସଙ୍ଗେ ସଙ୍ଗେ ଦେଶ ଭିତରେ ଲୁକ୍‌କାୟିତ ଭାବେ ରହିଥିବା କଳାଟଙ୍କାକୁ ମଧ୍ୟ ଜବତ କରିବାକୁ କେନ୍ଦ୍ର ସରକାର ଉପଯୁକ୍ତ ପଦକ୍ଷେପ ଗ୍ରହଣ କରିବା ଉଚିତ୍। ଅର୍ଥନୀତିଜ୍ଞମାନଙ୍କର କହିବା ଅନୁଯାୟୀ ୨୦୦୭-୦୮ରେ ଆମ ଜାତୀୟ ଆୟର ୨୦ ପ୍ରତିଶତ କଳାଟଙ୍କା ଆକାରରେ ଲୁକ୍‌କାୟିତ ଅଛି, ଯାହାର ପରିମାଣ ୮,୫୯,୪୦୩ କୋଟି ଟଙ୍କା। ଦେଶରେ କଳାଟଙ୍କାକୁ ଜବତ କରିବାକୁ ସେଣ୍ଟ୍ରାଲ ବୋର୍ଡ଼ ଅଫ୍ ଡାଇରେକ୍ଟ ଟ୍ୟାକ୍ସେସକୁ ଅମାପ କ୍ଷମତା ଦିଆଯାଇଛି। ଆୟକର ବିଭାଗର

ମହାନିର୍ଦ୍ଦେଶକ (ଇଣ୍ଟର ନ୍ୟାସନାଲ ଟ୍ୟାକ୍ସେସନ) ଗତ ୫୦ ବର୍ଷ ଧରି କଳାଟଙ୍କାକୁ ଜବତ କରିବାକୁ କାର୍ଯ୍ୟରତ।

୫୧୦ଟି ସହରର ୮୦୦ ସ୍ଥାନରେ ତାଙ୍କର କାର୍ଯ୍ୟାଳୟମାନ ରହିଛି ଏବଂ ଏହି କାର୍ଯ୍ୟାଳୟମାନଙ୍କରେ ୫୫ ହଜାର କର୍ମଚାରୀ କାର୍ଯ୍ୟରତ। ସେମାନଙ୍କ ମଧ୍ୟରେ ବହୁ ସଂଖ୍ୟକ ପୋଲିସ୍ ଅଫିସର ମଧ୍ୟ ଅଛନ୍ତି। ଆମ ଦେଶରେ ୧୯୫୬ ମସିହାରୁ ଏନ୍‌ଫୋର୍ସମେଣ୍ଟ ଡାଇରେକ୍ଟୋରେଟ୍ କାର୍ଯ୍ୟରତ। ଫେରା ଅର୍ଥାତ୍ ଫରେନ୍ ଏକ୍ସଚେଞ୍ଜ ରେଗୁଲେସନ୍ ଆକ୍ଟ ଭଳି ମନି ଲଣ୍ଡରିଙ୍ଗ୍ ହାୱାଲା କାରବାର ଅର୍ଥନୈତିକ କାରବାରକୁ ନିୟନ୍ତ୍ରିତ କରିବାକୁ ଉଦ୍ଦିଷ୍ଟ। ଏହି ଆଇନ୍ ପରବର୍ତ୍ତୀ ସମୟରେ ଫରେନ୍ ଏକ୍ସଚେଞ୍ଜ ମ୍ୟାନେଜ୍‌ମେଣ୍ଟ ଆକ୍ଟରେ ପରିଣତ ହୋଇଛି। ଏହି ନିର୍ଦ୍ଦେଶାଳୟ ଅଧୀନରେ ୩୯ଟି ଅଫିସ୍ ଓ ୨୦୦୦ କର୍ମଚାରୀ ନିୟୋଜିତ। ସ୍ପେଶାଲ ବୋର୍ଡ ଅଫ୍ ଏକ୍ସାଇଜ୍ ଆଣ୍ଡ କଷ୍ଟମସ୍ ଆଣ୍ଡ ଡାଇରେକ୍ଟୋରେଟ୍ ଅଫ୍ ରେଭିନ୍ୟୁ ଇଣ୍ଟେଲିଜେନ୍ସ, ସେଣ୍ଟ୍ରାଲ ଏକ୍ସାଇଜ୍ ଆଣ୍ଡ ସର୍ଭିସ୍ ଟ୍ୟାକ୍ସ ଚୋରିକୁ ପ୍ରତିହତ କରିବା ପାଇଁ ଉଦ୍ଦିଷ୍ଟ। କେନ୍ଦ୍ରୀୟ ଓ ରାଜ୍ୟସ୍ତରରେ ଏହିଭଳି ଆହୁରି ଅନେକ ଆଇନ୍ ଓ ବିଭାଗ ରହିଛି।

ଭାରତ ସରକାରଙ୍କ ନ୍ୟାସନାଲ ଇନ୍‌ଭେଷ୍ଟିଗେସନ୍ ଏଜେନ୍ସି ଓ ନ୍ୟାସନାଲ କ୍ରାଇମ୍ସ ରେକର୍ଡ଼ ବ୍ୟୁରୋ ଭଳି ବିଭାଗଗୁଡ଼ିକ କଳାଧନ ମାମଲାଗୁଡ଼ିକୁ ଠାବ କରିବା, ତଦନ୍ତ କରିବା ଓ ଦୋଷୀକୁ ଦଣ୍ଡିତ କରିବା ନିମନ୍ତେ ଉଦ୍ଦିଷ୍ଟ। ଏତଦ୍‌ବ୍ୟତୀତ ସିବିଆଇ ଏବଂ ରାଜ୍ୟ ପୋଲିସ୍ ଓ ଗୁଇନ୍ଦା ବିଭାଗ ମଧ୍ୟ ଏହି କାର୍ଯ୍ୟର ତଦାରଖ କରିପାରିବେ, ତେଣୁ ବର୍ତ୍ତମାନର ଆବଶ୍ୟକତା ହେଉଛି ଯେ, ବିଦେଶରେ ଗଚ୍ଛିତ କଳାଧନକୁ ଦେଶକୁ ଫେରାଇ ଆଣିବା ସାଙ୍ଗକୁ ଦେଶ ଭିତରେ ଚଳାଚଳ କରୁଥିବା ବିପୁଳ ପରିମାଣର କଳାଧନକୁ ମଧ୍ୟ ଠାବ କରି ଜନକଲ୍ୟାଣରେ ତାହାର ସୁବିନିଯୋଗ ଦିଗରେ ପଦକ୍ଷେପ ନେବା। ତମାମ ଧନସମ୍ପତ୍ତି ଥାଇ ଜଣେ ଭୋକରେ ରହିବାକୁ ବାଧ୍ୟ ହେବାଭଳି ଆମ ନିକଟରେ ଉପଯୁକ୍ତ ଆଇନ୍ ଓ ତାହାକୁ କାର୍ଯ୍ୟକାରୀ କରିବାକୁ ଯଥେଷ୍ଟ ଭିତ୍ତିଭୂମି ଥିବା ସତ୍ତ୍ୱେ କଳାଧନର ସାମ୍ରାଜ୍ୟ ଦିନକୁ ଦିନ ବଢ଼ିବା ବାସ୍ତବିକ୍ କ୍ଷୋଭର ବିଷୟ।

କଳାଟଙ୍କା ହେଉଛି ସରକାରଙ୍କଠାରୁ ଅସାଧୁ ବ୍ୟକ୍ତିମାନଙ୍କ ଦ୍ୱାରା ଲୁକ୍କାୟିତ ରଖାଯାଇଥିବା ଟଙ୍କା। ଏହି ଟଙ୍କା ସବୁ ବେଆଇନ୍ ଟଙ୍କା। ତାହା ଧରାପଡ଼ିଲେ ସରକାରଙ୍କ ଦ୍ୱାରା ଜବତ ହୋଇ ସରକାରୀ ଧନରେ ପରିଣତ ହେବ ଏବଂ ବେଆଇନ୍

ଅର୍ଥ ପାଖରେ ରଖୁଥିବା ବ୍ୟକ୍ତିମାନଙ୍କୁ ଜେଲ୍ ଏବଂ ଜରିମାନା ଦଣ୍ଡ ଭୋଗିବାକୁ ପଡ଼ିବ, ତେଣୁ କଳାଟଙ୍କାକୁ ଲୁଚାଇ ରଖିବାକୁ ଲୋକେ ନିଜର ସମସ୍ତ ଶକ୍ତି ପ୍ରୟୋଗ କରିଥାନ୍ତି। ଏହି ଲୋକମାନେ ଆମ ଦେଶର ଅର୍ଥନୀତିକୁ ବହୁ ଭାବରେ ପ୍ରଭାବିତ କରୁଛନ୍ତି। ଗ୍ଲୋବାଲ ଫାଇନାନ୍ସିଆଲ ଇଣ୍ଟିଗ୍ରିଟିର ଡାଇରେକ୍ଟର ରେମଣ୍ଡ ବେକରଙ୍କ ମତରେ ବିଶ୍ୱ ଜନସଂଖ୍ୟାର ମାତ୍ର ଏକ ପ୍ରତିଶତ ଲୋକ ୫୭ ଭାଗ ସଂପଦର ଅଧିକାରୀ ହୋଇଛନ୍ତି। ଭାରତର ହଜାର ହଜାର ଲୋକ ବେନାମୀ ଓ ଅନାମଧେୟ କର୍ପୋରେସନ୍ ଜରିଆରେ ଗୁପ୍ତ ଟଙ୍କାର କାରବାର କରୁଛନ୍ତି। ଏହି ବିଷୟ ସରକାରଙ୍କର ତଳୁ ଉପର ପର୍ଯ୍ୟନ୍ତ ସମସ୍ତେ ଜାଣି ମଧ୍ୟ ସଂପୂର୍ଣ୍ଣ ଅବହେଳା ଯୋଗୁଁ କଳାଧନ ବଢ଼ିବାରେ ଲାଗିଛି। ଏ ସଂପର୍କରେ ଏକ ଦୃଷ୍ଟାନ୍ତ ଦେବା ଉଚିତ୍ ହେବ। ନିକଟ ଅତୀତରେ ପୁନେର ଜଣେ ବ୍ୟବସାୟୀ ହାସାନ୍ ଅଲ୍ଲୀ ଖାଁ ନିଜର ସ୍ତ୍ରୀଙ୍କ ନାମରେ ରଖିଥିବା ଏକ ଆକାଉଣ୍ଟରୁ ଏକାଥରକେ ୪୦ ହଜାର କୋଟି ଟଙ୍କା ଟ୍ରାନ୍ସଫର କରିଛନ୍ତି। ତାଙ୍କ ସ୍ତ୍ରୀ ଏତେ ଟଙ୍କା କିଭଳି ବ୍ୟାଙ୍କରେ ଜମା ରଖିଲେ, ତାହାର ଖୋଳତାଡ଼ ହେଲେ ମଧ୍ୟ କିଛି ସନ୍ତୋଷଜନକ ଉତ୍ତର ମିଳିନଥିଲା। ଏହା କଳାଟଙ୍କା ବୋଲି ସମସ୍ତେ ଜାଣିଲେ ମଧ୍ୟ ହାସାନ ଅଲ୍ଲୀ ଖାଁ କିମ୍ବା ତାଙ୍କ ସ୍ତ୍ରୀଙ୍କ ଉପରେ କିଛି ଦୃଷ୍ଟାନ୍ତମୂଳକ କାର୍ଯ୍ୟାନୁଷ୍ଠାନ ସରକାର ଗ୍ରହଣ କଲେନାହିଁ।

ସ୍ୱାଧୀନତା ପରେ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଲାଞ୍ଚଖୋର କଳାବଜାରୀମାନଙ୍କୁ ଦେଶର ପ୍ରଧାନ ଶତ୍ରୁ ଭାବେ ବର୍ଣ୍ଣନା କରିଥିଲେ ଏବଂ ଏମାନଙ୍କୁ ସର୍ବସାଧାରଣରେ ବତୀଖୁଣ୍ଟରେ ଫାଶୀ ଦିଆଯିବା ଉଚିତ୍ ବୋଲି କହିଥିଲେ, କିନ୍ତୁ ବିଡ଼ମ୍ବନାର କଥା ତାଙ୍କରି ପ୍ରଧାନମନ୍ତ୍ରୀତ୍ୱ କାଳରେ ପ୍ରତିରକ୍ଷା ବିଭାଗ ପାଇଁ ଇଂଲଣ୍ଡରୁ ଜିପ୍ କିଣାରେ ଦୁର୍ନୀତି, ପଞ୍ଜାବର ମୁଖ୍ୟମନ୍ତ୍ରୀ ପ୍ରତାପ ସିଂହ କାଇରନଙ୍କ ବିରୋଧରେ ଗୁରୁତର ଦୁର୍ନୀତି ଅଭିଯୋଗ ହୋଇଥିଲେ ମଧ୍ୟ ସେଗୁଡ଼ିକୁ ସେ ଅଣଦେଖା କରିଥିଲେ। ଇନ୍ଦିରା ଗାନ୍ଧୀଙ୍କ ସମୟରେ ନଗରୱାଲା ଦୁର୍ନୀତି, ମାରୁତି ଦୁର୍ନୀତି, ଏ.ଆର୍. ଆନ୍ତୁଲେଙ୍କ ସମ୍ପୃକ୍ତିରେ ଘଟିଥିବା ସିମେଣ୍ଟ ସ୍କାମ୍ ପ୍ରଭୃତି ଦୁର୍ନୀତିର କୌଣସି କାର୍ଯ୍ୟାନୁଷ୍ଠାନ ହୋଇନଥିଲା। ମନମୋହନ ସିଂହଙ୍କ ୧୦ ବର୍ଷର ପ୍ରଧାନମନ୍ତ୍ରୀତ୍ୱ ସମୟରେ ଦୁର୍ନୀତି ସୀମା ଟପି ଯାଇଥିଲା। ଆଜିପର୍ଯ୍ୟନ୍ତ କେନ୍ଦ୍ରର ବିଭିନ୍ନ ସରକାରମାନେ ପ୍ରାୟ ୪୫ଟି କମିଶନ, କମିଟି ଓ ଷ୍ଟଡ଼ି ଟିମ୍ ଗଠନ କରିଛନ୍ତି, କିନ୍ତୁ ସେହି କମିଟି ବହୁ ଉପାଦେୟ ପରାମର୍ଶ ଦେଇଥିଲେ ମଧ୍ୟ ସରକାର ସେଗୁଡ଼ିକୁ କାର୍ଯ୍ୟକାରୀ କରିବାରେ ଯଥୋଚିତ

ଗୁରୁତ୍ୱ ଦେଉନାହାନ୍ତି। କାରଣ ଏହି କଳାଟଙ୍କା କାରବାରରେ କେବଳ ବ୍ୟବସାୟୀମାନେ ନୁହଁନ୍ତି, ଉଚ୍ଚ ପଦପଦବୀରେ ଥିବା ଦୁର୍ନୀତିଗ୍ରସ୍ତ କର୍ମଚାରୀ ଓ ରାଜନୈତିକ ନେତାମାନେ ମଧ୍ୟ ନିବିଡ଼ ଭାବରେ ସମ୍ପୃକ୍ତ ଅଛନ୍ତି।

ଏନ୍‌ଡିଏ ସରକାର ଏମ୍.ସି. ଜୋଷୀ ଦେଇଥିବା ରିପୋର୍ଟରେ ଭ୍ରଷ୍ଟାଚାର ନିରୋଧ ଆଇନରେ କଳାଟଙ୍କା ଠୁଳ କରିଥିବା ବ୍ୟକ୍ତିଙ୍କ ବିରୋଧରେ କଠୋର ଦଣ୍ଡର ବ୍ୟବସ୍ଥା କରିବା ପାଇଁ ଯେଉଁ ଅନୁରୋଧ କରିଛନ୍ତି ଓ ଆମେରିକା ସରକାର ପ୍ରଣୀତ କରିଥିବା ବିଦେଶୀ ଆକାଉଣ୍ଟ ଟ୍ୟାକ୍ସ କମ୍ପ୍ଲାଏନ୍ସ ଆକ୍ଟ ଭଳି ଏକ ଆଇନ୍ ପ୍ରଣୟନ କରିବାକୁ ପୂର୍ବତନ କେନ୍ଦ୍ର ତଦନ୍ତ ବ୍ୟୁରୋର ନିର୍ଦ୍ଦେଶକ ଯୋଗୀନ୍ଦର ସିଂ ଯେଉଁ ପ୍ରସ୍ତାବ ଦେଇଛନ୍ତି ସରକାର ତାହାର ବିଚାର କରୁଥିବା ଅସମର୍ଥିତ ସୂତ୍ରରୁ ଜଣାଯାଇଛି। ଅନ୍ନା ହଜାରେ ବିଜେପି ସରକାରଙ୍କ ଉପରେ କଳାଟଙ୍କା ଜବତ କରିବାକୁ ମଧ୍ୟ ଚାପ ପକାଇବା ଆରମ୍ଭ କଲେଣି।

ବିଶିଷ୍ଟ ଆଇନଜୀବୀ ରାମ ଜେଠମାଲାନୀ ମଧ୍ୟ ନିକଟରେ ବିଜେପି କଳାଟଙ୍କା ଜମାକାରୀ ଦେଶଦ୍ରୋହୀମାନଙ୍କୁ ଘଣ୍ଟ ଘୋଡ଼ାଉଛନ୍ତି ବୋଲି ଅଭିଯୋଗ ଆଣିଛନ୍ତି। କିନ୍ତୁ ସାଧାରଣ ଜନତାଙ୍କ ବିଶ୍ୱାସ ମୋଦି ସରକାରଙ୍କ ଉପରେ ଏବେ ମଧ୍ୟ ଅତୁଟ ରହିଛି। ସେ ଯେ ଦେଶ ଭିତରେ ଥିବା କଳାଧନକୁ ଜବତ କରିବାରେ ସକ୍ଷମ ହେବେ ଏବଂ ବିଦେଶରେ ଥିବା ସମସ୍ତ କଳାଧନକୁ ଫେରାଇ ଆଣିବେ ଏ ବିଶ୍ୱାସ ରହିଛି। ସରକାରୀ କର୍ମଚାରୀ ତଥା ଦେଶବାସୀଙ୍କର ସାହାଯ୍ୟ ସମର୍ଥନ ଏଥିପାଇଁ ଅତ୍ୟନ୍ତ ଜରୁରୀ।

*ସମାଜ - ୨୧.୧୧.୨୦୧୪*

# ସ୍ୱଚ୍ଛ ରାଜନୀତି ଓ ସର୍ବୋଚ୍ଚ ନ୍ୟାୟାଳୟ

'ପବ୍ଲିକ୍ ଇଣ୍ଟରେଷ୍ଟ ଫାଉଣ୍ଡେସନ୍' ସ୍ୱେଚ୍ଛାସେବୀ ସଂସ୍ଥା ଦ୍ୱାରା ଆଗତ ହୋଇଥିବା ଜନସ୍ୱାର୍ଥ ମାମଲାର ବିଚାର କରି ୧୦ ମାର୍ଚ୍ଚ, ୨୦୧୪ରେ ସୁପ୍ରିମକୋର୍ଟର ନ୍ୟାୟମୂର୍ତ୍ତି ଆର.ଏମ୍. ଲୋଧା ଏବଂ ନ୍ୟାୟମୂର୍ତ୍ତି କୁରିଏନ୍ ଜୋଶେଫ୍ ଏକ ଯୁଗାନ୍ତକାରୀ ରାୟ ଦେଇ ରାଜନୈତିକ ବ୍ୟକ୍ତିମାନଙ୍କ ବିରୋଧରେ ହୋଇଥିବା ଅପରାଧ ମାମଲାଗୁଡ଼ିକର ଏକବର୍ଷ ମଧ୍ୟରେ ଫଇସଲା କରିବାକୁ ତଳକୋର୍ଟମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି। ଏହି ରାୟରେ ନ୍ୟାୟମୂର୍ତ୍ତିଦ୍ୱୟ କହିଛନ୍ତି ଯେ ଯେଉଁ ମାମଲାଗୁଡ଼ିକରେ ଏମ୍.ପି ଓ ଏମ୍.ଏଲ୍.ଏ ମାନଙ୍କର ଦୁର୍ନୀତି ସମ୍ବନ୍ଧୀୟ ଏବଂ ଅନ୍ୟାନ୍ୟ ଗୁରୁତର ଦୁଇ ବର୍ଷରୁ ଅଧିକ କାରାଦଣ୍ଡରେ ଦଣ୍ଡିତ ହେବାର ସମ୍ଭାବନା ଅଛି, ସେଗୁଡ଼ିକର ବିଚାର ଦୈନିକ ଶୁଣାଣି କରି ବର୍ଷକରେ ଫଇସଲା କରିବେ। ଏହି ରାୟର ଗୁରୁତ୍ୱପୂର୍ଣ୍ଣ ଦିଗଟି ହେଲା ବର୍ତ୍ତମାନ ଯେଉଁ ୧୬୭ ଜଣ ଏମ୍.ପିଙ୍କ ନାମରେ ଗୁରୁତର ଅପରାଧ ଘଟାଇଥିବା ମାମଲାମାନ କୋର୍ଟରେ ବିଚାରାଧୀନ ଅଛି, ସେମାନଙ୍କର ରାଜନୈତିକ ଭବିଷ୍ୟତ ସଂକଟରେ ପଡ଼ିଯିବ। ଏହାବ୍ୟତୀତ ଉତ୍ତରପ୍ରଦେଶ, ମହାରାଷ୍ଟ୍ର, ବିହାର ଓ ଝାଡ଼ଖଣ୍ଡ ବିଧାନସଭାର ଅଧାଅଧି ସଦସ୍ୟ ଯେଉଁମାନଙ୍କ ବିରୋଧରେ ଗୁରୁତର ଅପରାଧିକ ମାମଲାମାନ ରହିଛି, ସେମାନେ ମଧ୍ୟ ଘୋର ସଂକଟର ସମ୍ମୁଖୀନ ହେବେ। ସୁପ୍ରିମକୋର୍ଟର ଏହିଭଳି ରାୟ ଯଦି ପୂର୍ବରୁ ପ୍ରକାଶ ପାଇଥାନ୍ତା, ତେବେ ଆୟ ବର୍ହିଭୂତ ସମ୍ପତ୍ତି ଠୁଳ ମାମଲାରେ ଜଡ଼ିତ ଜୟଲଳିତା, ମାୟାବତୀ, ମୁଲାୟମ ସିଂହ ଯାଦବଙ୍କ ଭଳି ବ୍ୟକ୍ତିମାନଙ୍କର ବିଚାର ବହୁଦିନରୁ ସରନ୍ତାଣି ଏବଂ ସେମାନେ ନିର୍ବାଚନ ଲଢ଼ିବାକୁ ଯୋଗ୍ୟ କି ନୁହଁ, ତାହା ଦେଶବାସୀଙ୍କ ଆଗରେ ସ୍ପଷ୍ଟ ହୋଇସାରନ୍ତାଣି। ଦୁର୍ନୀତି ଅଭିଯୋଗ ଏମାନଙ୍କ ପଛେପଛେ ଗୋଡ଼ାଉଥିଲେ ମଧ୍ୟ ଏମାନେ ସମସ୍ତେ ଭାରତର ପ୍ରଧାନମନ୍ତ୍ରୀ ହେବାକୁ ଆଶାୟୀ ଅଛନ୍ତି। ଗତବର୍ଷ ଜୁଲାଇ ୧୦ରେ ସୁପ୍ରିମକୋର୍ଟର ବିଚାରପତି ଅନଙ୍ଗ କୁମାର ପଟ୍ଟନାୟକ ଏବଂ ନ୍ୟାୟମୂର୍ତ୍ତି ଏସ୍.ଜେ. ମୁଖାର୍ଜୀ, ଆଡ଼ଭୋକେଟ୍ ଲିଲି ଥୋମାସ୍ ଓ ଲକ୍ଷ୍ନୌର ଏକ ଏନ୍‌ଜିଓ 'ଲୋକପ୍ରହରୀ'ର ସାଧାରଣ ସମ୍ପାଦକ ଏସ୍.ଏନ୍. ଶୁକ୍ଲାଙ୍କର ଦୁଇଟି ରିଟ୍ ପିଟିସନ୍‌କୁ ବିଚାରକରି ଏକ

ଯୁଗାନ୍ତକାରୀ ରାୟ ଦେଇ ୧୯୫୧ ଲୋକପ୍ରତିନିଧି ଆଇନର ଅଷ୍ଟମ ଧାରାର ୪ ଉପଧାରା ସମ୍ବିଧାନର ବିରୋଧାଚରଣ କରୁଛି ବୋଲି ମତବ୍ୟକ୍ତ କରି ଏହି ଉପଧାରାକୁ ବାତିଲ କରିଛନ୍ତି । ଏହି ଉପଧାରା ଅନୁସାରେ ଜଣେ ଦୋଷୀ ସାବ୍ୟସ୍ତ ଲୋକପ୍ରତିନିଧି ତାଙ୍କର ଦଣ୍ଡ ବିରୋଧରେ ଉପର କୋର୍ଟରେ ଅପିଲ କରିଥିଲେ ତାଙ୍କର ସଭ୍ୟପଦ ରଦ୍ଦ ହେବନାହିଁ, କିନ୍ତୁ ଜଷ୍ଟିସ୍ ପଟ୍ଟନାୟକଙ୍କ ରାୟ ଅନୁଯାୟୀ ଜନପ୍ରତିନିଧିଙ୍କୁ କୌଣସି ଅପରାଧିକ ମାମଲାରେ ୨ ବର୍ଷରୁ ଅଧିକ ସଜା ହୋଇଥିଲେ, ତାଙ୍କର ସଦସ୍ୟତା ତତ୍କ୍ଷଣାତ୍ ନାକଚ ହୋଇଯିବ । ଏହି ରାୟ ପ୍ରକାଶ ପାଇବା ପରେ ରାଷ୍ଟ୍ରୀୟ ଜନତା ଦଳର ନେତା ଲାଲୁ ପ୍ରସାଦ ଯାଦବ, କଂଗ୍ରେସର ରାଜ୍ୟସଭା ସାଂସଦ ରସିଦ୍ ମାସୁଦ୍‌ଙ୍କ ସଭ୍ୟପଦ ତତ୍କ୍ଷଣାତ୍ ରଦ୍ଦ ହୋଇଥିଲା । ଏଠାରେ ମନେପକାଇବା ଉଚିତ୍ ହେବ ଯେ ୧୯୭୫ ମସିହାରେ ବିଶିଷ୍ଟ ସାମ୍ୟବାଦୀ ନେତା ରାଜନାରାୟଣ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ବିରୋଧରେ ଆଗତ କରିଥିବା ଏକ ନିର୍ବାଚନୀ ମକଦ୍ଦମାର ରାୟ ଦେଇ ଆହ୍ଲାବାଦ ହାଇକୋର୍ଟର ଜଷ୍ଟିସ୍ ଜଗମୋହନଲାଲ ସିହ୍ନା ୧୨ ଜୁନ୍ ୧୯୭୫ ଦିନ ଇନ୍ଦିରା ଗାନ୍ଧୀଙ୍କ ସଂସଦର ସଭ୍ୟପଦ ରଦ୍ଦ କରିଥିଲେ । ଆହ୍ଲାବାଦ ଉଚ୍ଚ ନ୍ୟାୟାଳୟର ରାୟକୁ ସମ୍ମାନ ଦେଇ ନିଜ ପଦବୀରୁ ଅପସରି ନ ଯାଇ ଦେଶରେ ଜରୁରୀକାଳୀନ ପରିସ୍ଥିତି ଜାରି କରିଥିଲେ ଇନ୍ଦିରା ।

୭ ଏପ୍ରିଲ ୨୦୧୪ରୁ ଆରମ୍ଭ ହେଉଥିବା ଷୋଡ଼ଶ ଲୋକସଭା ନିର୍ବାଚନରେ ୮୧ କୋଟି ୪୫ ଲକ୍ଷ ୯୧ ହଜାର ୧୮୪ ଜଣ ଭୋଟ ଦେବାକୁ ଯୋଗ୍ୟ । ସେମାନଙ୍କ ମଧ୍ୟରୁ ୧୦ କୋଟି ଯୁବବର୍ଗ ଭୋଟର । ଏହି ଭୋଟ ଦେବାପାଇଁ ଯୋଗ୍ୟ ବିବେଚିତ ଲୋକଙ୍କ ମଧ୍ୟରୁ ୫୨.୪ ପ୍ରତିଶତ ପୁରୁଷ ଓ ୪୭.୬ ପ୍ରତିଶତ ମହିଳା । ଓଡ଼ିଶାରେ ୨ କୋଟି ୮୮ ଲକ୍ଷ ୮୦ ହଜାର ଭୋଟର ରହିଛନ୍ତି । ରାଜନୀତିରେ ଧୀରେଧୀରେ ଅପରାଧୀଙ୍କ ଅନୁପ୍ରବେଶ ଫଳରେ ଆମ ଗଣତନ୍ତ୍ର ତା'ର ଉପାୟଦେୟତା ଓ ଗୌରବ ହରାଉଛି । ଏଥିପାଇଁ ଅପରାଧୀମାନଙ୍କୁ ରାଜନୀତିଠାରୁ ଦୂରରେ ରଖିବା ଜରୁରୀ । ମାତ୍ର ରାଜନୈତିକ ଦଳ ଓ ପ୍ରଶାସନିକ ବ୍ୟକ୍ତିବିଶେଷ ଏ ଦିଗରେ ପଦକ୍ଷେପ ନେଉନଥିବାରୁ ନ୍ୟାୟପାଳିକାଙ୍କ ପଦକ୍ଷେପ ଅତ୍ୟନ୍ତ ସ୍ୱାଗତଯୋଗ୍ୟ । ଗଣତନ୍ତ୍ରର ତିନୋଟି ସ୍ତମ୍ଭ ବ୍ୟବସ୍ଥାପକ, ଅମଲାତନ୍ତ୍ର ଓ ବିଚାର ବିଭାଗ ମଧ୍ୟରୁ ପ୍ରଥମ ଦୁଇଟି ସ୍ତମ୍ଭ ନିଜ କର୍ତ୍ତବ୍ୟ ପାଳନ କରିବାରେ ଅସଫଳ ହୋଇଛନ୍ତି, ତେଣୁ ବର୍ତ୍ତମାନ ଲୋକଙ୍କ ଭରସା କେବଳ ବିଚାର ବିଭାଗ ଉପରେ ।

ପଞ୍ଚଦଶ ଲୋକସଭାରେ ୫୪୩ ଜଣ ସାଂସଦଙ୍କ ମଧ୍ୟରୁ ୧୬୨ ଜଣଙ୍କ ନାମରେ ଗୁରୁତର ଅପରାଧର ମାମଲାମାନ ଦେଶର ବିଭିନ୍ନ ଅଦାଲତରେ ବିଚାରାଧୀନ ଅଛି। ସେଥିମଧ୍ୟରୁ ୭୬ ଜଣଙ୍କ ନାଁରେ ହତ୍ୟା, ହତ୍ୟା ଉଦ୍ୟମ, ଅପହରଣ, ଡକାୟତି ଭଳି ଗୁରୁତର ମାମଲାମାନ ରୁଜୁ କରାଯାଇଛି। ୨୦୦୯ରେ ଏମ୍.ପି ମାନଙ୍କ ପକ୍ଷରୁ ଦାଖଲ ସତ୍ୟପାଠକୁ ଭିତ୍ତି କରି ନ୍ୟାସନାଲ ଇଲେକ୍ସନ ୱାଚ୍ ଏବଂ ଆସୋସିଏସନ୍ ଫର୍ ଡେମୋକ୍ରାଟିକ୍ ରିଫର୍ମ ଏହି ତଥ୍ୟ ପ୍ରକାଶ କରିଛନ୍ତି। ପୁନଶ୍ଚ ରିପୋର୍ଟରେ ପ୍ରକାଶ ପାଇଛି ଯେ ୨୦୦୪ ମସିହାରେ ଅପରାଧିକ ମାମଲା ଥିବା ୨୪ ଜଣ ସାଂସଦ ପୁଣିଥରେ ୨୦୦୯ରେ ନିର୍ବାଚିତ ହୋଇଛନ୍ତି। ରାଜନୈତିକ ଦଳଗୁଡ଼ିକ ଅପରାଧିକ ମାମଲା ଥିବା ପ୍ରାର୍ଥୀଙ୍କୁ ଟିକେଟ ଦେବାକୁ ଦ୍ୱିଧା ପ୍ରକାଶ କରୁନାହାନ୍ତି। ଦେଶର ସମସ୍ତ ବିଧାନସଭାରେ ୪୦୩୨ ଜଣ ବିଧାୟକଙ୍କ ମଧ୍ୟରୁ ୧୨୫୮ ଜଣଙ୍କ ନାମରେ ଅପରାଧ ମାମଲା ବିଚାରାଧୀନ ରହିଛି। ସୁପ୍ରିମକୋର୍ଟଙ୍କ ସାମ୍ପ୍ରତିକ ନିଷ୍ପତ୍ତି ରାଜନୈତିକ ଦଳମାନଙ୍କୁ ଅପରାଧ ମାମଲାରେ ଫସିଥିବା ନେତାଙ୍କୁ ଦଳୀୟ ପ୍ରାର୍ଥୀ କରିବାରେ ଅଟକାଇବ ବୋଲି ଆଶା କରାଯାଏ। ପୂର୍ବରୁ ସୁପ୍ରିମକୋର୍ଟ ତାଙ୍କର ଅନ୍ୟ ଏକ ରାୟରେ ଜେଲରେ ଥାଇ ରାଜନେତା ନିର୍ବାଚନ ଲଢ଼ିପାରିବେ ନାହିଁ ବୋଲି ନିର୍ଦ୍ଦେଶ ଦେଇଥିଲେ। ଦେଶର ସବୁ ବର୍ଗର ଲୋକ ସୁପ୍ରିମକୋର୍ଟର ୧୦ ଜୁଲାଇ ୨୦୧୩ ଓ ୧୦ ମାର୍ଚ୍ଚ ୨୦୧୪ର ରାୟ ଦୁଇଟିକୁ ସ୍ୱାଗତ କରିଛନ୍ତି। ଏହି ରାୟର ପ୍ରଭାବରେ ରାଜନୀତିରେ ବୃଦ୍ଧି ପାଉଥିବା ଅପରାଧିକରଣ ହ୍ରାସ ପାଇବ ବୋଲି ଦେଶବାସୀ ଆଶା କରନ୍ତି, କିନ୍ତୁ ରାଜନୈତିକ ଦଳମାନେ ଅପରାଧ ପୃଷ୍ଠଭୂମିର ବ୍ୟକ୍ତିମାନଙ୍କୁ ନିଜ ଦଳରୁ ଟିକେଟ୍ ଦେବାରୁ ବଞ୍ଚିତ କରିବା ଦରକାର।

ଆମ ରାଜ୍ୟ ଓଡ଼ିଶାରେ ମଧ୍ୟ ବିଜେଡିର ଜଣେ ସାଂସଦ ଓ କଂଗ୍ରେସର ଜଣେ ସାଂସଦଙ୍କ ନାମରେ ଫୌଜଦାରୀ ମାମଲା ବିଚାରାଧୀନ ଅଛି। ବିଧାନସଭାରେ ବିଜୁ ଜନତା ଦଳର ୧୮ ଜଣ ବିଧାୟକ, କଂଗ୍ରେସ ଦଳର ୭ ଜଣ, ବିଜେପିର ୩ ଜଣ ଓ ଅନ୍ୟାନ୍ୟ ଦଳର ୩ ଜଣ ବିଧାୟକଙ୍କ ନାମରେ ଗୁରୁତର ଅପରାଧ ମାମଲାମାନ ବିଚାରାଧୀନ ଅଛି। ଏହା ସତ୍ତ୍ୱେ ଏଥର ନିର୍ବାଚନରେ ପ୍ରାୟ ସମସ୍ତଙ୍କୁ ଟିକଟ ମିଳିଛି।

ପୂର୍ବତନ ନିର୍ବାଚନ କମିଶନର ଟି.ଏନ୍. ଶେଷାନ ଭୋଟରମାନଙ୍କୁ ସବୁବେଳେ କହୁଥିଲେ ସେମାନେ ନିଜ ଝିଅ ପାଇଁ ଜ୍ୱାଇଁଟିଏ ଖୋଜିଲାବେଳେ ଯେପରି ତା'ର ଯୋଗ୍ୟତା, ଚରିତ୍ର ପ୍ରଭୃତି ବିଷୟକୁ ଗୁରୁତ୍ୱ ଦିଅନ୍ତି ସେହିଭଳି ଲୋକପ୍ରତିନିଧି ଚୟନ

କଲାବେଳେ ସେମାନେ ସତର୍କତା ଅବଲମ୍ବନ କରନ୍ତୁ ଯେଉଁଭଳି ସେମାନେ ଠକି ନ ଯାଆନ୍ତି। ସେମାନଙ୍କର ଉଦାସୀନତାର ସୁଯୋଗ ନେଇ ଲୋକସଭା ଓ ବିଧାନସଭା ଭଳି ପବିତ୍ର ସ୍ଥାନମାନଙ୍କରେ ମାଫିଆ, ଅପରାଧୀମାନେ ପ୍ରବେଶ କରୁଛନ୍ତି। ୨୦୧୪ ନିର୍ବାଚନରେ ଭୋଟରମାନେ ଦେଶର ବର୍ତ୍ତମାନ ପରିସ୍ଥିତିକୁ ସୁଧାରିବାକୁ ଯେଉଁ ବ୍ୟକ୍ତି ବା ଦଳ ଦେଶକୁ ସାମ୍ପ୍ରଦାୟିକତା, ବିଚ୍ଛିନ୍ନତାବାଦ ଓ ଦୁର୍ନୀତିରୁ ମୁକ୍ତ କରି ଦେଶକୁ ପ୍ରଗତି ପଥରେ ଆଗେଇ ନେବାକୁ ସହାୟକ ହେବେ, ସେଭଳି ବ୍ୟକ୍ତିମାନଙ୍କୁ ଜୟଯୁକ୍ତ କରାଇବେ ବୋଲି ଆଶା କରାଯାଏ।

*ସମାଜ - ୦୩.୦୪.୨୦୧୪*

# ସଂରକ୍ଷଣରୁ ସଂଘର୍ଷ

ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ମୁଖ୍ୟ ମୋହନ ଭାଗବତ 'ଅର୍ଗାନାଇଜର' ପତ୍ରିକାକୁ ଦେଇଥିବା ସାକ୍ଷାତ୍‌କାର ଅବସରରେ ଦେଶରେ ୧୯୫୧ ମସିହାଠାରୁ ସମ୍ବିଧାନ ପ୍ରଣୟନ ପରେ ବଳବତ୍ତର ରହିଥିବା ସଂରକ୍ଷଣ ନୀତିକୁ ସମୀକ୍ଷା କରିବାକୁ ପ୍ରସ୍ତାବ ଦେଇଛନ୍ତି । କ୍ଷୁଦ୍ର ରାଜନୈତିକ ଦୃଷ୍ଟିକୋଣରୁ ଉର୍ଦ୍ଧ୍ୱରେ ରହି ବୃହତ୍ତର ଜାତୀୟ ସ୍ୱାର୍ଥ କଥା ଚିନ୍ତା କଲେ ଏହା ଏକ ସ୍ୱାଗତଯୋଗ୍ୟ ପ୍ରସ୍ତାବ, କିନ୍ତୁ ଯେଉଁ ସମୟରେ ସେ ଏହି ସଂରକ୍ଷଣ ବ୍ୟବସ୍ଥାର ପୁନର୍ବିଚାରର ଆବଶ୍ୟକତା ଅଛି ବୋଲି କହିଲେ, ସେ ସମୟ ଚୟନ ଠିକ୍ ହୋଇନାହିଁ । ବିହାର ରାଜ୍ୟରେ ନିର୍ବାଚନ ଘୋଷଣା ହୋଇଥିବାରୁ ରାଜନୈତିକ ଦଳମାନେ ସେଠାରେ ଜନମତକୁ ପ୍ରଭାବିତ କରି କିଭଳି କ୍ଷମତା ହାସଲ କରିବେ ସେଥିପାଇଁ ବ୍ୟଗ୍ର, ତେଣୁ କାଳବିଳମ୍ବ ନ କରି ବିଜେପି ଦଳର ଜଣେ ପ୍ରଭାବଶାଳୀ ନେତା କେନ୍ଦ୍ରମନ୍ତ୍ରୀ ରବିଶଙ୍କର ପ୍ରସାଦ କହିଛନ୍ତି ଯେ, ବିଜେପି ଦଳ ଅନୁସୂଚିତ ଜାତି, ଜନଜାତି ଓ ଅନ୍ୟାନ୍ୟ ପଛୁଆବର୍ଗଙ୍କ ପାଇଁ ସଂରକ୍ଷଣ ବ୍ୟବସ୍ଥା ଚାଲୁ ରଖିବାକୁ ପ୍ରତିଶ୍ରୁତିବଦ୍ଧ । ସେ ସଂପର୍କରେ ସେମାନଙ୍କ ପାଇଁ ଥିବା ସଂରକ୍ଷଣ ବ୍ୟବସ୍ଥାକୁ ହଟାଇବା କିମ୍ବା କମାଇବାର କୌଣସି ପ୍ରଶ୍ନ ନାହିଁ, କିନ୍ତୁ ଦେଶର ବିକାଶର ସ୍ୱାଦ ଚାଖିପାରୁ ନ ଥିବା ଗରିବ ଶ୍ରେଣୀର ଯେକୌଣସି ଜାତିର ଲୋକଙ୍କ ପାଇଁ ସରକାର କିଭଳି ପଦକ୍ଷେପ ନେଲେ ସେମାନଙ୍କର ଉନ୍ନତି ହେବ ସେ ବିଷୟରେ ଜାତୀୟସ୍ତରରେ ଆଲୋଚନା ହେଲେ ଭାଜପା ତାହାକୁ ସ୍ୱାଗତ କରିବ । ଦେଶରେ ସଂରକ୍ଷଣକୁ ରାଜନୈତିକ ଉଦ୍ଦେଶ୍ୟରେ ବ୍ୟବହାର କରାଯାଉଛି ବୋଲି ମୋହନ ଭାଗବତ ଅଭିଯୋଗ ଆଣିଛନ୍ତି । ସେ ଯେଉଁ ମତ ଦେଇଛନ୍ତି, ତାହା ଭାରତର ସାଧାରଣ ଜନତାଙ୍କ ମତ । ସେ ଦେଶରେ ସର୍ବତ୍ର ଆର୍.ଏସ୍.ଏସ୍‌ର ପ୍ରଚାରକ ଭାବେ ବୁଲିବୁଲୁଥିଲେ ଓ ଲୋକଙ୍କ ନାଡ଼ି ଚିପି ଏକଥା କହିଛନ୍ତି । ଭାଗବତଙ୍କ ମତକୁ ଶିବସେନା ସର୍ବାନ୍ତକରଣରେ ସମର୍ଥନ ଜଣାଇଛି ।

ସମ୍ବିଧାନର ପ୍ରଣେତା ବାବାସାହେବ ଆମ୍ବେଦକର ସଂରକ୍ଷଣ ଲାଗୁ ହେବାର ୧୦ ବର୍ଷ ପରେ ଏହାର ସମୀକ୍ଷା କରାଯିବା ଉଚିତ୍ ବୋଲି କହିଥିଲେ; କିନ୍ତୁ ଏହି

ଆରକ୍ଷଣ ବ୍ୟବସ୍ଥାକୁ ପ୍ରତି ୧୦ ବର୍ଷରେ ସମୀକ୍ଷା କରାନଯାଇ ପୁନଃପ୍ରଚଳନ କରାଯାଉଛି । ମୋହନ ଭାଗବତ ଆମ୍ବେଦକରଙ୍କ ମତକୁ ୬୫ ବର୍ଷ ପରେ ଦେଶବାସୀଙ୍କୁ ମନେପକାଇ ଦେଇଛନ୍ତି । ଭୋଟ ବ୍ୟାଙ୍କ ରାଜନୀତିକୁ ଦୃଷ୍ଟିରେ ରଖି କୌଣସି ରାଜନୈତିକ ଦଳ ସଂରକ୍ଷଣ ବ୍ୟବସ୍ଥାର ସମୀକ୍ଷା ଚାହୁଁନାହାନ୍ତି, ବିରୁଦ୍ଧାଚରଣ ତ ଦୂରର କଥା । ପୂର୍ବତନ କେନ୍ଦ୍ରମନ୍ତ୍ରୀ ତଥା କଂଗ୍ରେସ ନେତା ମନୀଷ ତିୱାରୀ ମନ୍ତବ୍ୟ ଦେଇଛନ୍ତି ଯେ, ଏକବିଂଶ ଶତାବ୍ଦୀରେ ଜାତିଭିତ୍ତିରେ ସଂରକ୍ଷଣ ବ୍ୟବସ୍ଥା ଚାଲୁ ରହିବା ଉଚିତ୍ ନୁହେଁ ବରଂ ଆର୍ଥିକ ସ୍ଥିତି ଅନୁଯାୟୀ ସଂରକ୍ଷଣ କରାହେବା ଉଚିତ୍ । ୟୁପିଏ ସରକାରର ପୂର୍ବତନ ମନ୍ତ୍ରୀ ଜିତିନ ପ୍ରସାଦ ମଧ୍ୟ ଅଗଷ୍ଟ ତୃତୀୟ ସପ୍ତାହରେ ଦେଶର ସଂରକ୍ଷଣ ବ୍ୟବସ୍ଥାକୁ ଅତି ପଛୁଆ ଜାତି ଏବଂ ଉଚ୍ଚଜାତିର ଗରିବଙ୍କ ପାଇଁ ସଂରକ୍ଷଣ କରିବାକୁ ପ୍ରସ୍ତାବ ରଖିଥିଲେ । ବର୍ତ୍ତମାନର ଯେଉଁ ସାଙ୍ଘାତିକ ଜାତିଆଣ ଭେଦଭାବ ସୃଷ୍ଟି ହୋଇଛି, ତାହା ୧୯୮୯ରେ ଭି.ପି ସିଂହ ମଣ୍ଡଳ କମିଶନର ରିପୋର୍ଟକୁ ଗ୍ରହଣ କରାଇଥିବାର କୁଫଳ ସମସ୍ତଙ୍କୁ ଭୋଗିବାକୁ ପଡୁଛି । ଜାତିଭିତ୍ତିରେ ସମାଜରେ ବିଭେଦ ସୃଷ୍ଟି କରି ପରିବାରବାଦ ଓ ଭ୍ରଷ୍ଟାଚାରରେ ଲିପ୍ତ ରହି ନିନ୍ଦିତ ହୋଇଥିବା ଲାଲୁପ୍ରସାଦ ଯାଦବ ସଂରକ୍ଷଣ ବ୍ୟବସ୍ଥାର ସମୀକ୍ଷା ପାଇଁ କହିଥିବା ମୋହନ ଭାଗବତ ଓ ଏ ବାବଦରେ ନିଜର ମତବ୍ୟକ୍ତ କରିନଥିବା ନରେନ୍ଦ୍ର ମୋଦିଙ୍କୁ କଡ଼ା ଭାଷାରେ ସମାଲୋଚନା କରିଛନ୍ତି । ଦଳିତବର୍ଗ ସହିତ ସବୁ ଦୁର୍ବଳ ଶ୍ରେଣୀ ଲୋକଙ୍କର ଉନ୍ନତି ଚାହୁଁଥିବା ମୋହନ ଭାଗବତ ଓ ଆର୍.ଏସ୍.ଏସ୍ ଅଯଥାରେ କଟୁ ସମାଲୋଚନାର ଶିକାର ହୋଇଛନ୍ତି ।

୨୦୧୪ ମସିହା ପାର୍ଲିଆମେଣ୍ଟ ନିର୍ବାଚନ ଘୋଷଣାର ଠିକ୍ ପୂର୍ବରୁ ୟୁପିଏ ସରକାର ଜାଠ ଜାତିକୁ ଓବିସି ତାଲିକାଭୁକ୍ତ କରିଦେଇଥିବା କଥା ଦେଶବାସୀଙ୍କୁ ଆଶ୍ଚର୍ଯ୍ୟ କରିଥିଲା, କିନ୍ତୁ ମାନ୍ୟବର ସୁପ୍ରିମକୋର୍ଟ ୟୁପିଏର ଏହି ସଂରକ୍ଷଣ ନିର୍ଦ୍ଦେଶନାମାକୁ ନାକଚ଼ କରିଦେଇଛନ୍ତି ଏବଂ କେବଳ ଜାତି ଆଧାରରେ ପଛୁଆବର୍ଗ ଘୋଷଣା କରାଯାଇପାରିବ ନାହିଁ ବୋଲି ନିଷ୍ପତ୍ତି ଶୁଣାଇଛନ୍ତି । ସୁପ୍ରିମକୋର୍ଟଙ୍କ ମତରେ ରାଜନୀତି କ୍ଷେତ୍ରରେ ସୁସଂଗଠିତ ଜାଠ ଜାତି ଏତେ ପଛୁଆ ନୁହଁନ୍ତି ଯେ, ସେମାନଙ୍କୁ ଓବିସି ତାଲିକା ଅନ୍ତର୍ଭୁକ୍ତ କରାଯିବ ।

ଭାରତୀୟ ସମ୍ବିଧାନରେ ନାଗରିକମାନଙ୍କୁ ସମାନ ଅଧିକାର ଦିଆଯାଇଛି ଓ ଆଇନ୍ ଆଗରେ ସମସ୍ତ ନାଗରିକ ସମାନ ବୋଲି ବ୍ୟବସ୍ଥା ଅଛି, କିନ୍ତୁ ସମ୍ବିଧାନରେ

ମଧ୍ୟ ତଫସିଲଭୁକ୍ତ ଜାତି ଓ ଜନଜାତିର ଲୋକମାନଙ୍କୁ ୧୦ ବର୍ଷ ପାଇଁ ସଂରକ୍ଷଣ ସୁବିଧା ଦିଆଯାଇଥିଲା। ସଂରକ୍ଷଣର ସୁବିଧା ବଳରେ ଦଳିତ ଓ ପତିତ ବର୍ଗର ଲୋକମାନେ ଜାତୀୟ ମୁଖ୍ୟସ୍ରୋତରେ ସାମିଲ ହୋଇଗଲାପରେ ଏହି ବ୍ୟବସ୍ଥାକୁ ରଦ୍ଦ କରାଯିବାର ସାମ୍ବିଧାନିକ ବ୍ୟବସ୍ଥା ରହିଛି। ଯେଉଁମାନେ ସଂରକ୍ଷଣ ସୁବିଧା ବଳରେ ସାମାଜିକ, ଆର୍ଥିକ ଓ ରାଜନୈତିକ ସ୍ତରରେ ଅନ୍ୟମାନଙ୍କ ସହିତ ସମାନ ହୋଇପାରିଛନ୍ତି, ସେମାନଙ୍କୁ ସଂରକ୍ଷଣ ସୁବିଧାରୁ ବଞ୍ଚିତ କରିବା ପାଇଁ 'କ୍ରିମି ଲେୟର୍' ପରି ଏକ ବ୍ୟବସ୍ଥା ପ୍ରଚଳିତ ଅଛି। ୨୦୧୩ ମସିହାରେ 'ଦ ଇକୋନୋମିଷ୍ଟ' ପତ୍ରିକାରେ ପ୍ରକାଶିତ ଏକ ତଥ୍ୟରୁ ଜଣାଯାଏ ଯେ, ୧୯୬୫ ମସିହାରେ ଏସ୍‌ସି-ଏସ୍‌ଟି ବର୍ଗର ଗ୍ରୁପ୍- 'ଏ' ସିଭିଲ୍ ସର୍ଭେଣ୍ଟଙ୍କ ସଂଖ୍ୟା ୧.୬ ପ୍ରତିଶତ ଥିବାବେଳେ ଏହା ୨୦୧୧ ମସିହା ସୁଦ୍ଧା ବୃଦ୍ଧି ପାଇ ୧୧.୫ ପ୍ରତିଶତରେ ପହଞ୍ଚିଛି ଏବଂ ଗ୍ରୁପ୍- 'ବି' ଓ 'ସି'ରେ ମଧ୍ୟ ଏମାନଙ୍କ ସଂଖ୍ୟା ଯଥେଷ୍ଟ ଅଧିକ। ତଥାପି ସେମାନଙ୍କ ପିଲାମାନେ ସଂରକ୍ଷଣର ସମସ୍ତ ସୁବିଧା ପାଉଛନ୍ତି।

ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ଜଣେ ବୟୋଜ୍ୟେଷ୍ଠ ନେତା ଏମ୍.ଜି. ବୈଦ୍ୟ ଚଳିତବର୍ଷ ଅଗଷ୍ଟ ଶେଷ ସପ୍ତାହରେ ସମ୍ବାଦପତ୍ରକୁ ଏକ ବିବୃତିରେ କହିଛନ୍ତି ଯେ, ଭାରତରେ ଜାତିଭିତ୍ତିକ ସଂରକ୍ଷଣ ପରିବର୍ତ୍ତେ ଅର୍ଥନୈତିକ ମାନଦଣ୍ଡ ଆଧାରରେ ସଂରକ୍ଷଣ ଲାଗୁହେବା ବିଧେୟ। ଶିକ୍ଷା ଓ ଚାକିରିରେ ପ୍ରବେଶ ସମୟରେ ସଂରକ୍ଷଣ ବ୍ୟବସ୍ଥାକୁ କେହି ଆପତ୍ତି ଉଠାଉ ନ ଥିଲେ; କିନ୍ତୁ ପଦୋନ୍ନତି କ୍ଷେତ୍ରରେ ଏହା ଲାଗୁ ହେଲା ପରେ ଏକ ବିଷମ ପରିସ୍ଥିତି ସୃଷ୍ଟି ହୋଇଛି। ସୁପ୍ରିମକୋର୍ଟ ପଦୋନ୍ନତି କ୍ଷେତ୍ରରେ ସଂରକ୍ଷଣ ସୁବିଧା ଦିଆଯାଇପାରିବ ନାହିଁ ବୋଲି ସ୍ପଷ୍ଟ ମତ ଦେଇଛନ୍ତି। ଦେଶର ବହୁ ରାଜ୍ୟରେ ସୁପ୍ରିମକୋର୍ଟଙ୍କ ଏହି ନିଷ୍ପତ୍ତିକୁ ମାନି ସରକାରୀ କର୍ମଚାରୀମାନଙ୍କୁ ପଦୋନ୍ନତି ଦିଆଯାଉଅଛି, କିନ୍ତୁ ଆମ ରାଜ୍ୟ ଓଡ଼ିଶାରେ ଏବେବି ପଦୋନ୍ନତିରେ ସଂରକ୍ଷଣ ସୁବିଧା ଲାଗୁ ହେଉଛି। ପଦୋନ୍ନତି କ୍ଷେତ୍ରରେ ସଂରକ୍ଷଣ ବ୍ୟବସ୍ଥା ଅତ୍ୟନ୍ତ ସାଂଘାତିକ ପରିସ୍ଥିତି ସୃଷ୍ଟି କରିଛି। ଏବେ ତ ଦେଶରେ ଦଳିତ, ଜନଜାତି, ପଛୁଆବର୍ଗ, ଉଚ୍ଚବର୍ଗର ବ୍ୟକ୍ତିମାନଙ୍କ ମଧ୍ୟରେ ବିଭିନ୍ନ କ୍ଷେତ୍ରରେ ସଂରକ୍ଷଣ ଓ ଧର୍ମୀୟ ଭେଦଭାବକୁ ନେଇ ଶୀତଳଯୁଦ୍ଧ ଜାରି ରହିଛି। ବହୁ ସମୟରେ ଛୋଟ ଛୋଟ ଘଟଣାର ଆଧାରରେ ସଂଘର୍ଷମାନ ସଂଗଠିତ ହୋଇ ରକ୍ତପାତ ଓ ଜୀବନହାନି ଘଟୁଛି। କ୍ଷମତା ଜାବୁଡ଼ି ଧରିବା ମୋହରେ ରାଜନୈତିକ ନେତାମାନେ ଦେଶର ସ୍ୱାର୍ଥକୁ ପଛରେ ପକାଇ

ସଂରକ୍ଷଣ ବ୍ୟବସ୍ଥା କ୍ଷତିକାରକ ଜାଣି ମଧ୍ୟ ଏହାକୁ ଚଳାଇ ରଖିଛନ୍ତି। ୧୯୯୨ ମସିହାରେ ଏକ ରାୟରେ ସୁପ୍ରିମକୋର୍ଟ ପ୍ରକାଶ କରିଥିଲେ ଯେ, କୌଣସି ପରିସ୍ଥିତିରେ ସଂରକ୍ଷଣ ହାର ୫୦ ପ୍ରତିଶତ ଅତିକ୍ରମ କରିବା ସମୀଚୀନ ନୁହେଁ, କିନ୍ତୁ ଏହି ଆଦେଶକୁ ଭ୍ରୂକ୍ଷେପ ନ କରି ରାଜସ୍ଥାନର ବସୁନ୍ଧରା ସରକାର ସେପ୍ଟେମ୍ବର ୨୨ ତାରିଖରେ ଗୁଜ୍ଜର ଜାତି ପାଇଁ ୫ ପ୍ରତିଶତ ଓ ଅର୍ଥନୀତିକ ଦୁର୍ବଳ ଶ୍ରେଣୀ ପାଇଁ ୧୪ ପ୍ରତିଶତ (ମୋଟ୍ ୧୯ ପ୍ରତିଶତ) ସଂରକ୍ଷଣ ବ୍ୟବସ୍ଥା ଲାଗୁ କରିବା ଦ୍ୱାରା ରାଜସ୍ଥାନରେ ଆରକ୍ଷଣ ୬୮ ପ୍ରତିଶତକୁ ବୃଦ୍ଧି ପାଇଛି। ଏହା ପୂର୍ବରୁ ୧୯୯୪ ମସିହାରେ ତାମିଲନାଡୁ ସରକାର ସ୍ଥାନ ସଂରକ୍ଷଣ ହାରକୁ ୬୮ ପ୍ରତିଶତକୁ ବଢ଼ାଇ ଦେଇଥିଲେ ଏବଂ ଏହି କାର୍ଯ୍ୟକୁ ବୈଧତା ପ୍ରଦାନ ପାଇଁ ସଂସଦରେ ୭୬ତମ ସଂଶୋଧନ ପାରିତ କରାଯାଇ ତାମିଲନାଡୁ ସରକାରଙ୍କ ନିଷ୍ପତ୍ତିକୁ ସମ୍ବିଧାନର ୯ମ ସିଡ୍ୟୁଲରେ ଅନ୍ତର୍ଭୁକ୍ତ କରାଯାଇଥିଲା, ଯାହାଦ୍ୱାରା ଏହି ସଂରକ୍ଷଣ ବୃଦ୍ଧି ନ୍ୟାୟିକ ସମୀକ୍ଷାରୁ ବାଦ୍ ପଡ଼ିଲା। ବସୁନ୍ଧରା ମଧ୍ୟ ତାଙ୍କ ନିଷ୍ପତ୍ତି ସମ୍ବିଧାନର ୯ମ ସିଡ୍ୟୁଲରେ ସ୍ଥାନ ଦେବାପାଇଁ ଦାବି କଲେଣି।

ଦେଶର ସବୁ ରାଜନୈତିକ ଦଳ ଏବେ ଜାତି ଓ ଧର୍ମଭିତ୍ତିକ ରାଜନୀତିରେ ବିଶ୍ୱାସ କରୁଛନ୍ତି, ତେଣୁ ଆଶଙ୍କା ହେଉଛି ଯେ ଦେଶର ସଂରକ୍ଷଣ ନୀତିରେ ଅଂକୁଶ ଲଗାଇବା କୌଣସି ସରକାରଙ୍କ ପକ୍ଷେ ସମ୍ଭବ ହେବନାହିଁ। ଶିକ୍ଷା ଓ ଚାକିରି କ୍ଷେତ୍ରରେ ସୁବିଧା ସୁଯୋଗକୁ ସବୁ ଜାତି ଅକ୍ତିଆର କରିବାକୁ ଚେଷ୍ଟା କରିବ। ଏପରିକି ବ୍ରାହ୍ମଣମାନେ ମଧ୍ୟ କେରଳରେ ସେମାନଙ୍କ ସଂଖ୍ୟା କେରଳ ଜନସଂଖ୍ୟାର ୪ ପ୍ରତିଶତ ହୋଇଥିବାରୁ ସରକାରଙ୍କୁ ସେମାନଙ୍କ ପାଇଁ ସଂରକ୍ଷଣ ବ୍ୟବସ୍ଥା କରାଯାଉ ବୋଲି ଦାବି କଲେଣି। ପଟେଲ ଜାତିକୁ ଓବିସି ତାଲିକାଭୁକ୍ତ କରାଯିବାକୁ ଗୁଜୁରାଟରେ ୨୨ ବର୍ଷୀୟ ଯୁବକ ହାର୍ଦ୍ଦିକ ପଟେଲଙ୍କ ନେତୃତ୍ୱରେ ଯେଉଁ ଆନ୍ଦୋଳନ ଚାଲିଛି, ତାହା ଦେଶର ସମସ୍ତଙ୍କୁ ହତଚକିତ କରିଛି। ଏହି ଭୟାବହ ଆନ୍ଦୋଳନରେ ୯ ଜଣ ବ୍ୟକ୍ତି ପ୍ରାଣ ହରାଇଛନ୍ତି ଓ ଶହ ଶହ କୋଟି ଟଙ୍କାର ଧନସମ୍ପତ୍ତି ହାନି ହୋଇଛି। ସେ ଚାହାଁନ୍ତି ପଟେଲମାନେ ସଂରକ୍ଷଣର ସୁବିଧା ପାଆନ୍ତୁ ନଚେତ୍ ଏ ବ୍ୟବସ୍ଥାର ଉଚ୍ଛେଦ ହୋଇ ଜାତି, ଧର୍ମ, ନିର୍ବିଶେଷରେ ଆର୍ଥିକ ଅନଗ୍ରସର ଲୋକଙ୍କ ପାଇଁ ସଂରକ୍ଷଣ ବ୍ୟବସ୍ଥା କରାଯାଇ ସାମାଜିକ ନ୍ୟାୟ ପ୍ରତିଷ୍ଠା ହେଉ। ତାଙ୍କର ନାରା 'ଆମକୁ ଆରକ୍ଷଣ ନାହିଁ ତ କାହାକୁ ନାହିଁ'।

କର୍ମନିଯୁକ୍ତି କ୍ଷେତ୍ରରେ ଯୋଗ୍ୟତା ଏକମାତ୍ର ମାପକାଠି ହେବା ଉଚିତ୍। ସଂରକ୍ଷଣ ସବୁ ସମୟରେ ଯୋଗ୍ୟତାର କଣ୍ଠରୋଧ କରୁଛି। ଏହା ପ୍ରଶାସନକୁ ଦୁର୍ବଳ କରିଦେଉଛି। ଏଠାରେ ଉତ୍ତରପ୍ରଦେଶର ପୋଲିସ୍ ବାହିନୀରେ ଓବିସି ତାଲିକାଭୁକ୍ତ ଯାଦବମାନଙ୍କୁ ବହୁସଂଖ୍ୟାରେ ନିଯୁକ୍ତି ଦେବାରୁ କିଭଳି ସେ ରାଜ୍ୟରେ ପୋଲିସର ଅପାରଗତା ଚରମ ସୀମାରେ ପହଞ୍ଚିଛି ଓ ଚୋରି, ଡକାୟତି, ଧର୍ଷଣ, ଅପହରଣ ବଢ଼ିବଢ଼ି ଜନଜୀବନକୁ ବ୍ୟତିବ୍ୟସ୍ତ କରିଦେଉଛି, ତାହାକୁ ଉଦାହରଣରୂପେ ନିଆଯାଇପାରେ। ସଂରକ୍ଷଣ ବ୍ୟବସ୍ଥା ଯଦି ଚାଲୁରହେ ଏବଂ ସବୁ ରାଜନୈତିକ ଦଳ ଏକାଠି ମିଶି ଏହି ବ୍ୟବସ୍ଥାର ସମୀକ୍ଷା କରି ସମାଧାନ ନ କରନ୍ତି, ତେବେ ଗୃହଯୁଦ୍ଧର ସମ୍ଭାବନାକୁ ଏଡ଼ାଇ ଦେଇହେବନାହିଁ।

*ସମାଜ - ୨୮.୧୦.୨୦୧୫*

# ନ୍ୟାୟ ଓ ନ୍ୟାୟପାଳିକା

୩ ଡ଼ିସେମ୍ବର ୨୦୧୫ ମସିହାରେ ଭାରତର ସର୍ବୋଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ଭାବେ ଶପଥ ଗ୍ରହଣ କରିଥିଲେ ତିରଥ ସିଂ ଠାକୁର। ଶପଥ ଗ୍ରହଣର ଦୁଇଦିନ ପରେ ନିଜ ବାସଭବନରେ ସାମ୍ବାଦିକଙ୍କ ସହ କଥାବାର୍ତ୍ତା ବେଳେ ସେ ଯେଉଁ କେତେ ପଦ କଥା କହିଥିଲେ, ତାହା ଦେଶବାସୀଙ୍କ ମନରେ ଅନେକ ଆଶ୍ୱସ୍ତି ସୃଷ୍ଟି କରିଥିଲା। ନ୍ୟାୟପାଳିକାଗୁଡ଼ିକ କର୍ମଚଞ୍ଚଳ ହୋଇ ସାଧାରଣ ଲୋକମାନଙ୍କର ମାମଲାଗୁଡ଼ିକ ଫଇସଲା ତ୍ୱରାନ୍ୱିତ ହେବ ଏ କଥାରେ ବିଶ୍ୱାସ ସ୍ଥାପନ କରିଥିଲେ। ତିରଥ ସିଂ ଠାକୁର କହିଥିଲେ ଯେ, ଯେପର୍ଯ୍ୟନ୍ତ ନ୍ୟାୟପାଳିକା ସ୍ୱାଧୀନ ଅଛି, ସେ ପର୍ଯ୍ୟନ୍ତ ସମ୍ବିଧାନର ପରିସର ମଧ୍ୟରେ ଦେଶର ଜନସାଧାରଣଙ୍କୁ ଅନ୍ୟାୟ, ଅତ୍ୟାଚାର, ଅସମାନତା, ଅସହିଷ୍ଣୁତା ଓ ଅବିଚାର ସହ୍ୟ କରିବାକୁ ପଡ଼ିବ ନାହିଁ, କିନ୍ତୁ ସେ ମୁଖ୍ୟ ବିଚାରପତି ଭବେ ଦାୟିତ୍ୱ ଗ୍ରହଣ କରିବାର ୬ ମାସ ପରେ ଦେଶର ସ୍ଥିତିକୁ ଭଲ ଭାବରେ ବୁଝିପାରିଛନ୍ତି ।

ନରେନ୍ଦ୍ର ଦାମୋଦର ଦାସ ମୋଦି ୨୬ ମେ' ୨୦୧୪ ମସିହାରେ ଭାରତର ପ୍ରଧାନମନ୍ତ୍ରୀ ଭାବରେ ଶପଥ ଗ୍ରହଣ କଲା ପରେ ସବୁ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ବିଶ୍ୱାସ ଜନ୍ମି ଥିଲା ଯେ, ଭାରତୀୟ ଜନତା ପାର୍ଟି ଯେଉଁ ନିର୍ବାଚନ ପ୍ରତିଶ୍ରୁତିଗୁଡ଼ିକ ଦେଇଛି, ତାହା ଅବଶ୍ୟ ପୂରଣ କରିବ। ବିଜେପି ନିର୍ବାଚନ ଇସ୍ତାହାରର ୧୨ ପୃଷ୍ଠାରେ ଉଲ୍ଲେଖ ଥିଲା ଯେ, କ୍ଷମତାକୁ ଆସିଲେ ବିଚାର ବିଭାଗର ସଂସ୍କାର ପାଇଁ ଉଚ୍ଚପ୍ରାଥମିକତା ଦିଆଯିବ, କିନ୍ତୁ ତାହା ହୋଇନାହିଁ। ବ୍ରିଟିଶ ଶାସନ ସମୟରେ ପ୍ରଣୀତ ଅନେକ ଆଇନ୍ ଅକାମୀ ହୋଇପଡ଼ିଥିଲେ ମଧ୍ୟ ବଳବତ୍ତର ରହିଛି। ତେଣୁ ସେଗୁଡ଼ିକ ଗୋଟି ଗୋଟି କରି ବାଦ ଦେବାକୁ ପଡ଼ିବ ବୋଲି ମଧ୍ୟ ସେ କହିଥିଲେ। କିନ୍ତୁ ତାହା କାର୍ଯ୍ୟକାରୀ ହୋଇନାହିଁ। ଆଜିପର୍ଯ୍ୟନ୍ତ ସେ କଂଗ୍ରେସ ସରକାର ହେଉ, ଜନତା ସରକାର ହେଉ ବା ୟୁପିଏ ସରକାର ହେଉ ବା ଏନ୍‌ଡ଼ିଏ ସରକାର ବିଚାର ବିଭାଗକୁ ସୁଦୃଢ଼ କରିବାକୁ ଚେଷ୍ଟା କରିନାହାଁନ୍ତି। କାରଣ ଯଦି ଏହି ବିଭାଗର ଅସୁବିଧାଗୁଡ଼ିକୁ ଦୂର କରାଯାଏ ଦୁର୍ନୀତି ଓ ବିଭିନ୍ନ ଅପରାଧରେ ଜଡ଼ିତ ଥିବା ବହୁମନ୍ତ୍ରୀ,

ରାଜନେତା ଓ ପ୍ରଶାସକମାନଙ୍କୁ ନିଜର କୁକର୍ମ ଯୋଗୁଁ ଦଣ୍ଡିତ ହେବାକୁ ପଡ଼ିବ। ଗଣତନ୍ତ୍ରର ତିନୋଟି ସ୍ତମ୍ଭ କାର୍ଯ୍ୟପାଳିକା, ବ୍ୟବସ୍ଥାପିକା ଓ ନ୍ୟାୟପାଳିକା ମଧ୍ୟରୁ ନ୍ୟାୟପାଳିକା ଅଧିକ ବିଶ୍ୱାସନୀୟ, କିନ୍ତୁ ଭାରତର ନ୍ୟାୟପାଳିକା ପ୍ରତି ଲୋକଙ୍କର ବିଶ୍ୱାସ ଧୀରେ ଧୀରେ ଦୋହଲିବାରେ ଲାଗିଛି। କାରଣ ନ୍ୟାୟପାଳିକା ସୁଚାରୁରୂପେ ତା'ର କାର୍ଯ୍ୟ ତୁଲାଇବାରେ ସକ୍ଷମ ହୋଇପାରୁନି। ଏହିକଥା ମଧ୍ୟ ସୁପ୍ରିମ୍‌କୋର୍ଟର ଗୋଟିଏ ଖଣ୍ଡପୀଠ ୧୨ ଜାନୁଆରୀ ୨୦୧୨ରେ କହିଥିଲେ ଯେ, ଜନସାଧାରଣଙ୍କ ଆସ୍ଥା ଓ ବିଶ୍ୱାସ ବିଚାରାଳୟ ପ୍ରତି ଦ୍ରୁତ ଗତିରେ ହ୍ରାସ ପାଉଛି ଯାହାକି ଦେଶର ଗଣତନ୍ତ୍ର ପ୍ରତି ଏକ ବିପଦ। ବିଶ୍ୱବ୍ୟାଙ୍କ ତାଙ୍କ ମନ୍ତବ୍ୟରେ କହିଛନ୍ତି ଯେ, "ଭାରତବର୍ଷରେ କୋର୍ଟଗୁଡ଼ିକର ଅପାରଗତା ବିଷୟରେ କୁଖ୍ୟାତି ଥିଲେ ମଧ୍ୟ ଅନ୍ତତଃ ଏକ ସ୍ୱାଧୀନ ନ୍ୟାୟପାଳିକାର କାର୍ଯ୍ୟକାରିତା ବିଷୟରେ କେହି ପ୍ରଶ୍ନ କରି ନାହାଁନ୍ତି। ନ୍ୟାୟପାଳିକା କାର୍ଯ୍ୟପାଳିକାର ଦୁର୍ନୀତି ରୋକିବାରେ ଏକ ସଶକ୍ତ ଅସ୍ତ୍ର ବୋଲି କୁହାଯାଏ; କିନ୍ତୁ ଲୋକଙ୍କ ଅନୁଭୂତି ଏହାକୁ କେବଳ ଏକ ଆଦର୍ଶ ବୋଲି ବିବେଚନା କରୁଛି। କାରଣ ବର୍ତ୍ତମାନ ନ୍ୟାୟପାଳିକାରେ ଦୁର୍ନୀତି କେବଳ ବିଚାରପତିମାନଙ୍କୁ ଉତ୍କୋଚ ଦେବାରେ ସୀମିତ ରହିନାହିଁ। ତଳସ୍ତରର କର୍ମଚାରୀମାନଙ୍କୁ ବି ଉତ୍କୋଚ ଦେଇ କେସ୍‌ଟି କେମିତି ବିଚାର ହେବାରେ ଡେରି ହେବ ସେଥିପାଇଁ ଚେଷ୍ଟା କରାଯାଉଛି।"

ନ୍ୟାୟପାଳିକାର ବୋଝ ଅବିଶ୍ୱାସନୀୟ ଭାବେ ବଢ଼ିବାରେ ଲାଗିଛି। ବିଭିନ୍ନ କୋର୍ଟରେ ମାମଲା ମଧ୍ୟରୁ ଅଧିକାଂଶ ସରକାରଙ୍କ ଦ୍ୱାରା କିମ୍ବା ସରକାରଙ୍କ ନିଷ୍ପତ୍ତି ବିରୁଦ୍ଧରେ ଦାୟର ହେଉଛି। ଯେଉଁମାନଙ୍କର କେସ୍ ବିଚାର ନ ହୋଇ ବର୍ଷ ବର୍ଷ ଧରି ପଡ଼ିରହୁଛି, ସେମାନେ ବିଳମ୍ବିତ ନ୍ୟାୟ ପ୍ରକ୍ରିୟାରେ ହନ୍ତସନ୍ତ ହେଉଛନ୍ତି ଓ ସେଥିପାଇଁ ନ୍ୟାୟାଳୟକୁ ଦାୟୀ କରୁଛନ୍ତି। ବର୍ତ୍ତମାନ ସୁପ୍ରିମକୋର୍ଟରେ ପ୍ରାୟ ୬୫ ହଜାର ମାମଲା ଏବଂ ହାଇକୋର୍ଟ ସମେତ ଅନ୍ୟ ଅଦାଲତମାନଙ୍କରେ ପ୍ରାୟ ୩ କୋଟି ମାମଲା ବିଚାର ନ ହୋଇ ପଡ଼ିରହିଛି। ପୃଥିବୀର ଦ୍ୱିତୀୟ ବୃହତ୍ ଜନବହୁଳ ରାଷ୍ଟ୍ର ଭାରତରେ ବିଚାରାଳୟ ଓ ବିଚାରପତିଙ୍କ ସଂଖ୍ୟା ଆବଶ୍ୟକତା ଦୃଷ୍ଟିରୁ ବହୁତ କମ୍ ହୋଇଥିବାରୁ କେସ୍‌ଗୁଡ଼ିକ ବିଚାର ନ ହୋଇ ବର୍ଷ ବର୍ଷ ଧରି ପଡ଼ିରହୁଛି। ବକେୟା ମାମଲାଗୁଡ଼ିକୁ ନ୍ୟାୟାଳୟଗୁଡ଼ିକର ଛୁଟି କମାଇ କିମ୍ବା ସ୍ୱତନ୍ତ୍ର ଅଦାଲତ ବସାଇ ଫଇସଲା କରିଦେବା ଲୋକଙ୍କ ଦ୍ୱାରା ଆଦୃତ ହୁଅନ୍ତା।

୨୪ ଏପ୍ରିଲ ୨୦୧୬ରେ ଅନୁଷ୍ଠିତ ମୁଖ୍ୟମନ୍ତ୍ରୀ ଓ ମୁଖ୍ୟ ବିଚାରପତିମାନଙ୍କର ସମ୍ମିଳନୀରେ ନ୍ୟାୟାଳୟ ସମ୍ମୁଖୀନ ହେଉଥିବା ବିଷୟଗୁଡ଼ିକୁ ଉଲ୍ଲେଖ କରୁଥିଲା ବେଳେ ମୁଖ୍ୟ ବିଚାରପତି ତିରଥ ସିଂ ଠାକୁର ନିଜ ଭାବାବେଗକୁ ସମ୍ଭାଳି ନ ପାରି କାନ୍ଦି ପକାଇଥିଲେ। ସେ ମାମଲାଗୁଡ଼ିକର ଠିକ୍ ସମୟରେ ବିଚାର ହୋଇପାରୁନଥିବା ବା ବିଚାରରେ ଅହେତୁକ ବିଳମ୍ବ ଯୋଗୁ ଦୋଷୀ ସାବସ୍ତ୍ୟ ନ ହୋଇ ମଧ୍ୟ ଜେଲଖାନାରେ ଲକ୍ଷ ଲକ୍ଷ ଦରିଦ୍ର ଜନସଧାରଣ ବର୍ଷ ବର୍ଷ ଧରି ବନ୍ଦୀ ଅବସ୍ଥାରେ ଅନନ୍ୟୋପାୟ ହୋଇ ନିରବରେ ଲୁହ ଗଡ଼ାଉଥିବା ଲୋକମାନଙ୍କ କଥା ଭାବି ଭାବବିହ୍ୱଳ ହୋଇଯାଇଥିଲେ।

୧୯୮୭ ମସିହାରେ ଆଇନ୍ କମିଶନ ସୁପାରିଶ କରିଥିଲେ ଯେ, ପ୍ରତି ଦଶ ଲକ୍ଷ ଲୋକଙ୍କ ପାଇଁ ୫୦ ଜଣ ବିଚାରପତି ରହିବା ଆବଶ୍ୟକ। ଏବେ ୨୯ ବର୍ଷ ପରେ ଦଶ ଲକ୍ଷ ଲୋକଙ୍କ ପାଇଁ ମାତ୍ର ୧୫ ଜଣ ବିଚାରପତି ଅଛନ୍ତି। ମୁଖ୍ୟ ବିଚାରପତି ଟି.ଏସ୍. ଠାକୁର ସରକାରଙ୍କୁ ୪୦ ହଜାର ବିଚାରପତି ନିଯୁକ୍ତି ପାଇଁ ପ୍ରସ୍ତାବ ଦେଇଥିଲେ; କିନ୍ତୁ କେନ୍ଦ୍ର ଆଇନମନ୍ତ୍ରୀ କେ. ସଦାନନ୍ଦ ଗଉଡ଼ ଏହି ପ୍ରସ୍ତାବଟିକୁ ମଞ୍ଜୁରୀ ଦେଇନାହାଁନ୍ତି। ଏନ୍.ଡ଼ି.ଏ ସରକାରର ଦୁଇ ବର୍ଷ ପୂର୍ତ୍ତି ଅବସରରେ ଆଇନ ମନ୍ତ୍ରଣାଳୟ ତରଫରୁ ପ୍ରକାଶିତ ଏକ ରିପୋର୍ଟରେ ଉଲ୍ଲେଖ କରାଯାଇଛି ଯେ, ବର୍ତ୍ତମାନ ଦେଶରେ ଏକୋଇଶ ହଜାର ପାଞ୍ଚଶହ ଅଠାନବେ (୨୧୫୯୮) ଜଣ ବିଚାରପତି ଅଛନ୍ତି, କିନ୍ତୁ ଦେଶରେ ୭୦ ହଜାର ବିଚାରପତିଙ୍କ ଆବଶ୍ୟକତା ଥିବା କୁହାଯାଉଛି। ବିଚାରପତି ନିଯୁକ୍ତି ପ୍ରସଙ୍ଗରେ କେନ୍ଦ୍ର ଓ ରାଜ୍ୟ ସରକାର ପରସ୍ପର ଉପରେ ଦୋଷାରୋପ କରୁଛନ୍ତି। ଉଭୟ ସରକାରଙ୍କ ନିଷ୍କ୍ରିୟତା ଫଳରେ ବିଚାରପତିମାନଙ୍କର ନିଯୁକ୍ତି ହୋଇପାରୁନି। ଜେଲମାନଙ୍କରେ ଲକ୍ଷ ଲକ୍ଷ ବିଚାରାଧୀନ ବନ୍ଦୀ ବିଶେଷ କରି ମହିଳା ବନ୍ଦୀମାନେ ଦୟନୀୟ ଅବସ୍ଥାରେ, ଘୋର ମାନସିକ ଚାପରେ ଅତିଷ୍ଠ ହୋଇ ଜୀବନ ଅତିବାହିତ କରିବାକୁ ବାଧ୍ୟ ହେଉଛନ୍ତି। ସବୁ ଦୋଷ, ନିନ୍ଦା ଲଦି ଦିଆଯାଉଛି ବିଚାରପତିମାନଙ୍କ ମୁଣ୍ଡରେ। ବର୍ତ୍ତମାନ ପରିସ୍ଥିତିରେ ଆମ ସମାଜରେ ଘଟୁଥିବା ବ୍ୟଭିଚାର, ଅନ୍ୟାୟ, ଅପରାଧ, ସରକାରୀ ଦପ୍ତରମାନଙ୍କରେ ହେଉଥିବା ଦୁର୍ନୀତି ଓ ଅବିଚାରରୁ ରକ୍ଷା ପାଇବାକୁ ଲୋକମାନେ କେବଳ ବିଚାର ବିଭାଗ ଉପରେ ଭରସା ରଖିଛନ୍ତି। ଭାରତୀୟ ସମ୍ବିଧାନ ଧାରା ୧୨୪ ରୁ ୧୪୭ ମଧ୍ୟରେ ନ୍ୟାୟ ବ୍ୟବସ୍ଥା ସଂପର୍କରେ ବର୍ଣ୍ଣନା ରହିଛି। ସମ୍ବିଧାନର ବ୍ୟବସ୍ଥା ଅନୁଯାୟୀ ଦେଶରେ ଜିଲ୍ଲାସ୍ତରୀୟ

କଚେରିଗୁଡ଼ିକ ସହିତ ୨୪ଟି ଉଚ୍ଚ ନ୍ୟାୟାଳୟ ଏବଂ ଗୋଟିଏ ସର୍ବୋଚ୍ଚ ନ୍ୟାୟାଳୟ କାର୍ଯ୍ୟ କରୁଛି; କିନ୍ତୁ ମାମଲା ସଂଖ୍ୟା ଦିନକୁ ଦିନ ବଢ଼ି ଚାଲିଥିବାରୁ ଆବଶ୍ୟକୀୟ ଭିତ୍ତିଭୂମି ସୁଦୃଢ଼ ନ ଥିବାରୁ ସମସ୍ୟା ବଢ଼ିବାରେ ଲାଗଛି। ଦେଶର ମୁଖ୍ୟ ବିଚାରପତି ଉଦ୍‌ବେଗ ପ୍ରକାଶ କରିବାର କାରଣ ହେଲା ନ୍ୟାୟ ପ୍ରଦାନ ବିଳମ୍ବିତ ନ ହେଉ, ନ୍ୟାୟ ବିକ୍ରି ନ ହେଉ କିମ୍ୱା ଅଗ୍ରାହ୍ୟ ନ ହେଉ। ଗତ କିଛି ବର୍ଷ ହେଲା ଲୋକ ଅଦାଲତ, ପରିବାର ଅଦାଲତ ପ୍ରଭୃତି କାର୍ଯ୍ୟ କରିବା ଦ୍ୱାରା କେତେକାଂଶରେ କେସ୍‌ଗୁଡ଼ିକର ତ୍ୱରିତ ବିଚାର ହୋଇପାରୁଛି। ଜାତୀୟ ଆଇନ କମିଶନ ଯେଉଁ ସୁପାରିଶ କରିଥିଲେ, ତାହା ଅଦ୍ୟାବଧି କାର୍ଯ୍ୟକାରୀ ହୋଇନାହିଁ। ସେତେବେଳେ ଦେଶରେ ୪୦ ହଜାର ବିଚାରପତିଙ୍କର ଆବଶ୍ୟକତା ଥିବା ଆଇନ କମିଶନ କହିଥିଲେ। ବର୍ତ୍ତମାନ ସୁପ୍ରିମକୋର୍ଟରେ ୬ଟି ବିଚାରପତି ପଦ ଖାଲି ରହିଛି। ସେହିଭଳି ହାଇକୋର୍ଟମାନଙ୍କରେ ୪୨୪ ବିଚାରପତି ପଦ ଖାଲି ଅଛି। ନିମ୍ନ ଅଦାଲତମାନଙ୍କରେ ପ୍ରାୟ ୫୦୦୦ ବିଚାରପତି ପଦ ଖାଲି ରହିଛି। ଏହି ପରିସ୍ଥିତିରେ ନ୍ୟାୟପାଳିକା ପାଖରୁ ଯଥୋଚିତ ସେବା ଆଶା କରିବା ବୃଥା। ବିଚାରପତି ନିଯୁକ୍ତି ସମ୍ପର୍କରେ ସରକାରଙ୍କ ନୀତି ଓ ଆଭିମୁଖ୍ୟ ସ୍ୱଷ୍ଟ ହୋଇପାରୁନାହିଁ।

ଟ୍ରାନ୍ସପରେନ୍ସି ଇଣ୍ଟରନ୍ୟାସନାଲ ଇଣ୍ଡିଆର ତଥ୍ୟ ଅନୁଯାୟୀ ବିଚାରପତି ଅଭାବ ତଥା ନ୍ୟାୟ ପ୍ରଦାନର ଜଟିଳ ପ୍ରକ୍ରିୟା ଓ ବିଳମ୍ବିତ ନ୍ୟାୟ ପ୍ରଦାନ ଯୋଗୁ ଦୁର୍ନୀତି ବଢ଼ିବାରେ ଲାଗିଛି। ଏ ସଂକ୍ରାନ୍ତରେ ନଭେମ୍ବର ୨୦୧୦ ମସିହାରେ ପୂର୍ବତନ କେନ୍ଦ୍ର ଆଇନ୍‌ମନ୍ତ୍ରୀ ଶାନ୍ତିଭୂଷଣ ଆଠ ଜଣ ପୂର୍ବତନ ପ୍ରଧାନ ନ୍ୟାୟଧୀଶଙ୍କ ନାମ ଉଲ୍ଲେଖ କରି ସେମାନେ ଦୁର୍ନୀତିଗ୍ରସ୍ତ ଥିଲେ ବୋଲି ଅଭିଯୋଗ ଆଣିଥିଲେ ଯାହାର ତଦନ୍ତ ଆଜିପର୍ଯ୍ୟନ୍ତ ମଧ୍ୟ ହୋଇନାହିଁ। ଏହା ବିଚାରବିଭାଗକୁ ଏକ ଶକ୍ତ ଧକ୍କା। ନଭେମ୍ବର ୨୦୧୧ ମସିହାରେ ସୁପ୍ରିମକୋର୍ଟର ପୂର୍ବତନ ବିଚାରପତି ରୁମା ପାଲ ଉଚ୍ଚତମ ନ୍ୟାୟାଳୟଗୁଡ଼ିକ ପ୍ରିୟାପ୍ରୀତି ତୋଷଣ, ଔଦ୍ଧତ୍ୟ ପ୍ରଦର୍ଶନ, ଛଳନାତ୍ମକ ବ୍ୟବହାର ଭଳି ୭ଟି ପାପ ସହିତ ଜଡ଼ିତ ବୋଲି ଉଲ୍ଲେଖ କରିଥିଲେ। ୨୦୧୧ ମସିହାରେ କଲିକତା ଉଚ୍ଚ ନ୍ୟାୟାଳୟର ବିଚାରପତି ସୌମିତ୍ର ସେନ୍‌ଙ୍କୁ ଅର୍ଥ ଆତ୍ମସାତ୍ ଅଭିଯୋଗରେ ରାଜ୍ୟସଭାରେ ଭର୍ତ୍ସନା କରାଯାଇଥିଲା ।

ନିର୍ବାଚନ ପୂର୍ବରୁ ଏବଂ ପରେ ନରେନ୍ଦ୍ର ମୋଦି ପ୍ରତିଶ୍ରୁତି ଦେଇଥିଲେ ଯେ ରାଜନୀତିରୁ ଅପରାଧ ଦୂର କରିବେ। ବର୍ତ୍ତମାନ ୧୬ଶ ଲୋକସଭାରେ ୫୪୧ ଜଣ

ସଦସ୍ୟଙ୍କ ମଧ୍ୟରୁ ୧୮୬ ଜଣ ସାଂସଦଙ୍କ ବିରୋଧରେ ଅପରାଧ ମାମଲା ରହିଛି। ମାର୍ଚ୍ଚ ୨୦୧୫ ମସିହାରେ ସୁପ୍ରିମକୋର୍ଟ ଦେଶର ସମସ୍ତ ଟ୍ରାଏଲ୍ କୋର୍ଟଙ୍କୁ ନିର୍ଦ୍ଦେଶ ଦେଇଥିଲେ ଯେ ଏମ୍.ପି ଆଉ ଏମ୍.ଏଲ୍.ଏ ମାନଙ୍କ ବିରୋଧରେ ଯେତେଗୁଡ଼ିଏ ମକଦ୍ଦମା ରହିଛି ବର୍ଷକ ମଧ୍ୟରେ ତାହାର ଯେପରି ନିଷ୍ପତ୍ତି ହୁଏ ସେ ଦିଗରେ ଯତ୍ନବାନ ହୁଅନ୍ତୁ, କିନ୍ତୁ ବର୍ଷେ ବିତିଯାଇଥିଲେ ମଧ୍ୟ ଏହି ନିର୍ଦ୍ଦେଶ କାର୍ଯ୍ୟକାରୀ ହୋଇପାରିନାହିଁ।

ଏହିଭଳି ଘଟଣାସବୁ ବିଚାରପତି ତିରଥ ସିଂ ଠାକୁରଙ୍କୁ ବିବ୍ରତ କରିଥିବ। ତାଙ୍କ ଦୀର୍ଘ ବର୍ଷର ନ୍ୟାୟିକ ଅଭିଜ୍ଞତା ଭିତରେ ସେ ବର୍ତ୍ତମାନର ସରକାରଙ୍କ ଉପରେ ବିଚାର ବିଭାଗର ସଂସ୍କାର ପାଇଁ ଯେଉଁ ବିଶ୍ୱାସ ପ୍ରକଟ କରିଥିଲେ, ତାହା ୨ ବର୍ଷ ମଧ୍ୟରେ ହୋଇନଥିବାରୁ ସେ ମ୍ରିୟମାଣ ହୋଇପଡ଼ିଥିଲେ; କିନ୍ତୁ ସୁଖର କଥା ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ନିଜର ବକ୍ତବ୍ୟ ମୁଖ୍ୟ ବିଚାରପତି ଉଲ୍ଲେଖ କରିଥିବା ସମସ୍ୟାଗୁଡ଼ିକର ସମାଧାନ ଅତିଶୀଘ୍ର କରିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି। ଏବେ ଆଶା କରାଯାଉଛି ଯେ ପ୍ରଧାନମନ୍ତ୍ରୀଙ୍କର ଏହି ପ୍ରତିଶ୍ରୁତି କେବଳ ପ୍ରତିଶ୍ରୁତିରେ ରହିଯିବ ନାହିଁ।

*ସମାଜ - ୧୪.୬.୨୦୧୬*

# ଶିଳ୍ପାୟନ ପାଇଁ ଜମି ଅଧିଗ୍ରହଣ

କେନ୍ଦ୍ର ସରକାର ଦ୍ୱିତୀୟ ଥର ପାଇଁ ଏପ୍ରିଲ ୩ ତାରିଖରେ ଜମି ଅଧିଗ୍ରହଣ ଅଧ୍ୟାଦେଶ ଜାରି କରିଛନ୍ତି। ପ୍ରଥମ ଜମି ଅଧିଗ୍ରହଣ ଅଧ୍ୟାଦେଶ ଏପ୍ରିଲ ୫ ତାରିଖରେ ଶେଷ ହୋଇଯାଉଥିଲା। ତେଣୁ ଦ୍ୱିତୀୟ ଅଧ୍ୟାଦେଶ ଜାରି କରିବାକୁ ପଡ଼ିଲା। ସରକାର ମାର୍ଚ୍ଚ ୧୦ ତାରିଖ ଲୋକସଭାରେ ୯ଟି ସଂଶୋଧନ ସହିତ ଯେଉଁ ଜମି ଅଧିଗ୍ରହଣ ବିଲ୍‌ଟିକୁ ପାରିତ କରାଇବାକୁ ସମର୍ଥ ହୋଇଥିଲେ, ଏହି ଅଧ୍ୟାଦେଶରେ ସେହି ୯ଟି ସଂଶୋଧନ ମଧ୍ୟ ସ୍ଥାନିତ ହୋଇଛି, ତେଣୁ ପୁଣି ଥରେ ଏହି ନୂତନ ଅଧ୍ୟାଦେଶଟି ବିଲ୍ ରୂପରେ ଲୋକସଭାରେ ପାରିତ ହେବ ଏବଂ ରାଜ୍ୟସଭାରେ ମଧ୍ୟ ବିଲ୍‌ଟିକୁ ଗୃହୀତ କରାଇବାକୁ ପଡ଼ିବ। ୟୁପିଏ ସରକାର ବହୁ ବିଚାରବିମର୍ଷ ପରେ ଋଷୀମାନଙ୍କର ସ୍ୱାର୍ଥକୁ ଆଖିରେ ରଖି ଓ ଦେଶର ଶିଳ୍ପ ପ୍ରତିଷ୍ଠାକୁ ତ୍ୱରାନ୍ୱିତ କରିବାକୁ ୧୮୯୪ ମସିହାରୁ ପ୍ରଚଳିତ ହୋଇଥିବା ଜମି ଅଧିଗ୍ରହଣ ଆଇନକୁ ବାତିଲ କରି ଜମି ଅଧିଗ୍ରହଣ ପାଇଁ ଏକ ନୂତନ ଆଇନ ୨୦୧୩ ମସିହାରେ ପ୍ରଣୟନ କରିଥିଲେ।

ଏନ୍.ଡି.ଏ ସରକାର ଜମି ଅଧିଗ୍ରହଣ ଆଇନ କାର୍ଯ୍ୟକାରୀ ହେଲେ ଭାରତ ସରକାରଙ୍କ ଉପରେ ପୁଞ୍ଜିନିବେଶକମାନଙ୍କ ବିଶ୍ୱାସ ବଢ଼ିବ, ବେକାର ଯୁବକଯୁବତୀଙ୍କ ପାଇଁ ନିଯୁକ୍ତି ସୃଷ୍ଟି ହେବ ଏବଂ ଶିଳ୍ପ ବିକାଶ ତ୍ୱରାନ୍ୱିତ ହେବ ବୋଲି ଯାହା ଘୋଷଣା କରିଛନ୍ତି, ତାହା ଯୁକ୍ତିଯୁକ୍ତ ବୋଲି ମନେହୁଏ। ଏଠାରେ ସ୍ମରଣ କରାଯାଇପାରେ ଯେ ୧୧ ଜାନୁୟାରୀ ୨୦୧୫ ମସିହାରେ ଗାନ୍ଧୀନଗରଠାରେ ଅନୁଷ୍ଠିତ ହୋଇଥିବା 'ଭାଇବ୍ରାଣ୍ଟ ଗୁଜୁରାଟ ସମିଟ୍'ରେ ୧୦୦ଟି ବିଦେଶୀ ରାଷ୍ଟ୍ରର ପ୍ରତିନିଧି ଯୋଗ ଦେଇଥିଲେ। ଏହି ସମ୍ମିଳନୀରେ ଜାତିସଂଘର ମହାସଚିବ ବାନ୍ କି ମୁନ୍, ଆମେରିକାର ପରରାଷ୍ଟ୍ର ବିଭାଗ ସଚିବ ଜନ୍ କେରି, ବିଶ୍ୱବ୍ୟାଙ୍କ ଅଧ୍ୟକ୍ଷ ଜିମ୍ ୟୋଙ୍ଗ୍ କିମ୍ ସମେତ ସମସ୍ତ ପ୍ରତିନିଧି ଭାରତର ଅର୍ଥନୈତିକ ସଂସ୍କାର ପଦକ୍ଷେପକୁ ଭୂୟସୀ ପ୍ରଶଂସା କରିଥିଲେ ଏବଂ ଏକ ସମୃଦ୍ଧ ଭାରତ ଗଠନରେ ଏହା ସହାୟକ ହେବ ବୋଲି ଆଶା ପ୍ରକାଶ କରିଥିଲେ।

ବିରୋଧୀ ଦଳଗୁଡ଼ିକ ଜମି ଅଧିଗ୍ରହଣ ବିଲ୍‌କୁ ବିରୋଧ କରିବାର ମୁଖ୍ୟ କାରଣ ହେଲା, (କ) ୨୦୧୩ରେ ପ୍ରଣୀତ ଜମି ଅଧିଗ୍ରହଣ ଆଇନରେ ବିକାଶ

ନାଁରେ ବହୁଫସଲୀ ଜଳସେଚିତ ଋଷଜମିକୁ ଅଧିଗ୍ରହଣ କରିବାରେ ପ୍ରତିବନ୍ଧକ ଥିଲା। ସେହିଭଳି ଘରୋଇ ପ୍ରକଳ୍ପ କ୍ଷେତ୍ରରେ ୮୦ ପ୍ରତିଶତ ଓ ପି.ପି.ପି କ୍ଷେତ୍ରରେ ୭୦ ପ୍ରତିଶତ କ୍ଷତିଗ୍ରସ୍ତ ହେଉଥିବା ଜମି ମାଲିକଙ୍କର ସହମତି ନେବା ବାଧ୍ୟତାମୂଳକ ଥିଲା, କିନ୍ତୁ ୨୦୧୪ ଅଧ୍ୟାଦେଶରେ ପ୍ରତିରକ୍ଷା, ଶିଳ୍ପ ଭୂଖଣ୍ଡ ପ୍ରତିଷ୍ଠା, ଗ୍ରାମ୍ୟ ଭିତ୍ତିଭୂମି ସମ୍ପ୍ରସାରଣ, ଅର୍ଥନୈତିକ ମୂଳଦୁଆ ଗଠନ ଭଳି ପ୍ରକଳ୍ପ ନିମନ୍ତେ କ୍ଷତିଗ୍ରସ୍ତଙ୍କ ସହମତି ନିଆଯିବାର ଆବଶ୍ୟକତା ନାହିଁ ବୋଲି ପ୍ରସ୍ତାବ ରହିଛି। (ଖ) ୨୦୧୩ ଆଇନରେ ଜମି ଅଧିଗ୍ରହଣ ପୂର୍ବରୁ 'ସାମାଜିକ ପ୍ରଭାବ ଆକଳନ' କରିବାର ବ୍ୟବସ୍ଥା ଥିଲା। ବର୍ତ୍ତମାନ ସେ ବ୍ୟବସ୍ଥାକୁ ପ୍ରତ୍ୟାହାର କରି ନିଆଯାଇଛି ଯାହା ଫଳରେ ଜମି ଅଧିଗ୍ରହଣ ସମୟରେ ଜମି ଉପରେ ନିର୍ଭରଶୀଳ ଭାଗଋଷୀ, କୃଷି ଶ୍ରମିକମାନେ ଯଥାଯଥ କ୍ଷତିପୂରଣ ପାଇପାରିବେନି ବୋଲି ଆଶଙ୍କା କରାଯାଉଛି।

କୃଷକମାନେ ଯେ କ୍ଷତିପୂରଣ ପାଇବେ ନାହିଁ, ଏଭଳି ଭାବିବା ଠିକ୍ ନୁହେଁ। ଜମି ମାଲିକ, କୃଷକ, ଶ୍ରମିକମାନଙ୍କ ସ୍ୱାର୍ଥରକ୍ଷା ଉଦ୍ଦେଶ୍ୟରେ ଅଧ୍ୟାଦେଶରେ ୯ଟି ସଂଶୋଧନ ଆଣି ବିଲ୍ ଲୋକସଭାରେ ଗୃହୀତ ହୋଇଛି। ଏହି ସଂଶୋଧନ ପ୍ରସ୍ତାବରେ କ୍ଷତିଗ୍ରସ୍ତ ହେଉଥିବା ଋଷୀ, କୃଷି ଶ୍ରମିକ ପରିବାରର ଜଣେ ସଦସ୍ୟଙ୍କୁ ଋକିରି ଦେବାର ବ୍ୟବସ୍ଥା ରହିଛି। ପ୍ରକଳ୍ପ ପ୍ରତିଷ୍ଠା ସମୟରେ ସେହି ଅଞ୍ଚଳର ଅଧିବାସୀଙ୍କୁ ନିଯୁକ୍ତି କ୍ଷେତ୍ରରେ ଅଗ୍ରାଧିକାର ଦେବାର ବ୍ୟବସ୍ଥା ମଧ୍ୟ ରହିଛି। ବହୁଫସଲୀ ଜମି ଅଧିଗ୍ରହଣ କରାଯିବ ନାହିଁ, ଶିଳ୍ପ ଭୂଖଣ୍ଡ ପ୍ରତିଷ୍ଠା ପାଇଁ ଆବଶ୍ୟକ ହେଉଥିବା ନ୍ୟୂନତମ ପରିମାଣର ଜମି ଅଧିଗ୍ରହଣ କରାଯିବ, ଜମି ମାଲିକମାନଙ୍କୁ କ୍ଷତିପୂରଣ ବାବଦରେ ପୂର୍ବ ଅପେକ୍ଷା ବହୁ ଅଧିକ ଅର୍ଥ ଦିଆଯିବ ବୋଲି ଏହି ସଂଶୋଧନ ପ୍ରସ୍ତାବରେ ବ୍ୟବସ୍ଥାମାନ ରହିଛି। ସେହିପରି ସଂଶୋଧନରେ ବ୍ୟବସ୍ଥା ଅଛି ଯେ, ରେଳ ଲାଇନ୍‌ର ଓ ଜାତୀୟ ରାଜପଥର ଦୁଇପାର୍ଶ୍ୱରେ ମାତ୍ର ଏକ କିଲୋମିଟର ମଧ୍ୟରେ ଜମି ଅଧିଗ୍ରହଣ କରାଯିବ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଲା ୨୨ ମାର୍ଚ୍ଚରେ ନରେନ୍ଦ୍ର ମୋଦି ତାଙ୍କ 'ମନ୍ କି ବାତ୍' କାର୍ଯ୍ୟକ୍ରମରେ ଯେଉଁ ଘୋଷଣା କରିଛନ୍ତି, ତାହା ଅତ୍ୟନ୍ତ ଉତ୍ସାହଜନକ। ସେ କହିଛନ୍ତି ଯେ ପ୍ରଥମେ ସରକାରୀ ଜମି, ତା'ପରେ ଅନାବାଦୀ ଜମି ଓ ସର୍ବଶେଷରେ ଅମଳକ୍ଷମ ଜମି ଅଧିଗ୍ରହଣ କଥା ବିଋର କରାଯିବ। ଜମି ଅଧିଗ୍ରହଣ ଆଇନ୍ ଲାଗୁ କରିବା ବା ନ କରିବା ନିଷ୍ପତ୍ତି ରାଜ୍ୟ ସରକାରଙ୍କର; କିନ୍ତୁ ଏକ ଆଦର୍ଶ ବ୍ୟବସ୍ଥା

ହୋଇପାରନ୍ତା ଯଦି ଜମି ହରାଉଥିବା ବ୍ୟକ୍ତିମାନଙ୍କୁ ସେମାନଙ୍କର ରୋଜଗାରର ଦୀର୍ଘକାଳୀନ ସୁରକ୍ଷା ପାଇଁ କ୍ଷତିପୂରଣ ବାବଦରେ ମାସିକ ଭତ୍ତା ଦିଆଯାଆନ୍ତା । ଏହା ସେମାନଙ୍କର ଜୀବନଧାରଣରେ ଅସୁବିଧା ସୃଷ୍ଟି କରନ୍ତା ନାହିଁ ଓ ସେମାନଙ୍କର ଜମି ହରାଇବାର ଦୁଃଖକୁ ଲାଘବ କରିପାରନ୍ତା ।

ଓଡ଼ିଶା କ୍ଷେତ୍ରରେ ଏହି ଆଇନ ଏକ ବିଶେଷ ମହତ୍ତ୍ୱ ରଖେ । କାରଣ ନବୀନ ସରକାର ମେ' ୨୦୦୨ ପରଠାରୁ ଶିଳ୍ପସଂସ୍ଥାମାନ ପ୍ରତିଷ୍ଠା ପାଇଁ ବିଭିନ୍ନ କମ୍ପାନୀ ସହିତ ବୁଝାମଣାପତ୍ର ଦସ୍ତଖତ କରିଥିଲେ ମଧ୍ୟ ଜମି ଅଧିଗ୍ରହଣରେ ଅହେତୁକ ବିଳମ୍ବ ଯୋଗୁଁ ରାଜ୍ୟରେ ଈପ୍ସିତ ଶିଳ୍ପ ପ୍ରତିଷ୍ଠା ସମ୍ଭବ ହୋଇପାରିନାହିଁ । ଏହାର ଜ୍ୱଳନ୍ତ ଉଦାହରଣ ବିଶ୍ୱର ସର୍ବବୃହତ୍ ଇସ୍ପାତ୍ କମ୍ପାନୀ ଆର୍ସେଲ-ମିତ୍ତଲ ଜମି ଅଧିଗ୍ରହଣରେ ଅସୁବିଧା ଯୋଗୁଁ କେନ୍ଦୁଝରଠାରେ ପ୍ରସ୍ତାବିତ ଇସ୍ପାତ୍ କାରଖାନା ପ୍ରତିଷ୍ଠାରୁ ୨୦୧୩ ମସିହାରେ ଓହରିଗଲା । ସେହିଭଳି ଦକ୍ଷିଣ କୋରିଆର ପୋସ୍କୋ କମ୍ପାନୀ ଜମି ଅଧିଗ୍ରହଣରେ ବିଳମ୍ବ ଯୋଗୁଁ କୁଜଙ୍ଗଠାରେ ପ୍ରସ୍ତାବିତ ଇସ୍ପାତ କାରଖାନା ଏ ପର୍ଯ୍ୟନ୍ତ ପ୍ରତିଷ୍ଠା କରିପାରୁନାହିଁ । ଯଦି ନବୀନଙ୍କ ଶିଳ୍ପ ପ୍ରତିଷ୍ଠାର ପ୍ରଚେଷ୍ଟା ସଫଳ ହୋଇଥାନ୍ତା, ତେବେ ଆଜି ଯୁବକମାନଙ୍କ ମଧ୍ୟରେ ଯେଉଁ ଉତ୍କଟ ବେକାରୀ ସମସ୍ୟା ଦେଖାଦେଇଛି ତାହା କେତେକାଂଶରେ ପ୍ରଶମିତ ହୋଇପାରିଥାନ୍ତା ।

ରାଜ୍ୟର ସାମୁହିକ, ସାମାଜିକ, ଅର୍ଥନୈତିକ ପ୍ରଗତି ପାଇଁ ରେଳ ଯୋଗାଯୋଗର ପ୍ରସାର ଏକାନ୍ତ ଅପରିହାର୍ଯ୍ୟ । ୨୦୧୫-୧୬ ରେଳ ବଜେଟ୍‌ରେ ଓଡ଼ିଶାର ରେଳପଥ ବିକାଶ ପାଇଁ ୨୫୪୮ କୋଟି ଟଙ୍କାର ବ୍ୟବସ୍ଥା ହୋଇଛି । ନିର୍ମାଣାଧୀନ ୭ଟି ନୂତନ ରେଳପଥ ପାଇଁ ଯେଉଁ ବ୍ୟୟବରାଦ କରାଯାଇଛି, ତାହା ବିନିଯୋଗ ହୋଇପାରିବ କି ନାହିଁ ସେ ନେଇ ସନ୍ଦେହ ପ୍ରକାଶ ପାଇଛି । ରାଜ୍ୟ ସରକାରଙ୍କ ଦ୍ୱାରା ଜମି ଅଧିଗ୍ରହଣ ହୋଇପାରୁ ନଥିବାରୁ ଅନେକ ପ୍ରକଳ୍ପ ଅଧାରୁ ଅଟକି ରହୁଛି । ଚଳିତ ବର୍ଷ କେନ୍ଦ୍ର ସରକାରଙ୍କ ଦ୍ୱାରା ଅଧିକ ବ୍ୟୟବରାଦ ଓଡ଼ିଶାର ରେଳ ବିକାଶକୁ କ୍ଷିପ୍ରତର କରିବା ପାଇଁ ଯେଉଁ ସୁଯୋଗ ସୃଷ୍ଟି କରିଛି, ତାହା ଜମି ଅଧିଗ୍ରହଣ ବିଲ୍ ପାରିତ ହୋଇନପାରିଲେ ପ୍ରତିହତ ହେବ ।

ଓଡ଼ିଶାରେ ୪୬୪୪ କି.ମି. ଜାତୀୟ ରାଜପଥ ମଧ୍ୟରୁ ୧୯୨୨ କି.ମି ରାଜପଥର ଉନ୍ନତୀକରଣ କାର୍ଯ୍ୟ ଶେଷ ହୋଇଛି । ଅବଶିଷ୍ଟ ରାସ୍ତାର ଉନ୍ନତି ୫ଟି ପର୍ଯ୍ୟାୟରେ ହେବ । ଦ୍ୱିତୀୟ ଓ ତୃତୀୟ ପର୍ଯ୍ୟାୟର କାର୍ଯ୍ୟ ଆରମ୍ଭ ହୋଇସାରିଛି ।

ଏହିସବୁ ପ୍ରକଳ୍ପ ପାଇଁ ୯୨୩ କୋଟି ୯୦ ଲକ୍ଷ ଟଙ୍କାର କେନ୍ଦ୍ରୀୟ ସଡ଼କ ପାଣ୍ଠିର ବ୍ୟବସ୍ଥା ରହିଛି; କିନ୍ତୁ ପ୍ରକଳ୍ପଗୁଡ଼ିକର ସଫଳତା ଜମି ଅଧିଗ୍ରହଣ ଉପରେ ନିର୍ଭର କରେ । ତେଣୁ ବିଜୁ ଜନତା ଦଳର ଜମି ଅଧିଗ୍ରହଣ ବିଲ୍‌କୁ ଲୋକସଭାରେ ସମର୍ଥନ ରାଜ୍ୟ ସ୍ୱାର୍ଥ ପାଇଁ ଏକ ଯଥାର୍ଥ ପଦକ୍ଷେପ ବୋଲି ବୁଦ୍ଧିଜୀବୀମାନେ ମତବ୍ୟକ୍ତ କରୁଛନ୍ତି ।

ସଂସଦୀୟ ବ୍ୟାପାର ମନ୍ତ୍ରୀ ଭେଙ୍କିୟା ନାଇଡୁ କହିଛନ୍ତି ଯେ କୌଣସି ପରିସ୍ଥିତିରେ ବଳପୂର୍ବକ ଜମି ଅଧିଗ୍ରହଣ କରାଯିବନାହିଁ । ବିମାନ ବନ୍ଦରଠାରୁ ନଦୀବନ୍ଧ ନିର୍ମାଣ ଆଦି ଉନ୍ନୟନମୂଳକ କାର୍ଯ୍ୟ ପାଇଁ ଜମି ଅଧିଗ୍ରହଣର ଆବଶ୍ୟକତାକୁ କୌଣସି ସରକାର ଏଡ଼ାଇଦେଇ ପାରିବେନି । ଅର୍ଥମନ୍ତ୍ରୀ ଅରୁଣ ଜେଟଲି ଦୃଢ଼ତାର ସହିତ କହିଛନ୍ତି ଯେ ଜମି ଅଧିଗ୍ରହଣ ଦ୍ୱାରା ଦୁର୍ବଳ ଶ୍ରେଣୀର ଲୋକଙ୍କର ଅର୍ଥନୈତିକ ବିକାଶ ସମ୍ଭବ ହୋଇପାରିବ । କୃଷି ଓ ଶିଳ୍ପ, ଉଭୟ ଦେଶର ସମୃଦ୍ଧି ପାଇଁ ଆବଶ୍ୟକ । ତେଣୁ ଉଭୟକୁ ଏନ୍‌ଡିଏ ସରକାର ଗୁରୁତ୍ୱ ଦେଉଛି ।

କ୍ଷତିଗ୍ରସ୍ତ ଲୋକଙ୍କ ଅଭିଯୋଗର ଶୁଣାଣି ଓ ସମାଧାନ ପାଇଁ ଜିଲା ସ୍ତରରେ ବ୍ୟବସ୍ଥା କରାଯିବ । ସରକାରୀ କର୍ମଚାରୀ ଯଦି ଜମି ଅଧିଗ୍ରହଣ ଆଇନରେ କୌଣସି ଖିଲାପ କରନ୍ତି ଅଦାଲତକୁ ତାହା ବିଚାର କରିବା ପାଇଁ କ୍ଷମତା ଦିଆଯାଇଛି । କ୍ଷତିପୂରଣ ବାବଦ ସମସ୍ତ ଅଭିଯୋଗ ପ୍ରାଥମିକ ସ୍ତରରେ ସ୍ଥାନୀୟ ଅଧିକାରୀଙ୍କ ଦ୍ୱାରା ବିଚାର କରାଯିବ ।

ଜମି ଅଧିଗ୍ରହଣ ବିଲ୍ ସମ୍ପର୍କରେ ଉଠିଥିବା ବିରୋଧ ତଥା ଅଧିଗ୍ରହଣ ଅଧ୍ୟାଦେଶର ସ୍ୱତନ୍ତ୍ର ସର୍ତ୍ତକୁ ଆଲୋଚନା କଲେ ଏହା କୁହାଯାଇପାରେ ଯେ ଏହି ବିଲ୍ ପାରିତ ହେଲେ ଏହା ଦେଶର ଅର୍ଥନୈତିକ ବିକାଶ ତ୍ୱରାନ୍ୱିତ କରିବାରେ ସହାୟକ ହେବ । ଅଧିକା ନିଯୁକ୍ତି ସୁଯୋଗ ସୃଷ୍ଟି ହେବା ସହିତ ନରେନ୍ଦ୍ର ମୋଦିଙ୍କର 'ମେକ୍ ଇନ୍ ଇଣ୍ଡିଆ' ପରିକଳ୍ପନା ଫଳବତୀ ହେବ ବୋଲି ଆଶା କରାଯାଏ । ଏହାଦ୍ୱାରା କେବଳ ଧନୀ ଶ୍ରେଣୀର ଲୋକ ଉପକୃତ ହେବେ ନାହିଁ, ଗରିବ ଶ୍ରେଣୀର ଲୋକମାନେ ବିଶେଷ ଲାଭବାନ ହେବେ । ସରକାର ବିରୋଧୀ ମନୋବୃତ୍ତି ପରିହାର କରି ଏନ୍.ଡି.ଏ ସରକାରକୁ ସଂସ୍କାରମୂଳକ ପଦକ୍ଷେପ ନେବା ପାଇଁ ସୁଯୋଗ ଦେବା ଦେଶ ତଥା ଓଡ଼ିଶାବାସୀଙ୍କ ପାଇଁ ହିତକର ହେବ, ଏହା ନିଃସନ୍ଦେହ ।

*ସମାଜ - ୦୮.୦୪.୨୦୧୫*

# ଅର୍ଥନୈତିକ ବିକାଶରେ ଏନ୍‌ଜିଓମାନଙ୍କ ଭୂମିକା

ନରେନ୍ଦ୍ର ମୋଦି ଦେଶର ପ୍ରଧାନମନ୍ତ୍ରୀ ଭାବେ ୨୬ ମେ' ୨୦୧୪ରେ ଶପଥ ଗ୍ରହଣ କରିବାର ମାତ୍ର ଏକ ସପ୍ତାହ ପରେ କେନ୍ଦ୍ର ସରକାରଙ୍କର ଗୁଇନ୍ଦା ବିଭାଗର ଯୁଗ୍ମ ନିର୍ଦ୍ଦେଶକ ଏସ୍.ଏ ରିଜ୍‌ଭି ପ୍ରଧାନମନ୍ତ୍ରୀଙ୍କ ଦପ୍ତରକୁ କେତେକ ବିଦେଶୀ ଅନୁଦାନପ୍ରାପ୍ତ ଏନ୍.ଜି.ଓଙ୍କ ସମ୍ବନ୍ଧରେ ୨୧ ପୃଷ୍ଠା ବିଶିଷ୍ଟ ଏକ ରିପୋର୍ଟ ପଠାଇ ସେଥିରେ ଉଲ୍ଲେଖ କରିଛନ୍ତି ଯେ, ଏହି ଏନ୍.ଜି.ଓମାନେ ଦେଶର ବିକାଶ ବିରୋଧୀ କାର୍ଯ୍ୟରେ ଲିପ୍ତ ଅଛନ୍ତି । ଏହି ରିପୋର୍ଟ ସାର୍ବଜନୀନ ହେବାପରେ ଦେଶରେ ହଇଚଇ ସୃଷ୍ଟି ହୋଇଛି । ଏହି ରିପୋର୍ଟରେ ୪୧ ଜଣ ବିଶିଷ୍ଟ ବ୍ୟକ୍ତି ଓ ୭୯ଟି ସଂଗଠନର ନାମ ମଧ୍ୟ ଉଲ୍ଲେଖ କରାଯାଇଛି । ଏହି ବ୍ୟକ୍ତିମାନଙ୍କ ଭିତରେ ନାରାୟଣ ଦେଶାଇ, ଏସ୍.ପି ଉଦୟକୁମାର, ଫାଦର ଆମ୍ବ୍ରୋ ଏସ୍, ଫାଦର ଥମାସ୍ କୋଚେରି, ଫାଦର ଜୟକୁମାର, ପ୍ରଫୁଲ୍ଲ ବିଦ୍ୱାଇ, ଆଡ୍‌ମିରାଲ୍ ରାମଦାସ, ଦେବଶାୟମ୍, ମେଧା ପାଟକର, ବନ୍ଦନା ଶିବା, ପ୍ରଶାନ୍ତ ଭୂଷଣ, ସ୍ୱାମୀ ଅଗ୍ନିବେଶ ପ୍ରଭୃତି ଅତ୍ୟନ୍ତ ମାନ୍ୟଗଣ୍ୟ ବ୍ୟକ୍ତିଙ୍କର ନାମ ରହିଛି । ଅନୁଷ୍ଠାନଗୁଡ଼ିକ ଭିତରେ ନ୍ୟାସନାଲ୍ ଆଲିଆନ୍ସ ଅଫ୍ ଆଣ୍ଟି ନ୍ୟୁକ୍ଲିଅର ମୁଭ୍‌ମେଣ୍ଟ, ଦି ପିପୁଲ୍ସ ମୁଭ୍‌ମେଣ୍ଟ ଏଗେନ୍‌ଷ୍ଟ ନ୍ୟୁକ୍ଲିଅର ଏନର୍ଜି, ଟୁଟିକୋରିନ୍ ଡାଓସେସିଆନ୍ ଆସୋସିଏସନ୍, ପିପୁଲ୍ସ ଏଡୁକେଶନ ଆଣ୍ଡ୍ ଆକ୍ସନ୍ ଫର ଲିବରେସନ୍, ଗ୍ରୀନ୍‌ପିସ୍, ଇନ୍‌ସାଫ୍, ଗାନ୍ଧିଆନ୍ ୟୁନିଟ୍ ଫର୍ ଇଣ୍ଟିଗ୍ରେଟେଡ୍ ଡେଭେଲପମେଣ୍ଟ ଆଣ୍ଡ ଏଡୁକେଶନ୍, ଫ୍ରେଣ୍ଡ୍‌ସ୍ ଆସୋସିଏସନ୍ ଫର୍ ରୁରାଲ୍ ରିକନ୍‌ଷ୍ଟ୍ରକ୍ସନ୍, ଗ୍ରାମବିକାଶ, ଆମନେଷ୍ଟି ଇଣ୍ଟରନେସନାଲ୍, ପୋସ୍କୋ ପ୍ରତିରୋଧ ସମିତି, ଆମ୍ ଆଦ୍‌ମୀ ପାର୍ଟି, ବ୍ରେଡ୍ ଫର୍ ୱାର୍ଲଡ ପ୍ରଭୃତି ଅନ୍ତର୍ଭୁକ୍ତ ।

ଭାରତ ଭଳି ଏକ ବିଶାଳ ଜନସଂଖ୍ୟା ବିଶିଷ୍ଟ ଗଣତାନ୍ତ୍ରିକ ରାଷ୍ଟ୍ରରେ ସମସ୍ତ ଜନମଙ୍ଗଳ କାର୍ଯ୍ୟ କରିବା କେବଳ ସରକାରଙ୍କ ଦ୍ୱାରା ସମ୍ଭବ ନୁହେଁ, ତେଣୁ ସ୍ୱାଧୀନତା ପ୍ରାପ୍ତି ପରେ ପ୍ରତିରକ୍ଷା, ଆଭ୍ୟନ୍ତରୀଣ ସୁରକ୍ଷା, ବୈଦେଶିକ ବ୍ୟାପାର ଇତ୍ୟାଦି କେତେକ ବିଭାଗ ବ୍ୟତୀତ ଅନ୍ୟାନ୍ୟ କାର୍ଯ୍ୟରେ ବେସରକାରୀ ସଂସ୍ଥାର ସହାୟତା ଓ ଭାଗୀଦାରିକୁ ସ୍ୱାଗତ କରାହୋଇଆସିଅଛି । ବେସରକାରୀ ସଂସ୍ଥାଗୁଡ଼ିକ ସରକାରୀ ଯୋଜନାକୁ

ଲୋକମାନଙ୍କ ପାଖରେ ପହଞ୍ଚାଇବା ପାଇଁ ସରକାର ଉତ୍ସାହିତ କରିଥାନ୍ତି। ଏନ୍.ଜି.ଓମାନେ ସାଧାରଣତଃ ଶିକ୍ଷା, ସ୍ୱାସ୍ଥ୍ୟ, ଶିଶୁ ଓ ମହିଳାମାନଙ୍କ ବିକାଶ କାର୍ଯ୍ୟକ୍ରମରେ ନିଜକୁ ନିୟୋଜିତ କରିଥାନ୍ତି।

ମାନ୍ୟବର ସୁପ୍ରିମ୍‌କୋର୍ଟଙ୍କ ନିର୍ଦ୍ଦେଶରେ ସି.ବି.ଆଇ ଦାଖଲ କରିଥିବା ଏକ ତଥ୍ୟରୁ ଜଣାପଡ଼ିଛି ଯେ, ଆମ ଦେଶରେ ଅନ୍ୟୂନ କୋଡ଼ିଏ ଲକ୍ଷ ବେସରକାରୀ ସଂଗଠନ କାର୍ଯ୍ୟରତ ଅଛନ୍ତି। ସି.ବି.ଆଇ ଦେଶର ସମସ୍ତ ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳରେ କାର୍ଯ୍ୟ କରୁଥିବା ଏନ୍.ଜି.ଓମାନଙ୍କର ତାଲିକା ସେଠିକାର ରାଜ୍ୟ ସରକାରମାନଙ୍କୁ ମାଗିଥିଲେ; କିନ୍ତୁ ଆନ୍ଧ୍ରପ୍ରଦେଶ, ବିହାର, ଦିଲ୍ଲୀ, ହରିୟାନା, କର୍ଣ୍ଣାଟକ, ରାଜସ୍ଥାନ, ପଶ୍ଚିମବଙ୍ଗ, ଓଡ଼ିଶା, ତାମିଲନାଡୁ, ଛତିଶଗଡ଼ ଓ ହିମାଚଳ ପ୍ରଦେଶ ସି.ବି.ଆଇକୁ କୌଣସି ତଥ୍ୟ ପ୍ରଦାନ କରିନଥିଲେ। ଉପରୋକ୍ତ ୧୧ଟି ରାଜ୍ୟ ବ୍ୟତୀତ ଅନ୍ୟ ରାଜ୍ୟଗୁଡ଼ିକରେ ୧୩ ଲକ୍ଷ ଏନ୍.ଜି.ଓ ଥିବାର ହିସାବ ପାଇବା ପରେ ସି.ବି.ଆଇ ସୁପ୍ରିମ୍‌କୋର୍ଟରେ ସମଗ୍ର ଦେଶରେ ଆନୁମାନିକ ୨୦ ଲକ୍ଷ ଏନ୍.ଜି.ଓ କାର୍ଯ୍ୟ କରୁଥିବାର ତଥ୍ୟ ପ୍ରଦାନ କରିଛନ୍ତି। ଏକ ବେସରକାରୀ ହିସାବରୁ ଜଣାଯାଏ ଯେ, ଦେଶରେ ବର୍ତ୍ତମାନ ତିନି ଲକ୍ଷରୁ ଅଧିକ ଯୁବକସଂଘ ଓ ମହିଳାମଣ୍ଡଳ, ଧାର୍ମିକ ଅନୁଷ୍ଠାନ, ଆଧ୍ୟାତ୍ମିକ ସଂସ୍ଥା, ଜନକଲ୍ୟାଣ ଓ ସେବା ଅନୁଷ୍ଠାନ ଇତ୍ୟାଦି କାର୍ଯ୍ୟରତ ଅଛନ୍ତି। ବିଦେଶୀ ଅନୁଦାନ ପାଉଥିବା ପଂଜିକୃତ ସଂସ୍ଥା ମଧ୍ୟରୁ ଅଧିକାଂଶ ଧାର୍ମିକ ଅନୁଷ୍ଠାନ। 'ଚ୍ୟାରିଟି ଏଡ୍ ଫାଉଣ୍ଡେସନ୍'ଙ୍କ ହିସାବ ଅନୁସାରେ, ଭାରତରେ ପ୍ରାୟ ୩୦ ହଜାର ସ୍ୱେଚ୍ଛାସେବୀ ସଂସ୍ଥା ଅତ୍ୟନ୍ତ ସକ୍ରିୟ। ସେମାନଙ୍କ ମଧ୍ୟରୁ ଶତକଡ଼ା ୮୦ ଭାଗ ହେଉଛନ୍ତି ଛୋଟ ଛୋଟ ଅନୁଷ୍ଠାନ। ଏହି ଅନୁଷ୍ଠାନଗୁଡ଼ିକର କର୍ମଚାରୀ ସଂଖ୍ୟା ପାଞ୍ଚ ଜଣ ମଧ୍ୟରେ ସୀମିତ ଏବଂ ବାର୍ଷିକ ବଜେଟ୍ ୫୦ ହଜାରରୁ ପାଞ୍ଚ ଲକ୍ଷ ଟଙ୍କା ଭିତରେ। ଏସିଆ ମାନବାଧିକାର କେନ୍ଦ୍ର (ଏସିଆନ୍ ସେଣ୍ଟର ଫର୍ ହ୍ୟୁମାନ୍ ରାଇଟ୍ସ) ସୂଚନା ଅଧିକାର ଆଇନ୍ ଦ୍ୱାରା ପାଇଥିବା ତଥ୍ୟ ଅନୁଯାୟୀ, କେନ୍ଦ୍ର ଓ ରାଜ୍ୟ ସରକାର ୨୦୦୨ରୁ ୨୦୦୯ ମଧ୍ୟରେ ଏନ୍.ଜି.ଓମାନଙ୍କୁ ୬,୬୫୪ କୋଟି ଟଙ୍କା ଅନୁଦାନରୂପେ ପ୍ରଦାନ କରିଥିଲେ। ୨୦୧୦ ରୁ ୧୧ ଆର୍ଥିକ ବର୍ଷରେ ୨୨ଶହ ଏନ୍.ଜି.ଓ ୨୦୦ କୋଟିରୁ ଅଧିକ ଟଙ୍କା ବିଦେଶରୁ ଆର୍ଥିକ ସାହାଯ୍ୟ ପାଇଛନ୍ତି ବୋଲି ଜଣାଯାଏ, କିନ୍ତୁ ପରିତାପର ବିଷୟ ଯେ ସାରା ଦେଶରେ ବହୁ ଏନ୍.ଜି.ଓ ସେମାନଙ୍କର ବାର୍ଷିକ ଖର୍ଚ୍ଚ ସମ୍ବନ୍ଧରେ ଠିକ୍ ବିବରଣୀ ସରକାରଙ୍କୁ ପ୍ରଦାନ କରୁନାହାଁନ୍ତି

ଏବଂ କେତେକ କ୍ଷେତ୍ରରେ ପାଉଥିବା ଅନୁଦାନ ରାଶିକୁ ନିଜର ଇଚ୍ଛା ମୁତାବକ ଖର୍ଚ୍ଚ କରୁଛନ୍ତି। ଏପରିକି ଆନ୍ନା ହଜାରେଙ୍କ ଦ୍ୱାରା ପ୍ରତିଷ୍ଠିତ ଏନ୍.ଜି.ଓ 'ହିନ୍ଦ୍ ସ୍ୱରାଜ୍ ଟ୍ରଷ୍ଟ'ର ପାଣ୍ଠିର ଅପବ୍ୟବହାର କରାଯାଇଥିବା ନେଇ ଏମ୍.ଏଲ୍ ଶର୍ମା ନାମକ ଜଣେ ଆଇନଜୀବୀ ଗତବର୍ଷ ସୁପ୍ରିମ୍‌କୋର୍ଟରେ ଏକ ଜନସ୍ୱାର୍ଥ ମାମଲା ଦାୟର କରିଥିଲେ। ଅନୁସନ୍ଧାନରୁ ଜଣାପଡ଼ିଲା ଯେ ତିନୋଟି ଗ୍ରାମର ଜଳବିଭାଜିକାର ଉନ୍ନତି ପାଇଁ 'କାପାର୍ଟ' ଦେଇଥିବା ଏକଲକ୍ଷ ଟଙ୍କାକୁ ଆନ୍ନା ହଜାରେଙ୍କ ଟ୍ରଷ୍ଟ ତା'ର ୯୦ ପ୍ରତିଶତ ଅର୍ଥ ଦରମା, ଗସ୍ତଖର୍ଚ୍ଚ, ଛାପାଖର୍ଚ୍ଚ ଇତ୍ୟାଦିରେ ଖର୍ଚ୍ଚ କରିଛନ୍ତି। ଯେଉଁ ଉଦ୍ଦେଶ୍ୟରେ ଅନୁଦାନ ଦିଆଯାଇଥିଲା ଏହା ତାହାର ଖିଲାପ କରୁଛି। ଅଳ୍ପ କିଛିଦିନ ତଳେ କେନ୍ଦ୍ର ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗର ବିଦେଶୀ ମୁଦ୍ରା ନିୟନ୍ତ୍ରଣ ଆଇନ୍ (ଏଫ୍.ସି.ଆର୍.ଏ) ଶାଖା ଓଡ଼ିଶାର ୬୪୩ଟି ସ୍ୱେଚ୍ଛାସେବୀ ସଂଗଠନକୁ ସେମାନେ ବିଦେଶରୁ ପାଇଥିବା ଅର୍ଥ ଉପଯୋଗ ବିଷୟରେ କୌଣସି ତଥ୍ୟ ଜଣାଇନଥିବାରୁ ଏହା ୨୦୧୦ର ଧାରା ୨୮ ଏବଂ ନିୟମ ୧୭(୧) ୨୦୧୧ ଅନୁଯାୟୀ ସେମାନଙ୍କର ପଂଜିକରଣକୁ କାହିଁକି ଅବୈଧ ଘୋଷଣା କରାନଯିବ ସେଥିପାଇଁ ନୋଟିସ୍ ଜାରି କରିଛନ୍ତି। ଏକଥା ସତ୍ୟ ଯେ କେତେକ ଏନ୍.ଜି.ଓ ଲୋକଙ୍କ ମଙ୍ଗଳ ପାଇଁ ଆସୁଥିବା ଅନୁଦାନକୁ ହେରଫେର୍ କରି ନିଜର ଓ ନିଜ ଅନୁଷ୍ଠାନକୁ ପରିପୁଷ୍ଟ କରୁଛନ୍ତି।

ଓଡ଼ିଶାର ବହୁ ଏନ୍.ଜି.ଓ ନିଜ କର୍ତ୍ତବ୍ୟରେ ଅହେତୁକ ଅବହେଳା କରୁଥିବା ଆଦିବାସୀ ଅଧ୍ୟୁଷିତ ବିଶେଷକରି କେ.ବି.କେ ଅଞ୍ଚଳରେ ସେମାନଙ୍କର ନିମ୍ନମାନର କାର୍ଯ୍ୟ ଦେଖିଲେ ଜଣାପଡ଼େ। ଦୁଇବର୍ଷ ତଳେ ଓଡ଼ିଶା ସରକାର ଏହିଭଳି କେତେକ ଏନ୍.ଜି.ଓ.ଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ ମଧ୍ୟ ଏହା ଏନ୍.ଜି.ଓ.ମାନଙ୍କ ଉପରେ ବିଶେଷ ପ୍ରଭାବ ପକାଇ ପାରିନାହିଁ। ଏବେ ୨୭ ମେ' ୨୦୧୪ରେ ପୁନର୍ବାର ଓଡ଼ିଶା ସରକାରଙ୍କ ଯୋଜନା ଓ ସମନ୍ୱୟ ବିଭାଗର ଅତିରିକ୍ତ ସଚିବ ରାଜ୍ୟର ୩୧୪ଟି ଏନ୍.ଜି.ଓ.କୁ କଳାତାଲିକାଭୁକ୍ତ କରିଛନ୍ତି। କିନ୍ତୁ ସରକାର ସମସ୍ତ ଏନ୍.ଜି.ଓ.ଙ୍କୁ ଗୋଟିଏ ନିକିତିରେ ତଉଲିବା ଉଚିତ ନୁହେଁ। ଏନ୍.ଜି.ଓ.ଗୁଡ଼ିକରେ ବହୁ ଯୁବକଯୁବତୀ ନିଯୁକ୍ତି ପାଇଛନ୍ତି ଏବଂ ଆମ ଦେଶର ଶିକ୍ଷା, ସ୍ୱାସ୍ଥ୍ୟ, ପରିବେଶ ସୁରକ୍ଷା, ଶିଶୁ ଓ ମହିଳା କଲ୍ୟାଣ କ୍ଷେତ୍ରରେ ଏହି ସଂସ୍ଥାଗୁଡ଼ିକ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି। ଯେଉଁସବୁ ନିପଟ ମଫସଲ ଅଞ୍ଚଳରେ ସରକାରୀ ବ୍ୟବସ୍ଥା ଅପହଞ୍ଚ, ସେଠାରେ ଏନ୍.ଜି.ଓ.ମାନେ କାର୍ଯ୍ୟରତ ଅଛନ୍ତି। ୨୦୦୭ ମସିହାରେ

ଭଲ୍ୟୁଣ୍ଟାରୀ ସେକ୍ଟର ପାଇଁ ଏକ ରାଷ୍ଟ୍ରୀୟ ନୀତି ପ୍ରଣୟନ କରାଯାଇଛି। ଦେଶର ସାମାଜିକ, ଆର୍ଥିକ ପ୍ରଗତିରେ ସ୍ୱେଚ୍ଛାସେବୀ ସଂସ୍ଥାଗୁଡ଼ିକର ଅମୂଲ୍ୟ ଅବଦାନକୁ ସ୍ୱୀକାର କରାଯାଇଛି। ଓଡ଼ିଶାରେ ପ୍ରାକୃତିକ ସଂପଦର ସୁରକ୍ଷା, ଜୀବନ ଜୀବିକାର ସୁରକ୍ଷା, ବିସ୍ଥାପନ ବିରୋଧୀ ସଂଗ୍ରାମ ଓ ଲୋକାଭିମୁଖୀ ଶାସନ ପ୍ରତିଷ୍ଠା ପାଇଁ ସ୍ୱେଚ୍ଛାସେବୀ ସଂଗଠନମାନେ କାର୍ଯ୍ୟରତ ଅଛନ୍ତି।

ଭାରତର ପୂର୍ବତନ ରାଷ୍ଟ୍ରପତି ଡକ୍ଟର ଏପିଜେ ଅବଦୁଲ କଲାମ 'ଇଣ୍ଡିଆ-୨୦୨୦ 'ଏ' ଭିଜନ୍ ଫର୍ ଦି ନିଉ ମିଲେନିୟମ୍' ପୁସ୍ତକରେ ମାନବ ସମ୍ବଳ ବିକାଶରେ ଘରୋଇ ସଂସ୍ଥା ଏବଂ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ବୋଲି ଅବତାରଣା କରିଛନ୍ତି। (ପୃଷ୍ଠା-୧୭୨-୧୮୦)

ଏନ୍.ଜି.ଓ.ମାନଙ୍କର ବହୁ ଦୁର୍ବଳତା ସତ୍ତ୍ୱେ ସେମାନଙ୍କର ସେବା ଯେ ଆମ ଦେଶ ପାଇଁ ଅପରିହାର୍ଯ୍ୟ ଏହା କହିଲେ ଭୁଲ୍ ହେବନାହିଁ। ଆମ ଦେଶ ଓ ରାଜ୍ୟର ଅଳ୍ପ କେତୋଟି ଏନ୍.ଜି.ଓ.ଙ୍କର ଉଦାହରଣ ଦେଲେ ସମସ୍ତେ ଜାଣିପାରିବେ ଯେ ସେମାନେ କିଭଳି ଦେଶର ବିକାଶରେ ନିଜକୁ ନିଷ୍ଠାର ସହିତ ନିୟୋଜିତ କରିଛନ୍ତି। ବିଜୟ ମହାଜନ ଓ ଦୀପ୍ ଜୋଷୀଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନ 'ପ୍ରଦାନ' (ପ୍ରଫେସନାଲ୍ ଆସିଷ୍ଟାନ୍ସ ଫର୍ ଡେଭେଲପ୍‌ମେଣ୍ଟ ଆକ୍ସନ୍), ଡକ୍ଟର ମନୁଭାଇ ଦେଶାଇଙ୍କ ଦ୍ୱାରା ପ୍ରତିଷ୍ଠିତ 'ବି.ଏ.ଆଇ.ଏଫ୍' (ଭାରତୀୟ ଆଗ୍ରୋ ଇଣ୍ଡଷ୍ଟ୍ରି ଫେଡ଼େରେସନ୍), ଇଲ୍ଲା ଭଟ୍ଟଙ୍କ ଦ୍ୱାରା ପ୍ରତିଷ୍ଠିତ ସଂସ୍ଥା 'ସେବା', ମ୍ୟାରୀ ନର୍ଥମାନ ହଜାରେଙ୍କ ଦ୍ୱାରା ପ୍ରତିଷ୍ଠିତ 'ସ୍ମାଇଲ୍ ଫାଉଣ୍ଡେସନ୍' ଏବଂ ଏ ବର୍ଷର ନୋବେଲ ଶାନ୍ତି ପୁରସ୍କାରପ୍ରାପ୍ତ କୈଳାସ ସତ୍ୟାର୍ଥୀଙ୍କ ଦ୍ୱାରା ପ୍ରତିଷ୍ଠିତ 'ବଚପନ ବଚାଓ ଆନ୍ଦୋଳନ' ଆଦି ଏହାର ଉଦାହରଣ। ସେହିପରି ଓଡ଼ିଶାରେ 'ସି.ୱାଇ.ଏସ୍.ଡି' (ସେଣ୍ଟର ଫର୍ ୟୁଥ୍ ଆଣ୍ଡ ସୋସିଆଲ୍ ଡେଭେଲପମେଣ୍ଟ), କଟକର 'ନ୍ୟାସନାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହେଲଥ ଆଣ୍ଡ ରୁରାଲ୍ ଡେଭେଲପମେଣ୍ଟ', କଳାହାଣ୍ଡିର 'ରାମକୃଷ୍ଣ ଆଶ୍ରମ', ଭୁବନେଶ୍ୱରର 'ଜୀବନରେଖା ପରିଷଦ', 'ଆଶା', 'ମା'ଘର' ଓ 'ସ୍ୱର୍ଗ', ନୟାଗଡ଼ର 'ସମ୍ଭବ', କୋରାପୁଟର 'ଶୋଭା', କଳାହାଣ୍ଡିର 'ମଦତ' ପ୍ରଭୃତି ନାମ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ।

ଗୁଇନ୍ଦା ବିଭାଗର ଯୁଗ୍ମ ନିର୍ଦ୍ଦେଶକ ଏସ୍.ଏ. ରିଜ୍‌ଭି ଦେଇଥିବା ତଥ୍ୟରେ ମଧ୍ୟ ଗୁରୁତର ତ୍ରୁଟି ରହିଛି। ସେଥିରେ ବନୱାରିଲାଲ ଶର୍ମା ନାମକ ଜଣେ ବ୍ୟକ୍ତିଙ୍କର ନାମ

ଉଲ୍ଲେଖ ରହିଛି, ଯାହାଙ୍କର ମୃତ୍ୟୁ ୨୬ ସେପ୍ଟେମ୍ବର ୨୦୧୨ରେ ହୋଇଥିଲା, ତେଣୁ ରିଜ୍‌ଭି ତାଙ୍କ ତଥ୍ୟର ପୁନଃସମୀକ୍ଷା କରିବା ଦରକାର କିମ୍ବା ବର୍ତ୍ତମାନ ପ୍ରଧାନମନ୍ତ୍ରୀଙ୍କ ଦପ୍ତରରେ କାର୍ଯ୍ୟରତ ଗୋଇନ୍ଦାବିଭାଗର ଅବସରପ୍ରାପ୍ତ ପୋଲିସ ମହାନିର୍ଦ୍ଦେଶକ ଅଜିତ ଡୋଭଲ ଏହି ରିପୋର୍ଟର ପୁଙ୍ଖାନୁପୁଙ୍ଖ ତଦନ୍ତ କରିବା ଉଚିତ।

*ସମୟ -୧୦.୧୧.୨୦୧୪*

# ଭାରତରେ ଅସହିଷ୍ଣୁତା ବଢ଼ିଛି

ଅକ୍ଟୋବର ମାସ ପ୍ରଥମ ସପ୍ତାହରୁ ଗଣମାଧ୍ୟମରେ ଧୀରେ ଧୀରେ ଚର୍ଚ୍ଚା ଆରମ୍ଭ ହେଲା ଯେ, ଦେଶରେ ଧର୍ମ ନାମରେ ଏକ ଅସୁରକ୍ଷାର ବାତାବରଣ ବଢ଼ିବାରେ ଲାଗିଛି। ଯେଉଁଦିନ ଇନ୍ଦିରା ଗାନ୍ଧୀଙ୍କ ୮୮ ବର୍ଷ ବୟସ୍କା ପିଉସୀ ଝିଅ ଭଉଣୀ ନୟନତାରା ସେହେଗାଲ ୧୯୮୬ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀରୁ ପାଇଥିବା ପୁରସ୍କାର ଫେରାଇ ଦେଲେ, ସେହିଦିନଠାରୁ ଏ ପ୍ରବନ୍ଧ ଲେଖିଲା ପର୍ଯ୍ୟନ୍ତ ଦେଶରେ ଅସହିଷ୍ଣୁତା ବୃଦ୍ଧି ପାଇଛି ଏବଂ କେନ୍ଦ୍ର ସରକାର ନିରବଦ୍ରଷ୍ଟା ସାଜିଛନ୍ତି ଅଭିଯୋଗ କରି ପ୍ରାୟ ୭୦ରୁ ଅଧିକ ସାହିତ୍ୟିକ, କଳାକାର, ବୈଜ୍ଞାନିକ, ସିନେମା ନିର୍ମାତା ସେମାନଙ୍କର ପଦ୍ମ ପୁରସ୍କାର ଓ କେନ୍ଦ୍ର ସାହିତ୍ୟ ଏକାଡେମୀରୁ ପାଇଥିବା ପୁରସ୍କାର ଫେରାଇ ଦେଇଛନ୍ତି। ୧୦ ଅକ୍ଟୋବର ୨୦୧୫ ଦିନ ୯୦ ବର୍ଷୀୟା କୃଷ୍ଣା ସୋବତୀ ତାଙ୍କର 'ସାହିତ୍ୟ ଏକାଡେମୀ ଫେଲୋ' ପଦବୀ ଫେରାଇବା ସହିତ ଏକାଡେମୀରୁ ପାଇଥିବା ପୁରସ୍କାର ମଧ୍ୟ ଫେରାଇ ଦେଇଥିଲେ। ୨୩ ନଭେମ୍ବର ଦିନ ବଲିଉଡ଼ ସୁପରଷ୍ଟାର ଅମୀର ଖାଁ ନୂଆଦିଲ୍ଲୀରେ ଏକ ଟେଲିଭିଜନ କାର୍ଯ୍ୟକ୍ରମରେ ଭାଗନେଇ କହିଲେ ଯେ, ଭାରତରେ ଅସହିଷ୍ଣୁତା ବଢ଼ିଛି ଓ ତାଙ୍କ ଦ୍ୱିତୀୟ ପତ୍ନୀ କିରଣ ରାଓ ମର୍ମାହତ ହୋଇ ସେମାନେ ଭାରତ ଛାଡ଼ି ପଳାଇବାକୁ ତାଙ୍କୁ ପ୍ରବର୍ତ୍ତାଉଛନ୍ତି ବୋଲି କହିବା ପରେ ଏହା ଦେଶବାସୀଙ୍କୁ ହତବାକ କରିଛି। ତାଙ୍କ ପୂର୍ବରୁ ଚିତ୍ରତାରକା ଶାହାରୁଖ ଖାଁ ତାଙ୍କ ୫୦ତମ ଜନ୍ମଦିନରେ ଭାରତରେ ଚରମ ଅସହିଷ୍ଣୁତା ଦେଖିବାକୁ ମିଳୁଛି ବୋଲି କହି ଆବଶ୍ୟକ ହେଲେ 'ପଦ୍ମଶ୍ରୀ' ସମ୍ମାନ ଫେରାଇପାରନ୍ତି ବୋଲି କହିଥିଲେ। କିନ୍ତୁ ନିଛକ ସତ୍ୟ ପରିବେଷଣ କରିଛନ୍ତି, ପ୍ରସିଦ୍ଧ ଦକ୍ଷିଣ ଭାରତର ଚିତ୍ରତାରକା କମଲ ହାସନ। ସେ କହିଛନ୍ତି ଯେ, ୧୯୪୭ ମସିହାରୁ ହିଁ ଭାରତବାସୀ ଘୋର ଅସହିଷ୍ଣୁତାର ଶିକାର ହୋଇଛନ୍ତି ଏବଂ ପରିଣାମସ୍ୱରୂପ ଦେଶ ବିଭାଜିତ ହୋଇଛି। ଏବେ ଅସହିଷ୍ଣୁତାକୁ ବିରୋଧ କରି ଯେଉଁମାନେ ପୁରସ୍କାର ଫେରାଉଛନ୍ତି, ତାହା କେବଳ ଶସ୍ତା ଲୋକପ୍ରିୟତା ପାଇଁ ଉଦ୍ଦିଷ୍ଟ। ଲୋକପ୍ରିୟ ଅଭିନେତ୍ରୀ ହେମାମାଳିନୀ ପୁରସ୍କାର ଫେରାଇବାର ଧାରାକୁ ତୀବ୍ର ସମାଲୋଚନା କରି କହିଛନ୍ତି ଯେ, ଏହା

ବିରୋଧୀଙ୍କର ଏକ ଷଡ଼ଯନ୍ତ୍ର। ବଲିଉଡ଼ର ଅନ୍ୟତମ ନାୟିକା ବିଦ୍ୟା ବାଲାନ ରୋକଠୋକ ଶୁଣାଇଛନ୍ତି ଯେ, ଦେଶ ପ୍ରଦାନ କରିଥିବା ସମ୍ମାନ ଓ ପୁରସ୍କାରକୁ ସେ କେବେ ବି ଫେରାଇବେ ନାହିଁ।

ଭାରତରେ ୨୦୧୪ ମସିହା ମେ' ମାସରେ ଏନ୍‌ଡିଏ ସରକାର ଆସିଲା ପରେ ଦେଶର ଆର୍ଥିକ ଓ ବ୍ୟବସାୟିକ କ୍ଷେତ୍ରରେ ଉନ୍ନତି ଘଟିଛି ବୋଲି ବିଶ୍ୱ ବ୍ୟାଙ୍କ୍ ପ୍ରକାଶ କରିଛି। ଏନ୍‌ଡିଏ ସରକାରଙ୍କ ସକାରାତ୍ମକ ନୀତି ଉଲ୍ଲେଖନୀୟ ସଫଳତା ହାସଲ କରିଥିବାରୁ ଭାରତୀୟ ପୁଞ୍ଜି ବଜାର ବିଶ୍ୱାସନୀୟତା ହାସଲ କରିଛି ଏବଂ ବିଦେଶୀ ପୁଞ୍ଜି ନିବେଶକାରୀମାନେ ଭାରତରେ ପୁଞ୍ଜିନିବେଶ କରିବାକୁ ଆଗ୍ରହ ପ୍ରକାଶ କଲେଣି। ଏହା ଜାଣିଥିଲେ ମଧ୍ୟ ସ୍ୱଳ୍ପକିଛି ସାହିତ୍ୟିକ, କଳାକାର, ବୈଜ୍ଞାନିକ, ଶିକ୍ଷାବିତ୍ ପ୍ରଭୃତି ଗତ ୧୮ ମାସରେ ହୋଇଥିବା ଛୋଟ ଛୋଟ ଘଟଣାକୁ ସାଂପ୍ରଦାୟିକ ରଙ୍ଗ ଦେଇ ଦେଶରେ ଏକ ଭୟର ବାତାବରଣ ସୃଷ୍ଟି କରିବାରେ ଲାଗିଛନ୍ତି। ଭାରତର ସବୁ ଅଞ୍ଚଳରେ ସାମାଜିକ ଶାନ୍ତି, ସୌହାର୍ଦ୍ଦ୍ୟ ଏବେ ବି ସୁଦୃଢ଼ ରହିଛି। ଦେଶର ଏକତା ଓ ସଂହତି ପ୍ରତି କେଉଁଠି ହେଲେ ବିପଦ ସୃଷ୍ଟି ହୋଇନାହିଁ। ତଥାପି ବାମପନ୍ଥୀ ଚିନ୍ତାଧାରାର ବ୍ୟକ୍ତି ଓ କଂଗ୍ରେସ ଶାସନ ସମୟରେ ବହୁ ସୁବିଧା ସୁଯୋଗ ହାସଲ କରିଥିବା ବ୍ୟକ୍ତିମାନେ ବିଜେପି କେନ୍ଦ୍ରରେ କ୍ଷମତାସୀନ ହେବାକୁ ସହ୍ୟ କରିପାରୁ ନାହାଁନ୍ତି। ସେମାନେ ନରେନ୍ଦ୍ର ମୋଦି ସରକାରଙ୍କ ପ୍ରତି ଅସହନଶୀଳ ଓ ସରକାରର ତ୍ରୁଟି ଖୋଜିବାରେ ବ୍ୟସ୍ତ। ରାଷ୍ଟ୍ରପତି ପ୍ରଣବ ମୁଖାର୍ଜୀ ଦେଶବାସୀଙ୍କୁ ସହିଷ୍ଣୁତା ଭାରତର ଆତ୍ମା, ବହୁ ବିବିଧତା ମଧ୍ୟରେ ଭାରତବାସୀ ସର୍ବଦା ଏକତା ପ୍ରଦର୍ଶନ କରିଛନ୍ତି ବୋଲି ଚେତାଇଦେଇ ଦେଶବାସୀଙ୍କୁ ସେହି ପଥରେ ଅଗ୍ରସର ହେବାକୁ ପରାମର୍ଶ ଦେଇଛନ୍ତି। ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ମଧ୍ୟ ସଂସଦରେ କହିଛନ୍ତି ଯେ, ଦେଶର ଏକମାତ୍ର ଧର୍ମଗ୍ରନ୍ଥ 'ଭାରତୀୟ ସମ୍ବିଧାନ', ଦେଶର ସମସ୍ତଙ୍କ ମନ୍ତ୍ର 'ଇଣ୍ଡିଆ ଫାଷ୍ଟ' ଓ ଏକମାତ୍ର ଭକ୍ତି ହେଉଛି 'ଦେଶଭକ୍ତି'।

ଦେଶରେ କିଛି ଅଘଟଣ ନ ଘଟିଛି ତାହା ନୁହେଁ। ୨୮ ସେପ୍ଟେମ୍ବରରେ ଉତ୍ତରପ୍ରଦେଶର 'ଦାଦ୍ରୀ'ର ବିସାଦା ଗ୍ରାମରେ ଏକ ବିଶୃଙ୍ଖଳ ହିନ୍ଦୁ ଗୋଷ୍ଠୀ ମହମ୍ମଦ ଅଖଲାକଙ୍କୁ ହତ୍ୟା କରିବା ଅତ୍ୟନ୍ତ ନିନ୍ଦନୀୟ ଘଟଣା ଥିଲା, ତାହାକୁ ନରେନ୍ଦ୍ର ମୋଦି ତତ୍‌କ୍ଷଣାତ୍ ନିନ୍ଦା ନ କରିବାରୁ ତାଙ୍କୁ ସମାଲୋଚନାର ଶିକାର ହେବାକୁ ପଡ଼ିଛି। ୨୦୧୩ ମସିହାରେ ମହାରାଷ୍ଟ୍ରରେ ହେତୁବାଦୀ ନେତା ନରେନ୍ଦ୍ର ଡାଭୋଲକରଙ୍କୁ

ହତ୍ୟା କରାଯାଇଥିଲା। ସେତେବେଳେ ଲେଖକ ଓ କଳାକାରମାନେ ଚୁପ୍ ରହିବାକୁ ଶ୍ରେୟ ମଣିଥିଲେ। ଏବେ ୩୦ ଅଗଷ୍ଟ ୨୦୧୫ରେ କର୍ଣ୍ଣାଟକରେ ଲେଖକ ଏମ୍. କୁଲବର୍ଗୀଙ୍କୁ ହତ୍ୟା କରାଗଲା ପରେ ଏନ୍‌ଡିଏ ସରକାରକୁ ବିବାଦକୁ ଟାଣୁଛନ୍ତି। ଅବଶ୍ୟ କେତେକ ମୁଷ୍ଟିମେୟ ବିଜେପି ନେତା ସାକ୍ଷୀ ମହାରାଜ, ଯୋଗୀ ଆଦିତ୍ୟନାଥ, ସାଧ୍ୱୀ ପ୍ରାଚୀ ପ୍ରଭୃତିଙ୍କ ଦାୟିତ୍ୱହୀନ ବକ୍ତବ୍ୟ ସଂଖ୍ୟାଲଘୁମାନଙ୍କ ମଧ୍ୟରେ ଅସନ୍ତୋଷ ସୃଷ୍ଟି କରୁଛି। ପ୍ରଧାନମନ୍ତ୍ରୀ ଓ ବିଜେପି ନେତୃବୃନ୍ଦ ସେମାନଙ୍କ ଉପରେ ଅଙ୍କୁଶ ଲଗାଇବା ଉଚିତ୍ ହେବ।

ପ୍ରଶ୍ନ ଉଠେ ୧୯୮୪ରେ ଦିଲ୍ଲୀରେ କଂଗ୍ରେସ ସରକାର ଅମଳରେ ୩ ହଜାରରୁ ଉର୍ଦ୍ଧ୍ୱ ଶିଖଙ୍କୁ ହତ୍ୟା କରାଗଲା। ସୈନ୍ୟବାହିନୀ ପୋଷାକ ପିନ୍ଧିଥିବା ଶିଖ୍ ସୈନ୍ୟମାନଙ୍କୁ ମଧ୍ୟ ହତ୍ୟାର ଶିକାର ହେବାକୁ ପଡ଼ିଥିଲା। କାହିଁ ସେତେବେଳେ ତ ନୟନତାରା ସେହଗାଲ ଓ କୃଷ୍ଣା ସୋବତୀ ପଦେ ହେଲେ କହି ସରକାରଙ୍କୁ ନିନ୍ଦା କଲେ ନାହିଁ। ୧୯୮୬ ମସିହାରେ କାଶ୍ମୀରର ଅନନ୍ତନାଗ ଜିଲ୍ଲାରେ ସାଂଘାତିକ ଦଙ୍ଗା ପରେ ଲକ୍ଷ ଲକ୍ଷ କାଶ୍ମୀର ପଣ୍ଡିତଙ୍କୁ ସେଠାରୁ ତଡ଼ି ଦିଆଗଲା। ସେମାନେ ଏବେ ଦୁଃଖ ସହ ଜୀବନଯାପନ କରୁଛନ୍ତି। ସେତେବେଳେ ତ କାହିଁକି କେହି ପୁରସ୍କାର ଫେରାଇଲେ ନାହିଁ? ୨୦୧୩ରେ ଉତ୍ତରପ୍ରଦେଶର ମୁଜାଫର ନଗରରେ ହୋଇଥିବା ଦଙ୍ଗାରେ ବହୁ ଧନଜୀବନ ହାନି ହୋଇଥିଲେ ମଧ୍ୟ ସେତେବେଳେ ସାହିତ୍ୟିକ ଗୋଷ୍ଠୀ କାହିଁକି ନିରବ ରହିଥିଲେ? ଏବେ ମୋଦି ସରକାରକୁ ଦେଶ ବିଦେଶରେ ବଦନାମ କରିବାକୁ ଏହା ମୁଷ୍ଟିମେୟ ବ୍ୟକ୍ତିଙ୍କର ଚକ୍ରାନ୍ତ କହିଲେ ଭୁଲ ହେବନାହିଁ। ପୁରସ୍କାର ଫେରାଉଥିବା ବ୍ୟକ୍ତିମାନେ ବୁଝିବା ଉଚିତ୍ ଯେ, ସେମାନଙ୍କ କାର୍ଯ୍ୟ ସଂଖାଲଘୁମାନଙ୍କ ମନରେ ଭୟ ସୃଷ୍ଟି କରିବ ଓ ବିଦେଶରେ ଭାରତର ସୁନାମ କ୍ଷୁଣ୍ଣ ହେବ।

୨୩ ଅକ୍ଟୋବରରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଏକ ବିଶେଷ ବୈଠକରେ ଲେଖକମାନଙ୍କ ଉପରେ ହେଉଥିବା ଆକ୍ରମଣକୁ ନିନ୍ଦା କରି ରାଜ୍ୟ ଓ କେନ୍ଦ୍ର ସରକାରମାନଙ୍କୁ ଏହା ବନ୍ଦ କରିବାକୁ ପଦକ୍ଷେପ ନେବାକୁ ଅନୁରୋଧ ଜଣାଇଛନ୍ତି। ଅସୁରକ୍ଷା ଓ ଅସହିଷ୍ଣୁତାର ବାତାବରଣ ପାଇଁ ସାଧାରଣତଃ ବୁଦ୍ଧିଜୀବୀମାନେ ହିନ୍ଦୁ ମହାସଭା, ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘକୁ ଦାୟୀ କରିଛନ୍ତି, କିନ୍ତୁ ଏହା ଠିକ୍ ବୋଲି କହିହେବ ନାହିଁ। ଏଠାରେ ଏକ ଉଦାହରଣ ଦେବା ସମୀଚୀନ ହେବ। ଗତ ଦୁର୍ଗାପୂଜା ପାଳନ ବେଳେ ଆରଏସ୍‌ଏସ୍‌ର ମୁଖ୍ୟ ମୋହନ ଭାଗବତ ଧର୍ମ କ'ଣ ବୋଲି ବୁଝାଇ

କହିଛନ୍ତି ଯେ, ଯାହା ଦେଶର ସମସ୍ତଙ୍କୁ ଏକତା ସୂତ୍ରରେ ବାନ୍ଧି ରଖିପାରେ, ତାହା ହିଁ ପ୍ରକୃତ ଧର୍ମ। ଏହିଭଳି ବକ୍ତବ୍ୟ ଶୁଣିଲା ପରେ ଆରଏସ୍‌ଏସ୍ ଦେଶରେ ଅସୁରକ୍ଷାର ବାତାବରଣ ସୃଷ୍ଟି କରୁଛି କହିବା ନ୍ୟାୟୋଚିତ ହେବନାହିଁ। ଅନ୍ୟ ଗୋଟିଏ କଥା ମଧ୍ୟ ନଜରକୁ ଆସୁଛି। ମୋଦି ସରକାର ଆସିବା ପରେ ମାନବ ସମ୍ବଳ ବିକାଶ ଓ ସଂସ୍କୃତି ବିଭାଗ ଅଧୀନରେ ଥିବା ପ୍ରାୟ ୩୦ଟି ସଂସ୍ଥା ମଧ୍ୟରୁ କିଛି ସଂସ୍ଥାରେ ଅଧିଷ୍ଠିତ ପଦାଧିକାରୀଙ୍କୁ ପରିବର୍ତ୍ତନ କରାଯାଇଅଛି। ଏହି ପରିବର୍ତ୍ତନକୁ ଗୈରିକୀକରଣ ପ୍ରକ୍ରିୟାର ଆରମ୍ଭ ବୋଲି କୁହାଯାଉଛି। ତଥାକଥିତ ସେକୁଲାରିଷ୍ଟମାନେ ଚାହାଁନ୍ତି ଶିକ୍ଷା, ସଂସ୍କୃତି, ସାହିତ୍ୟ ସମ୍ବନ୍ଧୀୟ ସମସ୍ତ ଅନୁଷ୍ଠାନରେ ସେମାନେ ଗାଦି ମାଡ଼ିବସି ବିଜେପି ବିରୋଧୀ ବାତାବରଣ ସୃଷ୍ଟି କରି ଦେଶରେ ଏକ ଅସ୍ଥିରତାର ପ୍ରକ୍ରିୟା ଆରମ୍ଭ କରିବା। ସେମାନେ ଆରମ୍ଭ କରିଦେଇଥିଲେ ଦସ୍ତଖତ ସଂଗ୍ରହ ଅଭିଯାନ, ଦିଲ୍ଲୀର ରାଜରାସ୍ତାରେ ଶୋଭାଯାତ୍ରା ଓ ଗଣମାଧ୍ୟମରେ ଅସ୍ଥିରତା ସମ୍ପର୍କରେ ଆଲୋଚନା କରି ସରକାରଙ୍କୁ ବଦନାମ କରିବାର ପ୍ରକ୍ରିୟା, ଯାହା ସଫଳ ହୋଇନାହିଁ। ଦେଶବାସୀ ଭଲଭାବରେ ଜାଣନ୍ତି ଯେ, ଭିନ୍ନ ମତାବଲମ୍ବୀମାନେ ଭାରତରେ ସୁରକ୍ଷିତ। ଏହି ଅସହିଷ୍ଣୁତାର ଦ୍ୱାହି ଦେଇ ଆନ୍ଦୋଳନ ଯେ ରାଜନୈତିକ ଉଦ୍ଦେଶ୍ୟ ପ୍ରଣୋଦିତ ତାହା ଜଳ ଜଳ ହୋଇ ଦିଶୁଛି। ପ୍ରସିଦ୍ଧ ଅଭିନେତା ଅନୁପମ ଖେର ଉପରୋକ୍ତ ମତବ୍ୟକ୍ତ କରିବା ସହିତ କହିଛନ୍ତି ଯେ, ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦିଙ୍କୁ ବଦନାମ କରିବା ଏହି ଆନ୍ଦୋଳନକାରୀମାନଙ୍କର ଲୁକ୍କାୟିତ ଉଦ୍ଦେଶ୍ୟ। ଭାରତରେ ଅସହିଷ୍ଣୁତା ବଢ଼ିଛି କହିବା ସତ୍ୟର ଅପଳାପ କହିଲେ ଅତ୍ୟୁକ୍ତି ହେବନାହିଁ।

*ସମୟ - ୦୪.୧୨.୨୦୧୫*

# ସଙ୍କଟାପନ୍ନ ଅର୍ଥନୀତି ଓ ବିଜୟ ମାଲ୍ୟା ଉପାଖ୍ୟାନ

ନରେନ୍ଦ୍ର ମୋଦି ୨୦୧୪ରେ ପ୍ରଧାନମନ୍ତ୍ରୀ ହେବାପରେ ଜନସାଧାରଣଙ୍କ ବିଶ୍ୱାସ ଥିଲା ଯେ, ସେ ଦେଶର ଆର୍ଥିକ ଅବସ୍ଥାରେ ଉନ୍ନତି ଆଣିବାରେ ସଫଳ ହେବେ। ସେ ମଧ୍ୟ ୨ ନଭେମ୍ବର ୨୦୧୪ରେ 'ମନ୍ କି ବାତ୍' କାର୍ଯ୍ୟକ୍ରମରେ ଦେଶବାସୀଙ୍କୁ ଭରସା ଦେଇଥିଲେ ଯେ, ବିଦେଶରେ ଗଚ୍ଛିତ ସମସ୍ତ କଳାଟଙ୍କା ତାଙ୍କ ସରକାର ଦେଶକୁ ଫେରାଇ ଆଣିବେ। ତାଙ୍କର ଏହି ପ୍ରତିଶ୍ରୁତି ପରେ ବିଜେପିର ବରିଷ୍ଠ ନେତା ସୁବ୍ରମଣ୍ୟମ୍ ସ୍ୱାମୀ ନଭେମ୍ବର ୯ ତାରିଖ ଦିନ ଭୁବନେଶ୍ୱରରେ ସାମ୍ବାଦିକମାନଙ୍କୁ କହିଲେ ଯେ, ଭାରତୀୟମାନଙ୍କର ବିଶ୍ୱର ୭୦ଟି ଦେଶରେ ବିଭିନ୍ନ ବ୍ୟାଙ୍କରେ ପାଖାପାଖି ୧୨୦ ଲକ୍ଷ କୋଟି ଟଙ୍କା ଗଚ୍ଛିତ ରହିଛି, ତାହା ମୋଦି ସରକାର ବର୍ଷକ ମଧ୍ୟରେ ଫେରାଇ ଆଣିବେ; କିନ୍ତୁ ମୋଦି ସରକାର ତାଙ୍କ କାର୍ଯ୍ୟକାଳ ଦୁଇବର୍ଷ ପୂରଣ କରିଥିଲେ ମଧ୍ୟ ତାହା ଏପର୍ଯ୍ୟନ୍ତ ହୋଇପାରିନାହିଁ, ପ୍ରଚେଷ୍ଟା ଜାରି ରହିଛି।

ଅନ୍ୟାନ୍ୟ ବହୁ କାରଣ ମଧ୍ୟରୁ ଗୋଟିଏ କାରଣ ଯାହାକି ଭାରତୀୟ ଅର୍ଥ ବ୍ୟବସ୍ଥାକୁ ରୁଗ୍ଣ କରି ଦେଉଛି, ତାହା ହେଲା ଭାରତୀୟ ବ୍ୟାଙ୍କଗୁଡ଼ିକର ଅନାଦେୟ ଋଣ। ବ୍ୟାଙ୍କମାନଙ୍କର ଅନାଦେୟ ଋଣ ସମ୍ପର୍କରେ ଏବେ ଜୋର ଆଲୋଚନା ଧରିଛି। ମଦସମ୍ରାଟ, କିଙ୍ଗ୍‌ଫିସର ଏୟାର ଲାଇନ୍ସର ମାଲିକ, ୟୁନାଇଟେଡ୍ ବ୍ରିୱେରିଜ୍‌ର ଅଧ୍ୟକ୍ଷ, ସାଂସଦ ବିଜୟ ମାଲ୍ୟା ୯ ହଜାର ୯୧ କୋଟି ଟଙ୍କା ଷ୍ଟେଟ୍‌ବ୍ୟାଙ୍କ ସମେତ ୧୭ଟି ବ୍ୟାଙ୍କରୁ କରିଥିବା ଋଣ ପରିଶୋଧ ନକରି ୨ ମାର୍ଚ୍ଚ ୨୦୧୬ ଦିନ ଇଂଲଣ୍ଡକୁ ପଳାୟନ କରିଛନ୍ତି। ଆମ ଦେଶରେ ପ୍ରଚଳିତ ଆଇନ ତାଙ୍କ ଭଳି ଦୁର୍ଦ୍ଦାନ୍ତ, ଶଠ ବ୍ୟକ୍ତିଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ କରିବାରେ ବିଫଳ ହେଉଛି। ଏକ ପରିସଂଖ୍ୟାନରୁ ଜଣା ପଡ଼ିଛି ଯେ, ଏବେ ବ୍ୟାଙ୍କମାନଙ୍କର ଅନାଦେୟ ଋଣ ବିଭିନ୍ନ ବ୍ୟକ୍ତି ଓ ସଂସ୍ଥାମାନଙ୍କ ଉପରେ ପାଖାପାଖି ପାଞ୍ଚଲକ୍ଷ କୋଟି ଟଙ୍କା ରହିଛି। ଏହି ଅନାଦେୟ ଋଣ ବୋଝରେ ଦେଶର ବ୍ୟାଙ୍କିଙ୍ଗ୍ ବ୍ୟବସ୍ଥା ଦୋହଲି ଯାଇଛି। ଭାରତୀୟ ବ୍ୟାଙ୍କଗୁଡ଼ିକର କାର୍ଯ୍ୟଧାରାକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ, ସେମାନେ ସବୁବେଳେ ବଡ଼ବଡ଼

ବ୍ୟବସାୟୀ ଓ ଶିଳ୍ପପତିଙ୍କୁ ଋଣ ଦେଲାବେଳେ କୋହଳ ମନୋଭାବ ଗ୍ରହଣ କରିଥାନ୍ତି। ଦେଶର ଧନୀ ବ୍ୟକ୍ତିମାନେ ଓ ସେମାନଙ୍କ ଦ୍ୱାରା ପରିଚାଳିତ ସଂସ୍ଥା ଜାଣିଶୁଣି ଋଣ ପଇଠ କରୁନାହାଁନ୍ତି। ବ୍ୟାଙ୍କଗୁଡ଼ିକ ସେମାନଙ୍କ ସମ୍ପତ୍ତି ବାଜ୍ୟାପ୍ତି କରିବାରେ ଓ ଋଣ ଆଦାୟ କରିବାରେ ବିଫଳ ହେଉଛନ୍ତି। ସାଧାରଣଲୋକେ ବିଶ୍ୱାସ କରୁଛନ୍ତି ଯେ, ଋଣ ନେଇଥିବା ଏହି ବ୍ୟକ୍ତି ଓ ସଂସ୍ଥାମାନଙ୍କ ସହିତ ବ୍ୟାଙ୍କ କର୍ମଚାରୀଙ୍କ ସଲାସୁତୁରାରେ ଏହି ଅନାଦେୟ ଋଣ ପାଲା ଚାଲିଛି। ଏହି ଋଣ ଯଦି ଆଦାୟ ହୋଇପାରନ୍ତା, ତେବେ ଦେଶରେ ଶିକ୍ଷିତ ବେକାର ଯୁବକମାନଙ୍କୁ ଆତ୍ମନିଯୁକ୍ତି ପାଇଁ ପ୍ରତ୍ୟେକଙ୍କୁ ଦୁଇ ଲକ୍ଷ ଟଙ୍କା ଦେଲେ ମଧ୍ୟ ବ୍ୟାଙ୍କମାନଙ୍କର କିଛି କ୍ଷତି ହୁଅନ୍ତା ନାହିଁ।

କେତେକ ବ୍ୟକ୍ତି ମଧ୍ୟ କୁହନ୍ତି ଯେ, ବଡ଼ ବଡ଼ ଲୋକଙ୍କୁ ଋଣ ଦେବା ପାଇଁ କ୍ଷମତାସୀନ ରାଜନୈତିକ ଦଳର ନେତାମାନେ ଚାପ ପ୍ରୟୋଗ କରିଥାନ୍ତି। ସମୟକ୍ରମେ ଏହି ବଡ଼ବଡ଼ ଋଣ ଖିଲାପକାରୀମାନଙ୍କୁ ବିଭିନ୍ନ ଆଳରେ ଋଣ ମାଫ୍ କରିଦିଆଯାଇଥାଏ। ବ୍ୟାଙ୍କମାନେ ମଧ୍ୟ ଋଣ ମାଫ୍ କଲାବେଳେ ଚାପଗ୍ରସ୍ତ ହୋଇ ଏଥିରେ ଆପତ୍ତି କରିବାରୁ କ୍ଷାନ୍ତ ରହିଥାନ୍ତି। ଏଠାରେ ଗୋଟିଏ ଉଦାହରଣ ଦେବା ପ୍ରଯୁଜ୍ୟ- ଆଶ୍ଚର୍ଯ୍ୟ ଲାଗେ ଯେ ୨୦୧୩ ମସିହାରୁ ୨୦୧୫ ମସିହା ମଧ୍ୟରେ ବ୍ୟାଙ୍କମାନେ ବଡ଼ବଡ଼ିଆ ବିତ୍ତଶାଳୀ ଲୋକଙ୍କର ପ୍ରାୟ ଏକଲକ୍ଷ ଏଗାର ହଜାର କୋଟି ଟଙ୍କାର ଋଣ ମାଫ କରିଦେଇଛନ୍ତି।

ଜାଣିଲେ ଦୁଃଖ ଲାଗିବ ଯେ, ଆମ ଦେଶରେ ଏହି ବ୍ୟାଙ୍କଗୁଡ଼ିକର କ୍ଷମତାସୀନ ଅଧିକାରୀମାନେ କୃଷି କ୍ଷେତ୍ରରେ ଋଣ ଦେବାକୁ ବହୁ ପଛଘୁଞ୍ଚା ଦିଅନ୍ତି ଏବଂ ଟାଳଟୁଳ ନୀତି ଅବଲମ୍ବନ କରି ଚାଷୀଟିକୁ ବାରମ୍ବାର ବ୍ୟାଙ୍କକୁ ଦଉଡ଼ାଇଥା'ନ୍ତି। କିନ୍ତୁ କୃଷକମାନଙ୍କଠାରୁ ଋଣ ଆଦାୟ କ୍ଷେତ୍ରରେ ଅତ୍ୟନ୍ତ ତତ୍ପରତା ଦେଖାନ୍ତି ଏବଂ ସେମାନଙ୍କୁ ନିଷ୍ଠୁର ବ୍ୟବହାର କରନ୍ତି। ସମସ୍ତ ଆଇନଗତ ବ୍ୟବସ୍ଥା ସେମାନଙ୍କ ବିରୁଦ୍ଧରେ ପ୍ରୟୋଗ କରନ୍ତି। ବିଚରା କୃଷକ ଋଣ ପରିଶୋଧ ନକରିପାରି ଅନନ୍ୟୋପାୟ ହୋଇ ଆତ୍ମହତ୍ୟା କରିବାକୁ ବାଧ୍ୟ ହୁଏ। ବିଶିଷ୍ଟ ସ୍ତମ୍ଭକାର ଓ ସମାଜସେବୀ ପି. ସାଇନାଥ କହିଲେ ଯେ, ଭାରତର ବିଭିନ୍ନ ପ୍ରଦେଶରେ ୧୯୯୭ଠାରୁ ୨୦୦୫ ମସିହା ମଧ୍ୟରେ ନ୍ୟାସ୍‌ନ୍ୟାଲ କ୍ରାଇମ୍ ରେକର୍ଡ଼ ବ୍ୟୁରୋ (ଏନ୍.ସି.ଆର୍.ବି)ର ତଥ୍ୟ ଅନୁଯାୟୀ ଦେଢ଼ଲକ୍ଷ କୃଷକ ଆତ୍ମହତ୍ୟା କରିଛନ୍ତି। ଏହି ସଂଖ୍ୟା ମଧ୍ୟ ଆହୁରି ଅଧିକା ହୋଇପାରେ। ଏହି କୃଷକମାନଙ୍କ ମଧ୍ୟରୁ ଅନେକ ଋଣ କରିଥିବା ଅର୍ଥ ଶୁଝି

ନପାରି ଜୀବନ ହରାଇ ଦେବା ଭଳି ଚୂଡ଼ାନ୍ତ ପଦକ୍ଷେପ ନେଇଛନ୍ତି।

ଉପରେ ପ୍ରଦତ୍ତ ଉଦାହରଣରୁ ବ୍ୟାଙ୍କମାନେ କିଭଳି ବିଭିନ୍ନ କ୍ଷେତ୍ରରେ ଦୋହରା ମାପଦଣ୍ଡ ଗ୍ରହଣ କରୁଛନ୍ତି, ତାହା ସ୍ପଷ୍ଟ ହୋଇଯାଉଛି। ବିଜୟ ମାଲ୍ୟାଙ୍କୁ ସୁପ୍ରିମକୋର୍ଟ ଅଦ୍ୟାବଧି ତିନିତିନି ଥର ନୋଟିସ ଜାରି କରି ତାଙ୍କର ସମ୍ପତ୍ତି ତାଲିକା ଦାଖଲ କରିବାକୁ ନିର୍ଦ୍ଦେଶ ଦେଲେଣି। ସେ ଯେଉଁ ସମ୍ପତ୍ତି ତାଲିକା ଦାଖଲ କରିଛନ୍ତି ତାହା ଠିକ୍ ନୁହେଁ ବୋଲି ଭାରତୀୟ ଷ୍ଟେଟ୍ ବ୍ୟାଙ୍କ ନେତୃତ୍ୱାଧିନ ସତରଟି ବ୍ୟାଙ୍କର କନ୍‌ସୋର୍ଟିୟମ୍‌ଙ୍କ ତରଫରୁ ଆଟର୍ଣ୍ଣି ଜେନେରାଲ ମୁକୁଲ ରୋହତଗି ଅଦାଲତରେ ଦର୍ଶାଇ ଥିଲେ। ଗୋଟେ ଜଣାଶୁଣା ତଥ୍ୟ ହେଲା, ବ୍ରିଟିଶ ମଦ କମ୍ପାନୀ ଡ଼ିଆଗୋଠାରୁ ନେଇଥିବା ୪୫ନିୟୁତ ଡଲାର ସମ୍ପର୍କରେ ସେ ତାଙ୍କ ସମ୍ପତ୍ତି ତାଲିକାରେ ଦର୍ଶାଇ ନାହାଁନ୍ତି। ୨,୫୦୦କୋଟି ଟଙ୍କାର ଏକ ଅର୍ଥ ନେଣଦେଣର ତଥ୍ୟକୁ ମଧ ମାଲ୍ୟା ଲୁଚାଇ ରଖିଥିଲେ। କିନ୍ତୁ ଚତୁର ମାଲ୍ୟା ସେ ଓ ତାଙ୍କର ପରିବାର ବ୍ରିଟେନ୍‌ର ନାଗରିକ ହୋଇଥିବାରୁ ଭାରତୀୟ ବ୍ୟାଙ୍କଗୁଡ଼ିକ ସେମାନଙ୍କ ସମ୍ପତ୍ତିଗୁଡ଼ିକର ତଥ୍ୟକୁ ଜାଣିବାର ଅଧିକାର ନାହିଁ ବୋଲି ଯୁକ୍ତି ବାଢୁଛନ୍ତି। ମାଲ୍ୟାଙ୍କ ଏଭଳି ଚତୁର କାର୍ଯ୍ୟଧାରାରେ ବ୍ୟତିବ୍ୟସ୍ତ ହୋଇ ଏସ୍‌ବିଆଇର ଅଧକ୍ଷା ଅରୁନ୍ଧତୀ ଭଟ୍ଟାଚାର୍ଯ୍ୟ କିଙ୍ଗଫିସର୍ ଏୟାର ଲାଇନ୍ସ ଉପରେ ଥିବା ବକେୟା ଋଣ ଅସୁଲ କରିବାକୁ ମାଲ୍ୟାଙ୍କ ସହିତ ଆଲୋଚନା କରିବାକୁ ପ୍ରସ୍ତୁତ ଅଛନ୍ତି ବୋଲି ଜଣାଇଛନ୍ତି। ବିଜୟ ମାଲ୍ୟାଙ୍କୁ ଯେ କୌଣସି ମତେ ଭାରତ ଫେରାଇ ଆଣିବାକୁ ସରକାର ଉଦ୍ୟମ ଜାରି ରଖିଛନ୍ତି। ତାଙ୍କ ବିରୋଧରେ ଜାମିନ ବିହୀନ ୱାରେଣ୍ଟ (ଏନ୍‌ବିଡବ୍ଲୁ) ଜାରି କରାଯାଇଛି। ତାଙ୍କୁ ପଳାତକ ଭାବେ ଘୋଷଣା କରାଯାଇଛି। ତାଙ୍କ ଗିରଫଦାରୀ ପାଇଁ ଇଣ୍ଟରପୋଲର ସହାୟତା ମଧ ନିଆଯାଉଛି। କିନ୍ତୁ ଯେତେ ଯାହା ପଦକ୍ଷେପ ନେଲେ ମଧ, ଯେତେ ନୂତନ ଆଇନ୍ ବ୍ୟବସ୍ଥା କଲେ ମଧ ମାଲ୍ୟାଙ୍କ ଭଳି ଠକ ଓ ସ୍ୱାର୍ଥୀ ବ୍ୟକ୍ତିମାନଙ୍କୁ ଦେଶଦ୍ରୋହର ଅପରାଧରେ ଦଣ୍ଡିତ କରିବା ଶ୍ରେୟସ୍କର ହେବ। ଅଳ୍ପଦିନ ତଳେ କେନ୍ଦ୍ର ଅର୍ଥମନ୍ତ୍ରୀ ଅରୁଣ ଜେଟଲୀ ସଂସଦରେ ବ୍ୟାଙ୍କ୍‌ରପସୀ ଏଣ୍ଡ ଇନସଲଭେନ୍‌ସୀ ବିଲ ଆଣିବାକୁ ଯାଉଛନ୍ତି। ଯାହାଦ୍ୱାରା ବ୍ୟାଙ୍କମାନେ ଅଣାଦେୟ ଋଣ ସୁବିଧାରେ ଆଦାୟ କରିପାରିବେ। ନୂଆ ଆଇନ ପ୍ରଣୟନ କରି ବ୍ୟାଙ୍କମାନଙ୍କର ଲକ୍ଷ ଲକ୍ଷ କୋଟି ଟଙ୍କାର ଅଣାଦେୟ ଋଣ ଅସୁଲ କରିବାକୁ ସରକାର ତୁରନ୍ତ ବ୍ୟବସ୍ଥା କରନ୍ତୁ। ଆମେ ଦେଶବାସୀ ମନେ ରଖିବା ଉଚିତ୍, ବିଜୟ ମାଲ୍ୟାଙ୍କ ଭଳି ବହୁ ପ୍ରତିଷ୍ଠିତ

ଶିଳ୍ପପତିମାନଙ୍କ ଉପରେ ହଜାର ହଜାର କୋଟିର ଋଣ ଆଦାୟ ନ ହୋଇ ପଡ଼ିରହିଛି । ରିଲାଏନ୍ସ ଗ୍ରୁପ୍, ଅମ୍ବାନୀ ଗ୍ରୁପ୍, ବେଦାନ୍ତ ଗ୍ରୁପ୍, ଆଦାନୀ ଗ୍ରୁପ୍ ପରି ବଡ଼ ବଡ଼ କର୍ପୋରେଟମାନେ ହଜାରହଜାର କୋଟି ଟଙ୍କା ଋଣ ନେଇ ଶୁଝି ନାହାଁନ୍ତି। ଜେ.ପି. ଗ୍ରୁପ୍ ଅଧ୍ୟକ୍ଷ ଜେ.ପି ଗୌଡ଼ାଙ୍କର ମୋଟ ଋଣ ପରିମାଣ ୮୬ ହଜାର କୋଟି ଟଙ୍କା, ଜେ.ଏସ୍. ଡବ୍ଲୁ ଗ୍ରୁପ୍ ଅଧ୍ୟକ୍ଷ ସଜ୍ଜନ ଜିନ୍ଦଲଙ୍କ ଉପରେ ବକେୟା ରହିଛି ୫୮ ହଜାର କୋଟି ଟଙ୍କା, ଆଦାନୀ ଗ୍ରୁପ୍‌ର ଅଧ୍ୟକ୍ଷ ଗୌତମ ଆଦାନୀଙ୍କ ଋଣ ପରିମାଣ ହେଉଛି ୭୩ ହଜାର କୋଟି ଟଙ୍କା, ରିଲାଏନ୍ସ ଏଡ଼ିଜି ଗ୍ରୁପ୍ ଅଧ୍ୟକ୍ଷ ଅନୀଲ ଅମ୍ବାନୀ ବିଭିନ୍ନ ବ୍ୟାଙ୍କରୁ ପ୍ରାୟ ୧.୧୩ ଲକ୍ଷ କୋଟି ଟଙ୍କା ଋଣ ନେଇଛନ୍ତି। ବେଦାନ୍ତ ଗ୍ରୁପ୍ ଅଧ୍ୟକ୍ଷ ଅନୀଲ ଅଗ୍ରୱାଲଙ୍କ ଋଣ ପରିମାଣ ହେଉଛି ୯୦ହଜାର କୋଟି ଟଙ୍କା। ତଥାକଥିତ ବଡ଼ବଡ଼ ଶିଳ୍ପପତିଙ୍କ ପଦାଙ୍କ ଅନୁସରଣ କରି ଅନେକ ମଧ୍ୟମ ଓ କ୍ଷୁଦ୍ର ଶିଳ୍ପପତିମାନେ ମଧ୍ୟ ଋଣ ନେଇ ଶୁଝୁ ନାହାଁନ୍ତି। ଏହିଭଳି ଲୋକମାନଙ୍କୁ ଦେଶଦ୍ରୋହ ଅପରାଧରେ ଦଣ୍ଡିତ କରିବାକୁ ସାଧାରଣ ଜନତା ଦାବୀ କରୁଛି। କାରଣ ସେମାନେ ଜନସାଧାରଣଙ୍କ ବହୁ କଷ୍ଟରେ ସଂଚିତ ଅର୍ଥକୁ ଲୁଟି ନେଇଛନ୍ତି। କିନ୍ତୁ ସୁଖର ବିଷୟ ଆମ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ଏପ୍ରିଲ ୨୦୧୬ରେ ଆସାମର ରଙ୍ଗପଡ଼ା ନର୍ବାଚନମଣ୍ଡଳୀର ଏକ ସାଧାରଣ ସଭାରେ ଉଦ୍‌ବୋଧନ ଦେବାବେଳେ କହିଛନ୍ତି, "ବ୍ୟାଙ୍କର ପଇସା ଜନସାଧାରଣଙ୍କ ପଇସା ଓ ଏହାକୁ ଆତ୍ମସାତ କରିବାର ସୁଯୋଗ କାହାରିକୁ ଦିଆଯିବ ନାହିଁ। ପ୍ରତ୍ୟେକଟି ପଇସା ଋଣକର୍ତ୍ତାମାନଙ୍କଠାରୁ ଆଦାୟ କରାଯିବ।"

ରିଜର୍ଭ ବ୍ୟାଙ୍କର ଗଭର୍ଣ୍ଣର ରଘୁରାମ ରାଜନ ଚେତାବନୀ ଶୁଣାଇଛନ୍ତି ଯେ, ବ୍ୟାଙ୍କଗୁଡ଼ିକର ବର୍ତ୍ତମାନ ପରିସ୍ଥିତିରେ ବ୍ୟାପକ ଅସ୍ତ୍ରୋପଚାରର ଆବଶ୍ୟକତା ରହିଛି। ଏବେ ରିଜର୍ଭ ବ୍ୟାଙ୍କ ଅଫ୍ ଇଣ୍ଡିଆ ପ୍ରକାଶିତ ଛ'ମାସିଆ 'ଫାଇନାନ୍‌ସିଆଲ୍ ଷ୍ଟେବିଲିଟି ରିପୋର୍ଟ'ରେ ପ୍ରକାଶ ପାଇଛି ଯେ, ୨୦୧୭ ମାର୍ଚ୍ଚ ବେଳକୁ ଅଣାଦେୟ ଋଣ ବହୁପରିମାଣରେ ବୃଦ୍ଧି ପାଇବ ଏବଂ ଏହା ଦେଶର ଅର୍ଥନୀତିକୁ ଘୋର ସଂକଟ ମଧ୍ୟକୁ ଠେଲି ଦେବ। ତେଣୁ ସରକାର ଏବଂ ବ୍ୟାଙ୍କ କର୍ତ୍ତୃପକ୍ଷ ବିଶେଷକରି ସାଧାରଣ ଜନତା ଏହି ସଂକଟକୁ କିଭଳି ସାମ୍ନା କରିବେ ତାହା ଚିନ୍ତା କରିବାର ବେଳ ଆସିଛି।

*ସମାଜ - ୧୭.୮.୨୦୧୬*

# ଅସହାୟ ଚାଷୀ ଓ ଉଦାସୀନ ସରକାର

ଦେଶର ୬୯ତମ ସ୍ୱାଧୀନତା ଦିବସ ପାଳନ ଅବସରରେ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ଲାଲକିଲ୍ଲାରୁ ଦେଶବାସୀଙ୍କୁ ଦେଇଥିବା ତାଙ୍କର ଦେଢ଼ଘଣ୍ଟା ଭାଷଣରେ କୃଷି ମନ୍ତ୍ରଣାଳୟକୁ କୃଷି ଓ କୃଷକ ମଙ୍ଗଳ ମନ୍ତ୍ରଣାଳୟ ରୂପେ ନାମିତ କରାଯିବ ବୋଲି ଘୋଷଣା କରିଛନ୍ତି। କୃଷି ମନ୍ତ୍ରଣାଳୟର ନାମ ପରିବର୍ତ୍ତନ ଦ୍ୱାରା ଦେଶରେ କୃଷି କର୍ମ ସହିତ ଜଡ଼ିତ ପାଖାପାଖି ୬୦ କୋଟି ଲୋକଙ୍କର ବଢ଼ିଚାଲିଥିବା ସମସ୍ୟାଗୁଡ଼ିକର ସମାଧାନ ହୋଇଯିବ ଭାବିବା ଭୁଲ ହେବ। ଭାରତ ସରକାର ପ୍ରମୁଖ କୃଷି କାର୍ଯ୍ୟକ୍ରମ ଭାବେ ବିବେଚିତ ରାଷ୍ଟ୍ରୀୟ କୃଷି ବିକାଶ ଯୋଜନା ବାବଦରେ ୨୦୧୪-୧୫ ବଜେଟରେ ୮,୪୪୪ କୋଟି ଟଙ୍କା ବ୍ୟୟବରାଦ କରିଥିଲେ। କିନ୍ତୁ ୨୦୧୫-୧୬ ବଜେଟରେ ଏହି ଅର୍ଥକୁ ହ୍ରାସ କରାଯାଇ ମାତ୍ର ୪,୫୦୦ କୋଟି ବ୍ୟବସ୍ଥା କରିଛନ୍ତି। ଏଥିରେ ଗରିବ କୃଷକଙ୍କ କଲ୍ୟାଣ ହେବ କିପରି ?

ବିହନ, ସାର, କୀଟନାଶକ ଔଷଧର ଦରବୃଦ୍ଧି ସାଙ୍ଗକୁ ଏହାର ଅଭାବ ଚାଷୀକୁ ବିବ୍ରତ କରୁଛି। କୃଷିଜାତ ଦ୍ରବ୍ୟର ଉଚିତ୍ ମୂଲ୍ୟ ନିର୍ଦ୍ଧାରଣରେ ସରକାର କୃଷକ ବିରୋଧୀ ନୀତି ଗ୍ରହଣ କରୁଛନ୍ତି। ଚାଷୀ ବନ୍ୟା, ମରୁଡ଼ି, ଅଦିନିଆ ବର୍ଷାର ବାରମ୍ବାର ଶିକାର ହୋଇ ଘୋର ଆର୍ଥିକ ଅନଟନର ସମ୍ମୁଖୀନ ହେଉଛି। ପରିସ୍ଥିତି ଏଭଳି ହେଲାଣି ଯେ, କ୍ଷୁଦ୍ର ଓ ମଧ୍ୟମ ଚାଷୀମାନଙ୍କ ପାଇଁ ଚାଷ ଆଉ ଏକ ଲାଭଜନକ ବୃତ୍ତି ହୋଇ ରହିନାହିଁ। ସେମାନେ ନିଜ କୁଟୁମ୍ବ ପ୍ରତିପାଳନ ପାଇଁ ଅକ୍ଷମ ହୋଇଯାଉଛନ୍ତି। ଡକ୍ଟର ଏମ୍.ଏସ୍. ସ୍ୱାମୀନାଥନଙ୍କ 'ରାଷ୍ଟ୍ରୀୟ କୃଷକ ଆୟୋଗ' ତାହାର ରିପୋର୍ଟରେ ସ୍ପଷ୍ଟ ଲେଖିଛି ଯେ, ଭାରତରେ ୪୦ ପ୍ରତିଶତ ଚାଷୀ ଏବେ ଚାଷ ଛାଡ଼ିବା ପାଇଁ ତତ୍ପର ହେଉଛନ୍ତି। ରାଧାକୃଷ୍ଣ କମିଟି ରିପୋର୍ଟରେ ମଧ୍ୟ ଉଲ୍ଲେଖ ରହିଛି ଯେ, ଯଦି ବିକଳ୍ପ ରୋଜଗାର ପନ୍ଥା ଉପଲବ୍ଧ ହୁଏ ତେବେ ଶତକଡ଼ା ୪୩ ଭାଗ ଚାଷୀ କୃଷିକାମ ଛାଡ଼ିଦେବେ। ଦେଶର ସବୁଆଡ଼େ ଚାଷୀଙ୍କ ସମସ୍ୟା ଊଣାଅଧିକେ ସମାନ।

୧୯ ଡିସେମ୍ବର ୨୦୧୪ ତାରିଖ ଦିନ ସିବିଆଇ ତରଫରୁ ରାଷ୍ଟ୍ରୀୟ ସୁରକ୍ଷା ପରାମର୍ଶଦାତା ଅଜିତ କୁମାର ଡୋବାଲଙ୍କୁ ପ୍ରଦତ୍ତ ଏକ ରିପୋର୍ଟରେ ଦର୍ଶାଯାଇଛି

ଯେ, ବିଗତ ଦିନମାନଙ୍କରେ ଭାରତରେ ଚାଷୀ ଆତ୍ମହତ୍ୟା ବଢ଼ିବାରେ ଲାଗିଛି। ଆତ୍ମହତ୍ୟା କାରଣଗୁଡ଼ିକ ହେଉଛି ଋଣ ନ ଶୁଝିପାରିବା, ଜଳସେଚନର ଅଭାବ, କୃଷିଭିତ୍ତିକ ଯୋଜନାରୁ ନାମମାତ୍ର ଚାଷୀ ଓ କ୍ଷୁଦ୍ରଚାଷୀ ବାଦପଡ଼ିବା, ବିପର୍ଯ୍ୟୟ ପରିଚାଳନା କରିବାରେ ବିଫଳତା ଓ ଖାଦ୍ୟାନ୍ନର ବିକ୍ରୟ ମୂଲ୍ୟ ଉତ୍ପାଦନ ମୂଲ୍ୟଠାରୁ କମ୍ ହେବା। କିନ୍ତୁ ଗତ ଜୁଲାଇ ୨୪ ତାରିଖରେ କେନ୍ଦ୍ର କୃଷିମନ୍ତ୍ରୀ ରାଧାମୋହନ ସିଂ ରାଜ୍ୟସଭାରେ ଜଣେ ସାଂସଦଙ୍କ ପ୍ରଶ୍ନର ଉତ୍ତରରେ ଚାଷୀ ଆତ୍ମହତ୍ୟାର ପ୍ରଧାନ କାରଣ ସେମାନଙ୍କ ପ୍ରେମଜନିତ ବ୍ୟାପାର ଓ ଯୌନଶକ୍ତିହୀନତା ବୋଲି ଦର୍ଶାଇ ସମସ୍ତ ଭାରତବାସୀଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଛନ୍ତି। ମନ୍ତ୍ରୀଙ୍କର ଏଭଳି ବ୍ୟଙ୍ଗୋକ୍ତି ଅତ୍ୟନ୍ତ ଅଶୋଭନୀୟ। ଜାତୀୟ ଅପରାଧ ରେକର୍ଡ଼ ବ୍ୟୁରୋର ତଥ୍ୟ ଅନୁଯାୟୀ ୧୯୯୫ରୁ ୨୦୧୩ ମସିହା ମଧ୍ୟରେ ଆମ ଦେଶରେ ୩ ଲକ୍ଷରୁ ଊର୍ଦ୍ଧ୍ୱ ଚାଷୀ ଆତ୍ମହତ୍ୟା କରିଛନ୍ତି ଏବଂ ୨୦୧୪ ମସିହାରେ ୫,୬୫୦ ଜଣ ଚାଷୀ ଆତ୍ମହତ୍ୟା କରିଛନ୍ତି।

ସମସ୍ତେ ଜାଣିରଖିବା ଉଚିତ୍ ଯେ, ଦେଶପାଇଁ କୃଷିନୀତି ସ୍ଥିର କରୁଥିବା ଉଚ୍ଚପଦସ୍ଥ ଅଧିକାରୀମାନେ ଏବେ ଆଗ୍ରୋ ବିଜିନେସକୁ ପ୍ରୋତ୍ସାହନ ଦେବାରେ ଲାଗିଛନ୍ତି। ସରକାର କର୍ପୋରେଟ ଚାଷକୁ ପ୍ରାଧାନ୍ୟ ଦେଉଛନ୍ତି ଏବଂ ଫଳସ୍ୱରୂପ ଚାଷୀମାନଙ୍କୁ ଜମି ହରାଇବାକୁ ପଡୁଛି। ଏକ ପ୍ରକାଶିତ ତଥ୍ୟ ଅନୁଯାୟୀ ଚାଷ ଉପଯୋଗୀ ୫୫ ପ୍ରତିଶତ ଜମିର ମାଲିକାନା ମାତ୍ର ୫ ପ୍ରତିଶତ ବ୍ୟକ୍ତିଙ୍କ ପାଖରେ ରହିଅଛି। କେନ୍ଦ୍ର ସରକାର ଚାଷୀମାନଙ୍କୁ ଉପେକ୍ଷା କରୁଥିବାର ବହୁ ଦୃଷ୍ଟାନ୍ତ ରହିଛି। ଏକ ଜ୍ୱଳନ୍ତ ଉଦାହରଣ ହେଲା ସରକାର ଖାଦ୍ୟାନ୍ନର ସମର୍ଥନ ମୂଲ୍ୟକୁ କମ୍ କରିବା ପାଇଁ ନେଇଥିବା ପଦକ୍ଷେପ। ରାସାୟନିକ ସାରର ସବ୍‌ସିଡି ଏବର୍ଷ କେନ୍ଦ୍ର ବଜେଟରେ ଯଥେଷ୍ଟ କମାଇ ଦିଆଯାଇଛି। ଦେଶରେ କୃଷି ଉତ୍ପାଦନ ବଢୁଥିଲେ ମଧ୍ୟ ଚାଷୀମାନଙ୍କର ଆୟ ବଢୁନାହିଁ। ଚାଷୀମାନଙ୍କୁ ବର୍ଷ ବର୍ଷ ଧରି ଉପେକ୍ଷା କରିବା ଦେଶର ବିକାଶ ପାଇଁ ଅତ୍ୟନ୍ତ କ୍ଷତିକାରକ। ମୋଦି ସରକାର ଶିଳ୍ପପତିମାନଙ୍କ ସ୍ୱାର୍ଥକୁ ପ୍ରାଧାନ୍ୟ ଦେଉଥିବା ଦେଶରେ ସର୍ବତ୍ର ଚର୍ଚ୍ଚା ହେଉଛି।

ଏବେ ଆମ ରାଜ୍ୟର କୃଷକମାନଙ୍କ ସମସ୍ୟା ଉପରେ ଦୃଷ୍ଟିପାତ କରିବା। ଅଗଷ୍ଟ ୧୯ ତାରିଖରେ ବିଧାନସଭାରେ ବିଧାୟକ ଦିଲ୍ଲୀପ କୁମାର ରାୟଙ୍କ ଏକ ପ୍ରଶ୍ନର ଉତ୍ତର ଦେଇ କୃଷିମନ୍ତ୍ରୀ ପ୍ରଦୀପ ମହାରଥି କହିଛନ୍ତି ଯେ, ୧୯୯୯ ମସିହାରୁ

୨୦୧୩ ମସିହା ମଧ୍ୟରେ ରାଜ୍ୟରେ ୩୬୦୨ ଜଣ ଚାଷୀ ଆତ୍ମହତ୍ୟା କରିଛନ୍ତି। ଆମ ରାଜ୍ୟର ଚାଷୀ ସବୁ ସମୟରେ ଧାନ, ମାଣ୍ଡିଆ, ଆଖୁ, ମକା, ପିଆଜ, ଅଦା, କପା ଆଦି ଯେକୌଣସି ଫସଲ ଉତ୍ପାଦନ କଲେ ମଧ୍ୟ ସବୁବେଳେ ଅଭାବୀ ବିକ୍ରିର ସମ୍ମୁଖୀନ ହେଉଛନ୍ତି। ଓଡ଼ିଶାରେ ଚାଷୋପଯୋଗୀ ଜମିର ପରିମାଣ ୬୪.୯ ଲକ୍ଷ ହେକ୍ଟର ବୋଲି ଇକୋନୋମିକ୍ ସର୍ଭେ ରିପୋର୍ଟରେ ଉଲ୍ଲେଖ ରହିଛି। ଏଥିମଧ୍ୟରୁ ମାତ୍ର ୩୫ ପ୍ରତିଶତ ଜମି ହେଉଛି ଜଳସେଚିତ। ଏବେ ବି ୬୫ ପ୍ରତିଶତ ଚାଷଜମି ଜଳସେଚନ ସୁବିଧାରୁ ବଞ୍ଚିତ। ଏଥିପାଇଁ ଜଳସେଚନ ବିଭାଗ ଓ କୃଷି ବିଭାଗ ପ୍ରତ୍ୟକ୍ଷ ଭାବରେ ଦାୟୀ। ଉଦାହରଣସ୍ୱରୂପ ରାଜ୍ୟର ମୋଟ୍ ୨୩,୫୯୬ ଉଠା ଜଳସେଚନ ପ୍ରକଳ୍ପ ମଧ୍ୟରୁ ୬,୯୧୬ଟି ପ୍ରକଳ୍ପ ବର୍ଷ ବର୍ଷ ଧରି ଅଚଳ ହୋଇ ରହିଛି, ଯାହାକୁ ସଚଳ କରାଇବାକୁ ପଦକ୍ଷେପ ଗ୍ରହଣ କରାଯାଉନାହିଁ। କେନାଲଗୁଡ଼ିକର ସଫେଇ କାର୍ଯ୍ୟ କରି ସେଗୁଡ଼ିକରେ ଜଳ ପ୍ରବାହ ନିଶ୍ଚିତ କରିବା କାର୍ଯ୍ୟ ମଧ୍ୟ ହୋଇପାରିନାହିଁ।

କମ୍ ସୁଧରେ କୃଷି ପାଇଁ ଋଣ ଦେବାକୁ ସରକାରଙ୍କର ବ୍ୟାଙ୍କମାନଙ୍କୁ ନିର୍ଦ୍ଦେଶନାମା ରହିଛି। କିନ୍ତୁ ବ୍ୟାଙ୍କଗୁଡ଼ିକ ଋଣ ବଣ୍ଟନରେ ଅନ୍ୟୂନ ୧୮ ପ୍ରତିଶତ କୃଷି କ୍ଷେତ୍ରକୁ ଦେବାକୁ ଥିବା ନିର୍ଦ୍ଦେଶକୁ ଉପେକ୍ଷା କରୁଛନ୍ତି। ଏଥିପାଇଁ କେବଳ ବ୍ୟାଙ୍କମାନଙ୍କୁ ଦାୟୀ କରିବା ଠିକ୍ ହେବନାହିଁ। ଓଡ଼ିଶାରେ ଏପର୍ଯ୍ୟନ୍ତ ସରକାରଙ୍କ ନଥିପତ୍ରରେ ଜମିମାଲିକ ହିଁ ଚାଷୀ। ଜମି ଭାଗଦେଲେ ବି ସରକାରୀ ହିସାବରେ ଜମିମାଲିକ ଚାଷୀ। ପ୍ରକୃତରେ ଓଡ଼ିଶାର ୮୦ ଭାଗ ଜମିକୁ ଭାଗଚାଷୀମାନେ ଚାଷ କରୁଛନ୍ତି। ସେମାନଙ୍କୁ ଚାଷୀର ମାନ୍ୟତା ମିଳିନାହିଁ। କିନ୍ତୁ ପଶ୍ଚିମବଙ୍ଗ, କେରଳ ଓ ତ୍ରିପୁରା ଆଦି ରାଜ୍ୟଗୁଡ଼ିକରେ ଭାଗଚାଷୀମାନଙ୍କୁ ଚାଷୀର ମାନ୍ୟତା ମିଳିଛି। ସେମାନେ ବ୍ୟାଙ୍କ ଋଣ ଓ ଅନ୍ୟାନ୍ୟ ସମସ୍ତ ସୁବିଧାର ହକଦାର ଅଟନ୍ତି। ଓଡ଼ିଶା ସରକାର ଭାଗଚାଷୀମାନଙ୍କୁ ଚାଷୀର ମାନ୍ୟତା ଦେଲେ ସେମାନେ ମଧ୍ୟ ଋଣ ପାଇବା ଓ ଅନ୍ୟାନ୍ୟ କ୍ଷେତ୍ରରେ ସବ୍‌ସିଡି ପାଇବାର ହକଦାର ହୋଇପାରିବେ। ବର୍ତ୍ତମାନ ଓଡ଼ିଶାରେ ଭାଗଚାଷୀମାନଙ୍କୁ ଚାଷୀର ମାନ୍ୟତା ମିଳୁନଥିବାରୁ ସେମାନେ ଋଣ ପାଇପାରୁ ନାହାନ୍ତି। ଭାଗଚାଷୀ ବ୍ୟାଙ୍କରୁ ଋଣ ନ ପାଇ ଗ୍ରାମୀଣ ମହାଜନଙ୍କଠାରୁ ଚଢ଼ା ଦରରେ ଋଣ ନେବାକୁ ବାଧ୍ୟ ହେଉଛି ଏବଂ ଋଣ ଶୁଝିନପାରିଲେ ଆତ୍ମହତ୍ୟା ପରି ଚରମ ପଦକ୍ଷେପ ଗ୍ରହଣ କରୁଛି। ମାଗାସେସ୍ ପୁରସ୍କାର ବିଜେତା ପି. ସାଇନାଥ ଓଡ଼ିଶାର ଚାଷୀମାନଙ୍କର

ସମସ୍ୟା ଅନୁଧ୍ୟାନ କରି ଲେଖିଥିଲେ ଯେ, ଋଣ ବୋଝରେ ଅଣନିଃଶ୍ୱାସୀ ହୋଇ ଚାଷୀମାନେ ଆତ୍ମହତ୍ୟା କରୁଛନ୍ତି । ଏଠାରେ ଉଲ୍ଲେଖ କରିବା ସମୀଚୀନ ହେବ ଯେ ଦେଶରେ ବିଭିନ୍ନ ବ୍ୟାଙ୍କ ଶିଳ୍ପପତି, କର୍ପୋରେଟ ହାଉସ୍ ପ୍ରଭୃତିଙ୍କୁ ଦେଇଥିବା ଋଣ ମଧ୍ୟରୁ ୩ ଲକ୍ଷ କୋଟି ଟଙ୍କା ଆଦାୟ ହୋଇପାରିନାହିଁ, ଅଥଚ ଚାଷୀକୁ ଋଣରୁ ବଞ୍ଚିତ କରିବାକୁ ସବୁପ୍ରକାର ବିଧାନ ଖଞ୍ଜା ହୋଇଛି ।

ଓଡ଼ିଶାକୁ ସାର ଯୋଗାଣ କ୍ଷେତ୍ରରେ କେନ୍ଦ୍ର ସରକାରଙ୍କ ଅବହେଳା ଚାଷୀମାନଙ୍କୁ ମ୍ରିୟମାଣ କରିଛି । ସରକାର ଚାଷୀମାନଙ୍କ ଦ୍ୱାରା ଉତ୍ପାଦିତ ଫସଲକୁ ବିକ୍ରିବଟା ପାଇଁ ବଜାର ବ୍ୟବସ୍ଥା କରିବାର ସୁବନ୍ଦୋବସ୍ତ କରୁନାହାଁନ୍ତି । ରାଜ୍ୟରେ ଶୀତଳ ଭଣ୍ଡାର ଓ ଶସ୍ୟ ଭଣ୍ଡାର ପ୍ରତିଷ୍ଠାକୁ ନେଇ ସରକାର ପ୍ରତିଶ୍ରୁତିବଦ୍ଧ କହୁଥିଲେ ମଧ୍ୟ ଅଦ୍ୟାବଧି ଆଖିଦୃଶିଆ କାର୍ଯ୍ୟ ହୋଇନାହିଁ । ଉଦାହରଣସ୍ୱରୂପ ଏକ ସମୟରେ ରାଜ୍ୟରେ ୧୦୪ଟି ଶୀତଳ ଭଣ୍ଡାର ଥିଲା । ଏବେ କିନ୍ତୁ ଏଥିରୁ ମାତ୍ର ୬ଟି କାର୍ଯ୍ୟକ୍ଷମ ରହିଛି । ୯୦ ଦଶକରୁ ଏହି ଅଚଳ ଶୀତଳ ଭଣ୍ଡାରକୁ ସଚଳ କରିବାକୁ କୌଣସି ସରକାର ଚେଷ୍ଟା କରିନାହାଁନ୍ତି । ତେଣୁ ବର୍ତ୍ତମାନର ସରକାର ପୁରାତନ ଶୀତଳ ଭଣ୍ଡାରଗୁଡ଼ିକୁ କାର୍ଯ୍ୟକ୍ଷମ କରିବା ଓ ନୂତନ ଶୀତଳ ଭଣ୍ଡାର ନିର୍ମାଣ କରିବାକୁ ଜରୁରୀ ପଦକ୍ଷେପ ଗ୍ରହଣ କରିବା ଉଚିତ୍ ହେବ । ଏହା ହେଲେ ଆଳୁ ଓ ପନିପରିବା ଚାଷୀମାନେ ଆଗ୍ରହର ସହିତ ନିଜ ଜମିରେ ଉତ୍ପାଦନ ବଢ଼ାଇବେ ଏବଂ ଓଡ଼ିଶାରେ ଆଳୁର ଯେଉଁଳି ଅଭାବ ଦେଖାଦେଉଛି ତାହା ଦୂର ହୋଇପାରିବ ।

ଆମ ରାଜ୍ୟରେ ବିଜୁ ଜନତା ଦଳ ଚତୁର୍ଥଥର ପାଇଁ ସରକାର ଗଢ଼ି ସ୍ୱତନ୍ତ୍ର କୃଷି ବଜେଟ ପ୍ରସ୍ତୁତ କରି ଆତ୍ମସନ୍ତୋଷ ଲାଭ କଲେ ହେବନାହିଁ । ଆଜି ରାଜ୍ୟର କୃଷି ଓ କୃଷକ ଘୋର ସଂକଟ ଭିତରେ ଗତି କରୁଛନ୍ତି । ରାଜ୍ୟରେ ଭୂସଂସ୍କାର ନ ହେବା, ଭାଗଚାଷୀମାନଙ୍କୁ କୃଷି ଋଣ ନ ମିଳିବା, କୃଷକକୁ ଉତ୍ପାଦିତ ଶସ୍ୟର ଉପଯୁକ୍ତ ମୂଲ୍ୟ ନ ମିଳିବା, ଜଳସେଚନର ଘୋର ଅଭାବ କୃଷି ସଂକଟର ପ୍ରମୁଖ କାରଣ । ତାହା କେବଳ ସରକାରଙ୍କ ଦ୍ୱାରା ହିଁ ସମାଧାନ ହୋଇପାରିବ । ୧୯୯୬ ମସିହାରୁ ନୂତନ କୃଷିନୀତି ପ୍ରଚଳିତ ହୋଇଛି ଓ କୃଷିକୁ ଶିଳ୍ପର ମାନ୍ୟତା ମିଳିଛି, କିନ୍ତୁ କୃଷକମାନଙ୍କ ସ୍ଥିତିରେ ସାମାନ୍ୟତମ ଉନ୍ନତି ହୋଇନାହିଁ । ଜରୁରିକାଳୀନ ଭିତ୍ତିରେ କୃଷକମାନଙ୍କର ସମସ୍ୟାର ସମାଧାନ କରିବା ସରକାରଙ୍କର ପ୍ରଥମ କର୍ତ୍ତବ୍ୟ ହେବା

ଉଚିତ। ଚାଷୀମାନେ ନିଜକୁ ଅସହାୟ ନ ଭାବି ନିଜର ସଂଗଠନ ଗଢ଼ିତୋଳି ସେମାନଙ୍କର ସମସ୍ୟାଗୁଡ଼ିକୁ ଲୋକଲୋଚନକୁ ଆଣି ସେଗୁଡ଼ିକର ନିରାକରଣ ପାଇଁ ଚେଷ୍ଟିତ ହେବା ଉଚିତ। ଚାଷୀମାନେ କୌଣସି ପରିସ୍ଥିତିରେ ଭାଙ୍ଗିନପଡ଼ି ଆତ୍ମହତ୍ୟା ଭଳି ଅପରିଣାମଦର୍ଶୀ କାର୍ଯ୍ୟରୁ ନିବୃତ୍ତ ରହିବାକୁ ଶପଥ ଗ୍ରହଣ କରିବା ଉଚିତ ହେବ।

*ସମାଜ -୦୧.୯.୨୦୧୫*

# ଓଡ଼ିଶାରେ ଶିକ୍ଷା ସମସ୍ୟା

ଗତ ୩୦ ଏପ୍ରିଲରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଗବେଷଣାର ମାନ ବୃଦ୍ଧି ଲାଗି ଆୟୋଜିତ ହୋଇଥିଲା ରିସର୍ଚ୍ଚ ସ୍କଲାର କନକ୍ଲେଭ। ଏଥିରେ ୧୨୫ଜଣ ରିସର୍ଚ୍ଚ ସ୍କଲାର ଯୋଗଦେଇଥିଲେ। ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ଅଶୋକ ଦାସ ଗବେଷଣାକୁ ଯଥେଷ୍ଟ ଗୁରୁତ୍ୱ ଦିଆଯିବା ଉଚିତ ବୋଲି ମନ୍ତବ୍ୟ ଦେଇଥିଲେ। ଉଚ୍ଚଶିକ୍ଷା ମନ୍ତ୍ରୀ ଡକ୍ଟର ପ୍ରଦୀପ ପାଣିଗ୍ରାହୀ ଗବେଷଣାକୁ ବ୍ୟାପକ କରାଯିବା ଆବଶ୍ୟକ ବୋଲି କହିଥିଲେ। ଏହି ସମ୍ବାଦଟି ପଢ଼ିବା ପରେ ମନରେ କୌତୂହଳ ଜାତ ହେଲା ଯେ ବୃକ୍ଷକୁ ଜୀବନ୍ତ, ପୁଷ୍ପିତ ଓ ଫଳବନ୍ତ କରିବାକୁ ତା' ମୂଳରେ ଖତ, ସାର, ପାଣି ଠିକ୍ ସମୟରେ ଦେବା ଆବଶ୍ୟକ। ବୃକ୍ଷ ମୂଳରେ ପାଣି ନ ଦେଇ ଅଗରେ ପାଣିଦେବା ଯାହା ବିଶ୍ୱବିଦ୍ୟାଳୟ ମୂଳରୁ ଚୂଳ ଯାଏଁ ଅବ୍ୟବସ୍ଥା ଘେରରେ, ଆର୍ଥିକ ଅନଟନରେ, ଭିତ୍ତିଭୂମି ଅଭାବରେ, ଶିକ୍ଷକ ଓ କର୍ମଚାରୀଙ୍କ ନିଯୁକ୍ତି ପ୍ରକ୍ରିୟା ବନ୍ଦ କରିଥିବା ପରିପ୍ରେକ୍ଷୀରେ ହଠାତ୍ ଉଚ୍ଚଶିକ୍ଷା ମନ୍ତ୍ରୀଙ୍କର ଗବେଷଣାକୁ ବ୍ୟାପକ କରିବା ପରାମର୍ଶଟି ହାସ୍ୟୋଦ୍ଦୀପକ ହୋଇଛି।

ଏହିଠାରେ ମନେପଡ଼ିଗଲା ପ୍ରଥମଥର ପାଇଁ ଭାରତ ସରକାରଙ୍କର ମାନବ ସମ୍ବଳ ବିକାଶ ବିଭାଗ ଦେଶରେ ଥିବା ଉଚ୍ଚଶିକ୍ଷା ଅନୁଷ୍ଠାନ ଯଥା- ବିଶ୍ୱବିଦ୍ୟାଳୟ, ସ୍ୱୟଂଶାସିତ ଇଂଜିନିୟରିଂ, ମ୍ୟାନେଜମେଣ୍ଟ ଅନୁଷ୍ଠାନଗୁଡ଼ିକର ମୂଲ୍ୟାୟନ କରି ଶ୍ରେଷ୍ଠତା ଭିତ୍ତିରେ ୧୦୦ଟି ଅନୁଷ୍ଠାନର ପ୍ରକାଶିତ ତାଲିକାରେ ଓଡ଼ିଶାର ଶିକ୍ଷା ଓ ଅନୁସନ୍ଧାନ ବିଶ୍ୱବିଦ୍ୟାଳୟ ୨୬ ଓ କଳିଙ୍ଗ ଇନଷ୍ଟିଚ୍ୟୁଟ୍ ଅଫ୍ ଇଣ୍ଡଷ୍ଟ୍ରିଆଲ ଟେକ୍ନୋଲୋଜି ୫୩ତମ ସ୍ଥାନରେ ସ୍ଥାନିତ ହୋଇଛନ୍ତି। ସରକାରୀ ଅନୁଦାନପ୍ରାପ୍ତ ଓଡ଼ିଶାର କୌଣସି ବିଶ୍ୱବିଦ୍ୟାଳୟ ଏଥିରେ ସ୍ଥାନ ପାଇନାହାନ୍ତି। ଆମ ସରକାରୀ ବିଶ୍ୱବିଦ୍ୟାଳୟଗୁଡ଼ିକ ମାନବ ସମ୍ବଳ ବିକାଶ ବିଭାଗକୁ ନିଜ ବିଶ୍ୱବିଦ୍ୟାଳୟକୁ ମୂଲ୍ୟାୟନରେ ଅନ୍ତର୍ଭୁକ୍ତ କରିବାକୁ ଆବେଦନ ମଧ୍ୟ କରିନାହାଁନ୍ତି। ଅନୁସନ୍ଧାନରୁ ଜଣାପଡ଼ିଛି ଯେ, ଏହି ବିଶ୍ୱବିଦ୍ୟାଳୟଗୁଡ଼ିକର ନ୍ୟାକ୍ (ନ୍ୟାସନାଲ ଆସେସମେଣ୍ଟ ଆଣ୍ଡ ଆକ୍ରେଡିଏସନ କାଉନସିଲ୍) ମାନ୍ୟତା ନ

ଥିବାରୁ ସେମାନେ ମୂଲ୍ୟାୟନରେ ଭାଗ ନେବାକୁ ଯୋଗ୍ୟ ନୁହନ୍ତି । ନ୍ୟାକ୍ ଯୋଗ୍ୟତା ପାଇଁ ବିଶ୍ୱବିଦ୍ୟାଳୟମାନେ ନିର୍ଦ୍ଧାରିତ ଫର୍ମରେ ଦରଖାସ୍ତ କରି ନ୍ୟାକ୍ ଟିମ୍‌କୁ ନିଜ ନିଜ ବିଶ୍ୱବିଦ୍ୟାଳୟ ପରିଦର୍ଶନ ପାଇଁ ଅନୁରୋଧ କରିଥାନ୍ତି, ଯାହା ସେମାନେ କରିନାହାଁନ୍ତି । ମାନବ ସମ୍ବଳ ବିକାଶ ବିଭାଗର ଏହି ସର୍ବେକ୍ଷଣ ଦ୍ୱାରା ଓଡ଼ିଶାର ଉଚ୍ଚଶିକ୍ଷାର ଦୟନୀୟ ସ୍ଥିତି ସମ୍ପର୍କରେ ଏବେ ସର୍ବତ୍ର ଆଲୋଚନା ହେଉଛି । ଓଡ଼ିଶାର ଉଚ୍ଚ ଶିକ୍ଷାନୁଷ୍ଠାନଗୁଡ଼ିକରେ, ତାହା ମହାବିଦ୍ୟାଳୟ ହେଉ କି ବିଶ୍ୱବିଦ୍ୟାଳୟ, ପରିଚାଳନାଗତ ତ୍ରୁଟି ଓ ଆବଶ୍ୟକ ମୁତାବକ ଆର୍ଥିକ ସହାୟତା ଦେବାରେ ସରକାରଙ୍କର ଅବହେଳା ଯୋଗୁଁ ଶିକ୍ଷାର ମାନ ନିମ୍ନଗାମୀ ହେବାରେ ଲାଗିଛି । ସରକାର ୧୯୯୦ ମସିହାଠାରୁ ଶିକ୍ଷକ ନିଯୁକ୍ତି ବନ୍ଦ କରିଦେଇଛନ୍ତି । ଶିକ୍ଷା ସଂସ୍କାର ନାଁରେ ପ୍ରଶାସକମାନେ ଶିକ୍ଷକ ପଦବୀଗୁଡ଼ିକ ଉଚ୍ଛେଦ କଲେ ଏବଂ ଏହାଦ୍ୱାରା ରାଜ୍ୟ ଅର୍ଥନୀତି ସୁସ୍ଥ ହେବ ବୋଲି ସଫେଇ ଦେଲେ । ଯେତିକି ପଦବୀ ମଞ୍ଜୁରୀ ଦେଲେ ତାହା ମଧ୍ୟ ପୂରଣ କରିବା ଉପରେ ବିଭିନ୍ନ କାରଣରୁ ଅଙ୍କୁଶ ଲଗାଇଲେ । ୧୯୯୨ ମସିହାଠାରୁ ରାଜ୍ୟ ସରକାର ଜୁନିଅର ଅଧ୍ୟାପକ ପଦବୀ ସୃଷ୍ଟି କରି ସେମାନଙ୍କ ପାଇଁ ରାଜ୍ୟ ବେତନହାର ପ୍ରବର୍ତ୍ତନ କରିଛନ୍ତି । ଆଶ୍ଚର୍ଯ୍ୟଜନକ ବିଷୟ ଏହି ଜୁନିଅର ଅଧ୍ୟାପକ ନିଯୁକ୍ତି ବ୍ୟବସ୍ଥା ଭାରତର ଅନ୍ୟ କୌଣସି ରାଜ୍ୟରେ ହୋଇନାହିଁ । ୟୁଜିସି ନିର୍ଦ୍ଧାରିତ ନିୟମ ଅନୁସାରେ ଅଧ୍ୟାପକ ହେବାର ସମସ୍ତ ଯୋଗ୍ୟତା ଥାଇ ୟୁଜିସି ବେତନ ହାର ପରିବର୍ତ୍ତେ ସରକାର ଯେଉଁ ଜୁନିଅର ଅଧ୍ୟାପକ ପଦବୀ ସୃଷ୍ଟି କରି ରାଜ୍ୟଦ୍ୱାରା ଏକ ଭିନ୍ନ ନିମ୍ନ ବେତନ ହାର ପ୍ରଚଳନ କଲେ ତାହା କେବଳ ଶିକ୍ଷକମାନଙ୍କ ପ୍ରତି ଅସମ୍ମାନ ମନୋଭାବରୁ ସୃଷ୍ଟି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ରାଜ୍ୟରେ ଓପିଏସ୍‌ସି ଦ୍ୱାରା ଓଡ଼ିଶା ଏଜୁକେଶନ ସର୍ଭିସ୍‌ରେ ନିଯୁକ୍ତି ବହୁବର୍ଷ ହେଲା ହୋଇନଥିବାରୁ ଅଧ୍ୟାପକ ପଦବୀ ପୂରଣ ହୋଇପାରୁନାହିଁ । ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ସର୍ଭିସ୍ ସିଲେକ୍ସନ ବୋର୍ଡ଼ରେ ଅଧ୍ୟାପକ ଚୟନ ପ୍ରକ୍ରିୟା ମଧ୍ୟ ସ୍ଥାଣୁ ଅବସ୍ଥାରେ ରହିଛି । ସମଗ୍ର ଓଡ଼ିଶାର ମହାବିଦ୍ୟାଳୟଗୁଡ଼ିକର ଅନେକ ବିଭାଗରେ ମାତ୍ର ଜଣେ-ଦୁଇଜଣ ଅଧ୍ୟାପକ ଯୁକ୍ତଦୁଇଠାରୁ ସ୍ନାତକୋତ୍ତର ଶ୍ରେଣୀ ପର୍ଯ୍ୟନ୍ତ ସାଧ୍ୟମତେ ଶିକ୍ଷାଦାନ କରିବାକୁ ବାଧ୍ୟ ହେଉଛନ୍ତି । ବିଶ୍ୱବିଦ୍ୟାଳୟଠାରୁ ମହାବିଦ୍ୟାଳୟ ପର୍ଯ୍ୟନ୍ତ ଶିକ୍ଷକ ମରୁଡ଼ି ଶିକ୍ଷାଦାନକୁ ଏକ ପ୍ରହସନରେ ପରିଣତ କରିଛି ।

ଅଳ୍ପଦିନ ତଳେ ଉଚ୍ଚଶିକ୍ଷା ମନ୍ତ୍ରୀ ବିଧାନସଭାରେ ଦେଇଥିବା ଏକ ତଥ୍ୟରୁ ଜଣାପଡ଼େ ଯେ ଉତ୍କଳ, ବ୍ରହ୍ମପୁର, ସମ୍ବଲପୁର, ରେଭେନ୍ସା, ଶ୍ରୀଜଗନ୍ନାଥ, ଫକୀରମୋହନ ଓ ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟଗୁଡ଼ିକରେ ୪୨୬ଟି ଶିକ୍ଷକ ପଦବୀ ଖାଲି ପଡ଼ିଛି। ୧୧୫୭ଟି ଅଣଶିକ୍ଷକ ପଦବୀ ମଧ୍ୟ ପୂରଣ ହୋଇପାରିନାହିଁ। ବିଜୁ ପଟ୍ଟନାୟକ ୟୁନିଭରସିଟି ଅଫ୍ ଟେକ୍ନୋଲୋଜିରେ ୨୫ଟି ମଞ୍ଜୁରୀପ୍ରାପ୍ତ ଶିକ୍ଷକ ପଦ ମଧ୍ୟରୁ ୨୩ଟି ଖାଲି ପଡ଼ିଛି। ଏଠାରେ ଜଣେ ହେଲେ ପ୍ରଫେସର ବା ସହଯୋଗୀ ପ୍ରଫେସର ନାହାଁନ୍ତି। ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ ୧୯୯୯ ମସିହାରୁ ପ୍ରତିଷ୍ଠା ହୋଇଥିଲେ ମଧ୍ୟ ଆଜି ପର୍ଯ୍ୟନ୍ତ ୟୁଜିସିର ଧାରା ୧୨(ବି)ର ମାନ୍ୟତା ହାସଲ କରିପାରିନଥିବାରୁ ୟୁଜିସିଠାରୁ କୌଣସି ଆର୍ଥିକ ଅନୁଦାନ ପାଇପାରୁ ନାହିଁ। ଏହି ବିଶ୍ୱବିଦ୍ୟାଳୟରେ ୩୧ଟି ଅଧ୍ୟାପକ ପଦବୀ ଖାଲି ରହିଛି ଏବଂ ଏହାର ଅନୁବନ୍ଧିତ ସର୍ବପୁରାତନ ଉତ୍କଳ ସଂଗୀତ ମହାବିଦ୍ୟାଳୟରେ ୩୭ରୁ ୨୩ଟି ଶିକ୍ଷକ ପଦବୀ ଖାଲି ରହିଛି। ଏହି ବିଶ୍ୱବିଦ୍ୟାଳୟର ଅନୁବନ୍ଧିତ ବି.କେ. କଲେଜ ଅଫ୍ ଆର୍ଟସ ଓ ଖଲ୍ଲିକୋଟ କଲେଜ ଅଫ୍ ଆର୍ଟସରେ ମଧ୍ୟ ବହୁ ସଂଖ୍ୟକ ଶିକ୍ଷକ ଓ ଅଣଶିକ୍ଷକ ପଦବୀ ଖାଲି ପଡ଼ିଛି। ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ ୨୧୩ଟି ଶିକ୍ଷକ ପଦବୀ ଖାଲି ଥିଲାବେଳେ ୫୮୭ଟି ଅଣଶିକ୍ଷକ ପଦବୀ ଖାଲି ରହିଛି। ୩ଟି ସରକାରୀ ମେଡିକାଲ କଲେଜରେ ୨୯୬ଟି ଓ ୪ଟି ଆୟୁର୍ବେଦିକ କଲେଜରେ ୭୯ଟି ଓ ୩ଟି ହୋମିଓପାଥିକ କଲେଜରେ ୧୧୪ଟି ଶିକ୍ଷକ ପଦବୀ ଖାଲି ଥିବା ଜଣାପଡ଼ିଛି।

ଓଡ଼ିଶାରେ ୩୬ଟି ସ୍ୱୟଂଶାସିତ କଲେଜ ମଧ୍ୟରୁ ୧୯ଟି ସରକାରୀ କଲେଜ। ଏଥିରୁ ୧୨ଟିରେ ନ୍ୟାକ୍ ମାନ୍ୟତା ରହିଛି। ଓଡ଼ିଶା ଇକୋନୋମିକ୍ ସର୍ଭେ ୨୦୧୪-୧୫ରେ ପ୍ରଦତ୍ତ ତଥ୍ୟ ଅନୁଯାୟୀ ଓଡ଼ିଶାରେ ୯୭ଟି ସରକାରୀ ମହାବିଦ୍ୟାଳୟ, ୭୮୪ଟି ଏଡେଡ୍ କଲେଜ, ୬୩୦ଟି ବ୍ଲକ୍ ଗ୍ରାଣ୍ଟ କଲେଜ, ୫୭୧ଟି ନନ୍-ଗଭର୍ଣ୍ଣମେଣ୍ଟ ଅନ-ଏଡେଡ କଲେଜ, ୨୮୭ଟି ସେଲ୍ଫ ଫାଇନାନ୍ସିଂ କଲେଜ ଓ ୬୩୦ଟି ଏଡେଡ୍ ସଂସ୍କୃତ ମହାବିଦ୍ୟାଳୟ ରହିଛି। ଅନ୍ୟ ଏକ ତଥ୍ୟରୁ ଜଣାପଡ଼େ ଯେ ଓଡ଼ିଶାରେ ମୋଟ୍ ୧୫୧୯ଟି ଯୁକ୍ତଦୁଇ ଓ ୭୧୪ଟି ଯୁକ୍ତତିନି କଲେଜ ରହିଛି। ଏହି ଯୁକ୍ତ ତିନି କଲେଜଗୁଡିକ ମଧ୍ୟରୁ ୩୧ଟି କଲେଜରେ ପି.ଜି. ପାଠ୍ୟକ୍ରମର ବ୍ୟବସ୍ଥା ରହିଛି।

ଏହି ଯୁକ୍ତଦୁଇ ଓ ଯୁକ୍ତତିନି ସରକାରୀ ପରିଚାଳିତ କଲେଜଗୁଡ଼ିକରେ ୮୦୦ରୁ ଊର୍ଦ୍ଧ୍ୱ ଶିକ୍ଷକ ପଦବୀ ଖାଲି ରହିଛି। ଏହାଦ୍ୱାରା ସରକାର ଉଚ୍ଚଶିକ୍ଷା ଅନୁଷ୍ଠାନଗୁଡ଼ିକ ପ୍ରତି ବୈମାତୃକ ମନୋଭାବ ପୋଷଣ କରୁଛନ୍ତି ବୋଲି ଏକ ଧାରଣା ସୃଷ୍ଟି ହୋଇଛି।

ଅଳ୍ପଦିନ ତଳେ ଘୋଷଣା କରାଯାଇଛି ଯେ, ଜୟପୁରର ବିକ୍ରମଦେବ କଲେଜ, ବଲାଙ୍ଗିରର ରାଜେନ୍ଦ୍ର କଲେଜ, ପୁରୀର ସାମନ୍ତ ଚନ୍ଦ୍ରଶେଖର କଲେଜ, ଅନୁଗୁଳର ଅନୁଗୁଳ ସରକାରୀ କଲେଜ, କେନ୍ଦୁଝରର ଧରଣୀଧର କଲେଜକୁ ବିଶ୍ୱବିଦ୍ୟାଳୟର ମାନ୍ୟତା ଦିଆଯିବ। ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଘୋଷଣା କରିଦେବା ସହଜ, କିନ୍ତୁ ଗୁଣାତ୍ମକ ଶିକ୍ଷା ଓ ଗବେଷଣାର ସୁବ୍ୟବସ୍ଥା କରିବା କ୍ଷେତ୍ରରେ ଆମ ସରକାର ଧ୍ୟାନ ଦେଉନାହାନ୍ତି। ଆଶ୍ଚର୍ଯ୍ୟର କଥା ଯେ ଉପରୋକ୍ତ ମହାବିଦ୍ୟାଳୟଗୁଡ଼ିକୁ ବିଶ୍ୱବିଦ୍ୟାଳୟରେ ପରିଣତ କରିବା ସମୟରେ ଘରୋଇ ପରିଚାଳିତ ମହାବିଦ୍ୟାଳୟଗୁଡ଼ିକ କଥା ସରକାର ବିଚାରକୁ ନେଇନାହାନ୍ତି। ଅତ୍ୟନ୍ତ ସୁପରିଚାଳିତ କେତେକ ଘରୋଇ ମହାବିଦ୍ୟାଳୟ କଥା ଏଠାରେ ଉଲ୍ଲେଖ କରିବା ଉଚିତ ହେବ। ସେଗୁଡ଼ିକ ହେଲା ପ୍ରାଣନାଥ ମହାବିଦ୍ୟାଳୟ, ଖୋର୍ଦ୍ଧା, ଏସ୍‌ଭିଏମ୍ କଲେଜ, ଜଗତସିଂହପୁର, କେନ୍ଦ୍ରାପଡ଼ା କଲେଜ, କେନ୍ଦ୍ରାପଡ଼ା, ଭଞ୍ଜନଗର କଲେଜ, ବୌଦ୍ଧ କଲେଜ, ସୋନପୁର କଲେଜ, ପଦ୍ମପୁର କଲେଜ, ବରପାଲି କଲେଜ, ଏଲ.ଏନ୍ କଲେଜ, ଝାରସୁଗୁଡ଼ା, ଦେଓଗଡ଼ କଲେଜ, ଟିଟିଲାଗଡ଼ କଲେଜ, ଯେଉଁ କଲେଜଗୁଡ଼ିକର ମଧ୍ୟ ଏକକ ବିଶ୍ୱବିଦ୍ୟାଳୟ ହେବାର ସମ୍ପୂର୍ଣ୍ଣ ଯୋଗ୍ୟତା ରହିଛି। ସରକାର ନିଜ ଅଧିନରେ ଥିବା କଲେଜଗୁଡ଼ିକୁ ବିଶ୍ୱବିଦ୍ୟାଳୟରେ ପରିଣତ କରୁଥିବାବେଳେ ଘରୋଇ ପରିଚାଳନାରେ ଥିବା କଲେଜକୁ ବିଶ୍ୱବିଦ୍ୟାଳୟର ମାନ୍ୟତା ଦେବାକୁ ଆଗ୍ରହ ପ୍ରକାଶ କରୁନଥିବାରୁ ଘରୋଇ କଲେଜଗୁଡ଼ିକରେ ଅସନ୍ତୋଷ ବ୍ୟାପୁଛି।

ଓଡ଼ିଶାରେ ଏବେ ପାଖାପାଖି ୨୦ଟି ବିଶ୍ୱବିଦ୍ୟାଳୟ ହେଲାଣି। ଏହି ବିଶ୍ୱବିଦ୍ୟାଳୟ ମଧ୍ୟରୁ ୧୪ଟି ସରକାରୀ ଅନୁଦାନ ଉପରେ ନିର୍ଭର କରୁଥିଲାବେଳେ ସେଥିରୁ ଗୋଟିକର ବି ନ୍ୟାକ୍ ମାନ୍ୟତା ନାହିଁ। କୁଳାଧିପତି ସେହି ବିଶ୍ୱବିଦ୍ୟାଳୟଗୁଡ଼ିକୁ ତାଗିଦ କରିବା ଏବଂ କୁଳପତିମାନଙ୍କୁ ନ୍ୟାକ୍ ମାନ୍ୟତା ଆଣିବାକୁ ବାଧ୍ୟ କରିବା ଉଚିତ ହେବ। କାରଣ ନ୍ୟାକ୍ ମାନ୍ୟତା ନଥିବାରୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ରାଜ୍ୟର ସରକାରୀ ବିଶ୍ୱବିଦ୍ୟାଳୟ ଓ ସଂଖ୍ୟାଧିକ ଡିଗ୍ରୀ କଲେଜକୁ ଅନୁଦାନରୁ ବଞ୍ଚିତ

କରୁଛନ୍ତି । ସେହିଭଳି ରାଷ୍ଟ୍ରୀୟ ଉଚ୍ଚତର ଶିକ୍ଷା ଅଭିଯାନ (ରୁଶା) ପକ୍ଷରୁ ଦିଆଯାଉଥିବା ଆର୍ଥିକ ଅନୁଦାନ ମଧ୍ୟ ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟମାନେ ପାଇବାରୁ ବଞ୍ଚିତ ହେଉଛନ୍ତି । ପରିଚାଳନାଗତ ତ୍ରୁଟିରୁ ଏଭଳି ସମସ୍ୟାମାନ ସୃଷ୍ଟି ହେଉଛି । ସେଥିପାଇଁ ବିଶ୍ୱବିଦ୍ୟାଳୟର କୁଳପତି, କୁଳାଧିପତି ଓ ଉଚ୍ଚଶିକ୍ଷା ବିଭାଗ ଦାୟିତ୍ୱ ନେବା ଉଚିତ ।

ଫରାସୀ ଦାର୍ଶନିକ ଆର୍ଥର ଦାନ୍ତେ କହିଥିଲେ ଯେ ଖାଦ୍ୟ ପରେ ମଣିଷର ପ୍ରଧାନ ଆବଶ୍ୟକତା ହେଉଛି ଶିକ୍ଷା । ଜାତିର ପିତା ମହାତ୍ମା ଗାନ୍ଧୀ ଶିକ୍ଷାକୁ ସାର୍ବଜନୀନ କରିବାକୁ ମାର୍ଗ ଦର୍ଶନ ଦେଇଥିଲେ । କିନ୍ତୁ ଆମ ଦେଶର ସମ୍ବିଧାନର ପ୍ରଣେତାମାନେ ଶିକ୍ଷାକୁ କେନ୍ଦ୍ର ଶାସନର ଦାୟିତ୍ୱରେ ନରଖି ଏହାକୁ ଉଭୟ କେନ୍ଦ୍ର ଓ ରାଜ୍ୟର ଦାୟିତ୍ୱରେ ରଖିଥିଲେ । ଏବେ ସମୟ ଆସିଛି ସମ୍ବିଧାନକୁ ସଂଶୋଧନ କରି ଶିକ୍ଷାକୁ ସମ୍ପୂର୍ଣ୍ଣ ଭାବେ କେନ୍ଦ୍ର ଦାୟିତ୍ୱରେ ରଖିବା । କେନ୍ଦ୍ର ଦ୍ୱାରା ପରିଚାଳିତ ଅନୁଷ୍ଠାନଗୁଡ଼ିକୁ ଯେଭଳି ଅପର୍ଯ୍ୟାପ୍ତ ଅର୍ଥ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ଯୋଗାଇ ଦେଉଛି, ସେଭଳି କୌଣସି ଭେଦଭାବ ନ ରଖି ରାଜ୍ୟରେ ଅବସ୍ଥିତ ଅନୁଷ୍ଠାନମାନଙ୍କୁ ସମପରିମାଣରେ ଆର୍ଥିକ ସହାୟତା ଯୋଗାଇଦେବା ଉଚିତ ହେବ । ଅନେକ ବୁଦ୍ଧିଜୀବୀଙ୍କ ମତ ଯେ, ଭାରତ ସରକାର ଦେଶରେ ସର୍ବତ୍ର ଶିକ୍ଷାର ମାନ ଓ ପରିଚାଳନାର ଦକ୍ଷତା ବୃଦ୍ଧି ପାଇଁ ଗୋଟିଏ ସର୍ବଭାରତୀୟ ଶିକ୍ଷା ସେବା (ଇଣ୍ଡିଆନ ଏଜୁକେସନ ସର୍ଭିସ୍) ପ୍ରଚଳନ କରିବା ଜରୁରୀ ରହିଛି । ଦେଶର ପ୍ରତିରକ୍ଷା ଯେଭଳି ଜରୁରୀ, ଶିକ୍ଷାର ଗୁରୁତ୍ୱ ମଧ୍ୟ ତା'ଠାରୁ କମ୍ ନୁହେଁ । କାରଣ ଶିକ୍ଷା ଦ୍ୱାରା ଭବିଷ୍ୟତର ବଂଶଧରମାନଙ୍କୁ ଦେଶର ସୁନାଗରିକ ଭାବରେ ଗଢ଼ିତୋଳିବା ଓ ଏକ ସୁଶୃଙ୍ଖଳିତ, ସୁସ୍ଥ ସମାଜ ପ୍ରତିଷ୍ଠା କରିବା ସମ୍ଭବ । ଓଡ଼ିଶାର ଉଚ୍ଚ ଶିକ୍ଷାନୁଷ୍ଠାନଗୁଡ଼ିକ ବର୍ତ୍ତମାନ ଯେଭଳି ଆର୍ଥିକ ଦୁରବସ୍ଥା ଓ ପରିଚାଳନାଗତ ତ୍ରୁଟିର ସମ୍ମୁଖୀନ ହୋଇ ସରକାରଙ୍କ ଦ୍ୱାରା ଅବହେଳିତ ଅବସ୍ଥାରେ ଅଛନ୍ତି ତାହାର ନିରାକରଣ ଜରୁରୀ ହୋଇପଡ଼ିଛି ।

*ସମାଜ - ୧୨.୫.୨୦୧୬*

# ଓଡ଼ିଶାରେ ପାନୀୟ ଜଳର ସମସ୍ୟା

ଓଡ଼ିଶାରେ ପିଇବା ପାଣିର ଅଭାବ ଦିନକୁ ଦିନ ଗୁରୁତର ହେବାରେ ଲାଗିଛି। ଏହା କେବଳ ଆଦିବାସୀ ଅଧ୍ୟୁଷିତ କୋରାପୁଟ, ମାଲକାନଗିରି, ରାୟଗଡ଼ା, କଳାହାଣ୍ଡି, ବଲାଙ୍ଗିର, ମୟୂରଭଞ୍ଜ, କେନ୍ଦୁଝର ଓ ସୁନ୍ଦରଗଡ଼ ଭଳି ଦୁର୍ଗମ ଜିଲ୍ଲାଗୁଡ଼ିକରେ ସୀମିତ ହୋଇ ରହିନାହିଁ, ଉଣାଅଧିକେ ସବୁ ଜିଲ୍ଲାମାନଙ୍କରେ ଉତ୍କଟ ରୂପ ଧାରଣ କରିବାରେ ଲାଗିଛି। ଜଳ ସଂକଟର ମୁଖ୍ୟ କାରଣଗୁଡ଼ିକ ହେଲା- (୧) ଦ୍ରୁତ ଜନସଂଖ୍ୟା ବୃଦ୍ଧି, (୨) ଶିଳ୍ପସଂସ୍ଥାଗୁଡ଼ିକର ନିର୍ବିଚାର ଭାବରେ ଜଳ ଲୁଣ୍ଠନ, (୩) ଭୂତଳ ଜଳସ୍ତର ହ୍ରାସ, (୪) ଅନିୟମିତ ବର୍ଷା, (୫) ପୋଖରୀ, ଝରଣା, ନଦୀନାଳଗୁଡ଼ିକୁ ପୋତି ସେଠାରେ କୋଠାବାଡ଼ି ନିର୍ମାଣ ଇତ୍ୟାଦି। ଦୁଃଖର ବିଷୟ ଜନପ୍ରତିନିଧି ଓ ସରକାରୀ ଅଫିସରମାନେ ନିଜ ଅଞ୍ଚଳରେ ହେଉଥିବା ବେଆଇନ କାର୍ଯ୍ୟଦ୍ୱାରା ଜଳସଂପଦ ପ୍ରତି ବିପଦ ସୃଷ୍ଟି ହେଉଥିବା ଜାଣୁଥିଲେ ମଧ୍ୟ ଏହାର ପ୍ରତିକାର ପ୍ରତି କୌଣସି ପଦକ୍ଷେପ ନେଉନାହାନ୍ତି। ଏଠାରେ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ। ଭୁବନେଶ୍ୱର ଉପକଣ୍ଠରେ କୁଆଖାଇ ନଦୀଶଯ୍ୟାର ଏକ ବିରାଟ ଅଂଶକୁ ଦଖଲ କରି ତିରୁପତି ପାଣିଗ୍ରାହୀ ନାମକ ବ୍ୟକ୍ତି ସେଠାରେ 'ହାଇଟେକ୍ ମେଡିକାଲ କଲେଜ ଓ ହସ୍ପିଟାଲ' ପ୍ରତିଷ୍ଠା କଲେ। ଏହି ବେଆଇନ କାର୍ଯ୍ୟର ପ୍ରତିବାଦ ହୋଇଥିଲେ ମଧ୍ୟ ଏହା ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ହୋଇଥିଲାଭଳି ମନେ ହେଉନାହିଁ।

ଗତ ଅଶି ଦଶକ (୧୯୮୧ରୁ ୧୯୯୦ ପର୍ଯ୍ୟନ୍ତ)ରେ ସମସ୍ତଙ୍କ ପାଇଁ ଶୁଦ୍ଧ ପାନୀୟ ଜଳର ବାର୍ତ୍ତା ଦେଇ 'ବିଶ୍ୱ ଜଳ ଦଶନ୍ଧି' ପାଳିତ ହୋଇଥିଲା। ପୁନର୍ବାର ୨୦୦୫ ମସିହାରୁ 'ବିଶ୍ୱ ଜଳସଂପଦ ଦଶନ୍ଧି' ଘୋଷଣା କରାଯାଇଅଛି, ଯାହାର ଅବଧି ୨୦୧୫ ମସିହାରେ ଶେଷ ହେବ। ଏହାର ବାର୍ତ୍ତା ରହିଛି 'ଜୀବନ ପାଇଁ ଜଳ'। କିନ୍ତୁ ଆମ ରାଜ୍ୟର ଅଧିକାଂଶ ସ୍ଥାନରେ ଲୋକମାନେ ଶୁଦ୍ଧ ପାନୀୟଜଳ ପାଇବା ଦୁରୂହ ବ୍ୟାପାର ହୋଇଛି। ସରକାରଙ୍କର ଜଳଯୋଗାଣ ବ୍ୟବସ୍ଥା ବହୁ ସ୍ଥାନରେ ଅଧପନ୍ତରିଆ ଭାବରେ ଚାଲୁଥିବାରୁ ଲୋକମାନେ ଆବଶ୍ୟକ ଜଳ ପାଇବାରୁ ବଞ୍ଚିତ ହେବା ସଙ୍ଗେ ସଙ୍ଗେ ମାରାତ୍ମକ ରୋଗରେ ମଧ୍ୟ ପୀଡ଼ିତ ହେଉଛନ୍ତି। ମିଳିତ

ଜାତିସଂଘ ତରଫରୁ ବିଗତ ୩୫ ବର୍ଷ ଧରି ଜଳ ସଂପଦର ସୁରକ୍ଷା, ସୁବିନିଯୋଗ ଓ ସୁପରିଚାଳନା ଉପରେ ପ୍ରାଧାନ୍ୟ ଦିଆଯାଉଥିଲେ ମଧ ଓଡ଼ିଶାରେ ଏହାର ପ୍ରଭାବ ନଗଣ୍ୟ। 'ଆମନେଷ୍ଟି ଇଣ୍ଟରନାଶନାଲ' ତରଫରୁ ପ୍ରକାଶିତ ଏକ ରିପୋର୍ଟର ତଥ୍ୟ ଅନୁଯାୟୀ ଶିଳ୍ପ କାରଖାନା ଓ ଖଣି ଖାଦାନରୁ ନିର୍ଗତ ହେଉଥିବା ବର୍ଜ୍ୟବସ୍ତୁ ରାଜ୍ୟର ମହାନଦୀ, ବ୍ରାହ୍ମଣୀ, ବୈତରଣୀ ଭଳି ଅନେକ ନଦୀ-ଉପନଦୀକୁ ଛଡ଼ାଯାଉଥିବାରୁ ଏହି ନଦୀଗୁଡ଼ିକର ଜଳ ଆଉ ବ୍ୟବହାର ଉପଯୋଗୀ ହୋଇ ରହିନାହିଁ। ସଦ୍ୟତମ ଉଦାହରଣ ହେଲା ଚଳିତବର୍ଷ ଜାନୁଆରୀ ମାସରେ ସମ୍ବଲପୁରରେ ଦୂଷିତ ପାଣି ପିଇ ଜଣ୍ଡିସ୍‌ରେ ଆକ୍ରାନ୍ତ ହୋଇ ୨୫ ଜଣ ପ୍ରାଣ ହରାଇଥିଲେ ଓ ପ୍ରାୟ ୧୧ ହଜାରରୁ ଉର୍ଦ୍ଧ୍ୱ ଲୋକ ବିଭିନ୍ନ ଚିକିତ୍ସାଳୟରେ ରହି ଚିକିତ୍ସିତ ହେଉଥିଲେ। ଖୋଳତାଡ଼ କରିବାରୁ ଜଣାପଡ଼ିଥିଲା ଯେ ସମ୍ବଲପୁର ଓ ଆଖପାଖ ଅଞ୍ଚଳରେ ଥିବା ଶିଳ୍ପଗୁଡ଼ିକର ବର୍ଜ୍ୟପାଣି ଓ ସହରାଞ୍ଚଳର ନର୍ଦ୍ଦମା ପାଣି ପ୍ରତିଦିନ ମହାନଦୀକୁ ଛଡ଼ାଯାଉଛି ଏବଂ ସେହି ଦୂଷିତ ପାଣିକୁ ଭଙ୍ଗାଦଦରା ପାଇପ୍ ଦ୍ୱାରା ସମ୍ବଲପୁରବାସୀଙ୍କୁ ଯୋଗାଇ ଦିଆଯାଉଥିଲା। ଅନେକ ସ୍ଥାନରେ ପାଇପ୍ ଭାଙ୍ଗିଯାଇଥିବାରୁ ସେଥିରେ ନର୍ଦ୍ଦମା ପାଣି ମିଶିଯାଇ ଏଭଳି ସାଂଘାତିକ ପରିସ୍ଥିତି ସୃଷ୍ଟି ହୋଇଥିଲା ବୋଲି ଅନୁସନ୍ଧାନରୁ ଜଣାପଡ଼ିଥିଲା।

ଆମ ରାଜ୍ୟରେ ସରକାରଙ୍କ ପିଇବା ପାଣି ଯୋଗାଇବା ପାଇଁ ହୋଇଥିବା ଉଦ୍ୟମ କେବଳ ନଳକୂପ ଓ ପାଇପ ଜଳ ଯୋଗାଣରେ ସୀମିତ ହୋଇ ରହିଛି, ଯେଉଁଥିରେ ଜଳବିଶୋଧନର କିଛି ବ୍ୟବସ୍ଥା ନାହିଁ। ନଳକୂପ ଦ୍ୱାରା ଉଠାଯାଉଥିବା ପାଣିରେ ଲୌହ, ଫ୍ଲୋରାଇଡ଼, ନାଇଟ୍ରେଟ ପରି ସ୍ୱାସ୍ଥ୍ୟହାନିକାରକ ଦ୍ରବ୍ୟ ରହିଛି। ଏକ ନିର୍ଭରଯୋଗ୍ୟ ତଥ୍ୟରୁ ଜଣାପଡ଼େ ଯେ ଦୂଷିତ ପାନୀୟ ଜଳ ବ୍ୟବହାର ଯୋଗୁଁ ୨୦୦୧ରୁ ୨୦୧୪ ମସିହା ମଧ୍ୟରେ ରାଜ୍ୟରେ ୫୧୬୯ ଜଣ ଲୋକ କାମଳ ଓ ଝାଡ଼ାବାନ୍ତି ରୋଗରେ ପ୍ରାଣ ହରାଇଛନ୍ତି। ଏହି ସମୟ ମଧ୍ୟରେ ଦୂଷିତ ପାନୀୟ ଜଳ ବ୍ୟବହାର କରି ୭ ଲକ୍ଷ ୭୨ ହଜାର ବ୍ୟକ୍ତି ଡାଇରିଆ, କଲେରା ଇତ୍ୟାଦି ରୋଗରେ ଓ ୬୫ ହଜାର ବ୍ୟକ୍ତି କାମଳ ରୋଗରେ ଆକ୍ରାନ୍ତ ହୋଇଛନ୍ତି।

୨୦୧୪ ମସିହା ମାର୍ଚ୍ଚ ମାସରେ ଜାତୀୟ ଗ୍ରାମୀଣ ପାନୀୟ ଜଳ ଯୋଗାଣ କାର୍ଯ୍ୟାଳୟରୁ ମିଳିଥିବା ତଥ୍ୟ ଅନୁସାରେ ଓଡ଼ିଶାରେ ଆବଶ୍ୟକ ପରିମାଣର ପାନୀୟ ଜଳ ପାଇପାରୁ ନଥିବା ଜିଲ୍ଲାମାନଙ୍କରୁ ତିନୋଟି ଜିଲ୍ଲା ସବୁଠାରୁ ଅଭାବଗ୍ରସ୍ତ। ସେହି

ଜିଲ୍ଲାଗୁଡ଼ିକ ହେଲା ଫୁଲବାଣୀ, ମୟୂରଭଞ୍ଜ ଓ ସମ୍ବଲପୁର। ରାଜ୍ୟରେ ସମୁଦାୟ ୧,୦୩,୩୫୨ଟି ଜନବସତି ଥିଲାବେଳେ ମାତ୍ର ୫୩,୭୪୪ଟି ଜନବସତିକୁ ମୁଣ୍ଡପିଛା ଦୈନିକ ୫୦ ଲିଟର ପାଣି ମିଳୁଥିବା ଜଣାପଡ଼ିଥିଲା। ୨୦୧୪ ମସିହା ଶେଷଭାଗରେ ଜନସ୍ୱାସ୍ଥ୍ୟ ବିଭାଗ ପକ୍ଷରୁ ଆୟୋଜିତ ଏକ କର୍ମଶାଳାରେ ବିଭାଗୀୟ ମନ୍ତ୍ରୀ ସ୍ୱୀକାର କରିଥିଲେ ଯେ ରାଜ୍ୟର ୧୧୨ଟି ପୌରାଞ୍ଚଳର ବହୁ ୱାର୍ଡ଼କୁ ଜଳଯୋଗାଣ ସମ୍ଭବପର ହୋଇପାରିନାହିଁ ଏବଂ ଯେଉଁଠାରେ ଜଳ ଯୋଗାଣ ହେଉଛି ତାହା ଦିନକୁ ୨/୩ ଘଣ୍ଟାରେ ସୀମିତ। ତେବେ ପ୍ରଶ୍ନ ଉଠେ ସାରା ରାଜ୍ୟରେ ପାନୀୟ ଜଳ ଅଭାବରୁ ଲୋକେ ଛଟପଟ ହେଉଥିଲାବେଳେ ସରକାର କେବେ ଏହି ପାନୀୟ ଜଳର ଅଭାବ ମେଣ୍ଟାଇବେ ତାହାର କୌଣସି ସୂଚନା ଦେଇନାହାନ୍ତି।

୨୦୧୧ ମସିହା ଜନଗଣନା ତଥ୍ୟରୁ ଜଣାପଡ଼େ ଯେ ଓଡ଼ିଶାରେ ୩୬ ପ୍ରତିଶତ ପରିବାରକୁ ପିଇବା ପାଣି ସଂଗ୍ରହ କରିବାକୁ ଅତି କମ୍‌ରେ ଅଧକିଲୋମିଟର ଚାଲିବାକୁ ପଡ଼େ। ରାଜ୍ୟରେ ସବୁ ଅଞ୍ଚଳରେ ନଳକୂପ ଥିଲେ ମଧ୍ୟ ଭୂତଳ ଜଳସ୍ତର କମିକମି ଯାଉଥିବାରୁ ସେଗୁଡ଼ିକ କାମ କରୁନାହିଁ। ଅଧିକାଂଶ ନଳକୂପ ଅଚଳ ଅବସ୍ଥାରେ ଥିଲେ ମଧ୍ୟ ଦୀର୍ଘଦିନ ଧରି ସଜଡ଼ା ହୋଇପାରୁନାହିଁ। ଆମେ ବର୍ଷାଦିନେ ପ୍ରଚୁର ଜଳ ପାଉଥିଲେ ମଧ୍ୟ ଏହାର ସଂରକ୍ଷଣ ପାଇଁ ରାଜ୍ୟ ସରକାର ଆଖିଦୃଶିଆ ଉଦ୍ୟମ କରୁନାହାନ୍ତି। ଗୁଜୁରାଟ ସରକାର ରାଜ୍ୟରେ ବର୍ଷାଜଳ ସଂରକ୍ଷଣ ପାଇଁ ପାଖାପାଖି ଏକଲକ୍ଷ ଚେକ୍‌ଡ୍ୟାମ୍ ନିର୍ମାଣ କରି ଜଳ ସଂରକ୍ଷଣ ଦ୍ୱାରା ଜଳ ସଂକଟରୁ ରାଜ୍ୟବାସୀଙ୍କୁ ରକ୍ଷା କରିପାରିଛନ୍ତି। ୨୦୦୦ ମସିହାରେ ଆନ୍ଧ୍ରପ୍ରଦେଶରେ ଘୋର ଅନାବୃଷ୍ଟି ଯୋଗୁଁ ଲୋକମାନେ ଭୀଷଣ ଜଳାଭାବର ସମ୍ମୁଖୀନ ହୋଇଥିଲେ। ସେ ସମୟରେ ମୁଖ୍ୟମନ୍ତ୍ରୀ ଚନ୍ଦ୍ରବାବୁ ନାଇଡୁ ରାଜ୍ୟର ସବୁ ଅଞ୍ଚଳରେ ଯୁଦ୍ଧକାଳୀନ ଭିତ୍ତିରେ ଜଳ ଅମଳ ପ୍ରକଳ୍ପ ପ୍ରତିଷ୍ଠା ନିମନ୍ତେ ଜିଲ୍ଲାପାଳ, କୃଷି, ମୃତ୍ତିକା ସଂରକ୍ଷଣ ଓ ଜଳସେଚନ ବିଭାଗର ଅଧିକାରୀମାନଙ୍କୁ ନିର୍ଦ୍ଦେଶ ଦେଲେ ଏବଂ ନିଜେ ପ୍ରକଳ୍ପ କାର୍ଯ୍ୟକୁ ତଦାରଖ କଲେ। ତାହାଦ୍ୱାରା ରାଜ୍ୟର ଚତୁର୍ଦ୍ଦିଗରେ ଜଳ ଅମଳ ପ୍ରକଳ୍ପମାନ ଗଢ଼ିଉଠିଲା ଓ ପାନୀୟ ଜଳ ସମସ୍ୟାର ବହୁଅଂଶରେ ସମାଧାନ ହୋଇଗଲା। ବ୍ୟକ୍ତିଗତ ଉଦ୍ୟମରେ ସ୍ଥାନୀୟ ଜନସାଧାରଣଙ୍କୁ ସଂଗଠିତ କରି ମହାରାଷ୍ଟ୍ରର ରାଲେଗାଓଁ ସିଦ୍ଧି ଓ ରାଜସ୍ଥାନର ଅଲୱାର ଅଞ୍ଚଳରେ ଜଳଛାୟା ପ୍ରକଳ୍ପମାନ ପ୍ରତିଷ୍ଠା କରି ଆନ୍ନା ହଜାରେ ଓ ରାଜେନ୍ଦ୍ର ସିଂହ ସେଠାରେ ଜଳାଭାବ ସମସ୍ୟାକୁ ସମାଧାନ କରି ଦେଶବାସୀଙ୍କ ପାଇଁ ଆଦର୍ଶ ସୃଷ୍ଟି କରିପାରିଛନ୍ତି।

ଓଡ଼ିଶା ସରକାର ସମନ୍ୱିତ ଜଳସଂପଦ ପରିଚାଳନା (ଇଣ୍ଟିଗ୍ରେଟେଡ୍ ୱାଟର ରିସୋର୍ସ ମ୍ୟାନେଜମେଣ୍ଟ) ଯୋଜନା କାର୍ଯ୍ୟକାରୀ କରିବା ପାଇଁ ଏକ ସ୍ୱାଗତଯୋଗ୍ୟ ନିଷ୍ପତ୍ତି ନେଇଛନ୍ତି। ଏହାଦ୍ୱାରା ଜଳସଂପଦ ଓ ଜମି ଏବଂ ଅନ୍ୟାନ୍ୟ ପ୍ରାକୃତିକ ସଂପଦର ବିକାଶ ଘଟିପାରିବ। ଏହି ଯୋଜନାର ୪ଟି ଲକ୍ଷ୍ୟ ହେଲା- (୧) ଜନସାଧାରଣଙ୍କ ପାଇଁ ଜଳ ଯୋଗାଣ ବ୍ୟବସ୍ଥା କରିବା, (୨) ଜଳଦ୍ୱାରା ପ୍ରାକୃତିକ ପରିବେଶ କିପରି ସୁରକ୍ଷିତ ରହିବ ସେ ଦିଗରେ ପଦକ୍ଷେପ ନେବା, (୩) ଚାଷ ପାଇଁ ଦରକାର ପଡୁଥିବା ଜଳ ଉପଲବ୍ଧ କରାଇବା ଏବଂ (୪) ଶିଳ୍ପ ଓ ଅନ୍ୟାନ୍ୟ ଉଦ୍ୟୋଗ ପାଇଁ ଆବଶ୍ୟକ ହେଉଥିବା ଜଳ ଯୋଗାଇଦେବା। ଏଥିରେ ୪ଟି ଲକ୍ଷ୍ୟ ଥିଲେ ମଧ୍ୟ କମ୍ପାନୀମାନଙ୍କ ଚକ୍ରାନ୍ତ ଯୋଗୁଁ କେବଳ ଶିଳ୍ପ ଓ ଅନ୍ୟାନ୍ୟ ଉଦ୍ୟୋଗମାନେ ଜଳର ଅଧିକାଂଶ ଭାଗ ଲୁଣ୍ଠନ କରୁଛନ୍ତି।

ଦକ୍ଷିଣ ଆମେରିକୀୟ ଦେଶ ବଲିଭିଆରେ ୨୦୦୦ ମସିହାରେ ଜଳ ଅଭାବକୁ ନେଇ ଜନସଂଘର୍ଷ ଘଟିଥିଲା ଓ ସେଥିପାଇଁ ସେ ଦେଶର ରାଷ୍ଟ୍ରପତି ଜରୁରୀକାଳୀନ ପରିସ୍ଥିତି ଘୋଷଣା କରିଥିଲେ। ଦୈନନ୍ଦିନ ବ୍ୟବହାରରେ ପାଣି ଯୋଗାଇବା ପାଇଁ ସେଠାରେ ଗୋଟିଏ ବହୁରାଷ୍ଟ୍ରୀୟ କମ୍ପାନୀ ଠିକା ନେଇଥିଲା ଏବଂ ପାଣିର ମୂଲ୍ୟ ସେହି କଂପାନୀ ବହୁତ ବଢ଼ାଇଦେବାରୁ ଏହିଭଳି ଜନସଂଘର୍ଷ ସଂଗଠିତ ହୋଇଥିଲା। ଆମ ରାଜ୍ୟରେ ମଧ୍ୟ ସେହିଭଳି ଏକ ସଂଘର୍ଷ ଘଟିବା ଅସମ୍ଭବ ନୁହେଁ।

ରାଜ୍ୟରେ ପ୍ରବାହିତ ନଦୀଗୁଡ଼ିକରେ ଜଳପତନ ହ୍ରାସ ପାଇବାରେ ଲାଗିଛି। ଜଳସଂପଦ ବିଭାଗର କେତେକ ପୂର୍ବତନ ମୁଖ୍ୟ ଯନ୍ତ୍ରୀ ଏହି ଜଳପତନ ହ୍ରାସକୁ ଦେଖି ଏହାଦ୍ୱାରା ରାଜ୍ୟରେ ଭବିଷ୍ୟତରେ ଯେ ଜଳ ସଂକଟ ସୃଷ୍ଟି ହେବ, ଏହାର ପୂର୍ବାନୁମାନ କରିଛନ୍ତି। ଏହି ଜଳ ସଂକଟ କେବଳ ପାନୀୟ ଜଳ ନୁହେଁ, କୃଷି ଉତ୍ପାଦନ କ୍ଷେତ୍ରରେ ବହୁଭାବରେ ବାଧା ଉପୁଜାଇବ।

ଆମ ରାଜ୍ୟରେ ସରକାରଙ୍କ ଉଦ୍ୟମ ସହିତ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଯଦି ଜଳାଭାବ ସମସ୍ୟାକୁ ଦୂର କରିବାକୁ ଆଗଭର ହୁଅନ୍ତେ ତେବେ ପାନୀୟ ଜଳ ଅଭାବର ସମ୍ମୁଖୀନ ହେଉଥିବା ଜନସାଧାରଣଙ୍କର ସମସ୍ୟା ଅନେକାଂଶରେ ଦୂର ହୋଇପାରନ୍ତା।

*ପ୍ରମେୟ -୨୨.୧୦.୨୦୧୬*

# ଓଡ଼ିଶାର ଏକ ଆଦର୍ଶ ଗ୍ରାମ କଲରାବାଙ୍କ

୨୮ ଫେବୃଆରୀ, ୨୦୧୪ ଦିନ କାନାରା ବ୍ୟାଙ୍କର ଏକ ଶାଖା କଟକ ଜିଲ୍ଲା ନିଶ୍ଚିନ୍ତକୋଇଲି ବ୍ଲକ୍ ଅନ୍ତର୍ଗତ ମାଣପୁର ପଞ୍ଚାୟତର କଲରାବାଙ୍କ ଗ୍ରାମରେ ଉଦ୍‌ଘାଟିତ ହୋଇଥିଲା । ଏହି ବ୍ୟାଙ୍କର ଶୁଭ ଉଦ୍‌ଘାଟନ ଅବସରରେ କିଟ୍ ଓ କିସ୍‌ର ପ୍ରତିଷ୍ଠାତା ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ସଭାପତିତ୍ୱରେ ଏକ ସଭା ଅନୁଷ୍ଠିତ ହୋଇଥିଲା । ମୋତେ ମୁଖ୍ୟ ଅତିଥି ଭାବେ ଯୋଗଦେବାର ସୁଯୋଗ ମିଳିଥିଲା । ଏହି ଗ୍ରାମଟି କଟକରୁ ପ୍ରାୟ ୨୮ କି.ମି. ଦୂରରେ ଅବସ୍ଥିତ । କନ୍ଦରପୁରରୁ ପାରାଦ୍ୱୀପ ଗଲାବେଳେ ରଘୁନାଥପୁର ପୂର୍ବରୁ କଣ୍ଟୁଆର ଛକରୁ ବାମପଟେ ଏକ ୩୦ ଫୁଟିଆ ଚଉଡା ରାସ୍ତାରେ ପ୍ରାୟ ଦୁଇ କି.ମି ପରେ କଲରାବାଙ୍କ ଗ୍ରାମ ପଡ଼େ । କାନାରା ବ୍ୟାଙ୍କର ଉଦ୍‌ଘାଟନୀ ସଭା ଶେଷ ହେବା ପରେ ସେହି ଗ୍ରାମଟି ବୁଲି ଦେଖିବାକୁ ପ୍ରବଳ ଇଚ୍ଛା ଜାଗ୍ରତ ହୋଇଥିଲା । ପୂର୍ବରୁ ଶୁଣିଥିଲି ଯେ ଡକ୍ଟର ଅଚ୍ୟୁତ ସାମନ୍ତ ଏହି ଗ୍ରାମରେ ଜନ୍ମଗ୍ରହଣ କରି ତାଙ୍କ ପିଲାଦିନ ଏଠାରେ କଟାଇଥିଲେ ଏବଂ ଏହି ଗ୍ରାମଟିକୁ ଏକ ଆଦର୍ଶ ଗ୍ରାମରେ ପରିଣତ କରିବାକୁ ସବୁବେଳେ ଉଦ୍ୟମ ଜାରିରଖିଛନ୍ତି । ଶୁଣିଥିଲି ଯେ ପୂର୍ବତନ ରାଜ୍ୟପାଳ ରାମେଶ୍ୱର ଠାକୁର ୨୦୦୬ ମସିହାରେ ଏହି ଗ୍ରାମ ପରିଦର୍ଶନ କରି ଏହାକୁ ଆଦର୍ଶ ଗ୍ରାମର ମାନ୍ୟତା ଦେଇଛନ୍ତି । ସ୍ୱଚକ୍ଷୁରେ ଦେଖିଲି ଏକ ଫଳକ ଯେଉଁଥିରେ ଏହି କଥା ଉଲ୍ଲେଖ ରହିଛି । ଚାଣକ୍ୟଙ୍କ ନୀତିଶ୍ଳୋକରେ ଉଲ୍ଲେଖ ରହିଛି,

"ଧନିକଃ ଶ୍ରୋତ୍ରୟୋ ରାଜା ନଦୀ ବୈଦ୍ୟସ୍ତୁ ପଞ୍ଚମଃ,
ପଞ୍ଚ ଯତ୍ର ନ ବିଦ୍ୟନ୍ତେ ତତ୍ର ବାସଂ ନ କାରୟତେ ।"

ଏହାର ଅର୍ଥ ହେଲା, ଯେଉଁ ସ୍ଥାନରେ ଧନୀ ଲୋକ, ଶ୍ରୋତିୟ ବ୍ରାହ୍ମଣ, ରାଜା, ନଦୀ ଓ ବୈଦ୍ୟ ଏହି ପାଞ୍ଚ ଜଣ ନଥାନ୍ତି, ସେଠାରେ ବାସ କରିବା ଉଚିତ୍ ନୁହେଁ । ଏହି ନିଷେଧ ନମାନି ବାସ କଲେ ବିପଦ ସୁନିଶ୍ଚିତ । ଉପରୋକ୍ତ ସବୁ ସୁବିଧା କଲରାବାଙ୍କ ଗ୍ରାମରେ ଥିବାବେଳେ ଅନ୍ୟ ବହୁ ଜନହିତକାରୀ ଯୋଜନାମାନ ଡକ୍ଟର ସାମନ୍ତଙ୍କ ଉଦ୍ୟମ ଯୋଗୁଁ ଏଠାରେ ଉପଲବ୍ଧ ହେଉଛି ।

କଲରାବାଙ୍କ ଗ୍ରାମ ନିକଟରେ ମହାନଦୀର ଶାଖା 'ଶୁକପାଇକା' ଉପନଦୀ କୁଳୁକୁଳୁ ନାଦ କରି ବହିଯାଉଛି। ଗ୍ରାମରେ ପ୍ରାୟ ଶହେ ବର୍ଷ ତଳର କାଳୀମନ୍ଦିର ରହିଥିବାରୁ ସେଠାରେ ବ୍ରାହ୍ମଣମାନେ ମଧ୍ୟ ଅନ୍ୟାନ୍ୟ ଜାତିର ଲୋକଙ୍କ ସହିତ ବାସ କରୁଛନ୍ତି। ଗ୍ରାମବାସୀଙ୍କ ସ୍ୱାସ୍ଥ୍ୟର ଯତ୍ନ ପାଇଁ ଅଚ୍ୟୁତ ସାମନ୍ତଙ୍କ ଦ୍ୱାରା ୧୦ ଶଯ୍ୟା ବିଶିଷ୍ଟ ଏକ ଡାକ୍ତରଖାନା ୨୦୧୬ ମସିହାରୁ ପ୍ରତିଷ୍ଠା କରାଯାଇଛି। ଏହି ଡାକ୍ତରଖାନାରେ ଅତ୍ୟାଧୁନିକ ଯନ୍ତ୍ରପାତି ଓ ତିନି ଜଣ ଡାକ୍ତର ସବୁବେଳେ ରହୁଥିବାରୁ ଆଖପାଖ ଅଞ୍ଚଳର ବହୁ ରୋଗୀ ଚିକିତ୍ସା ସୁବିଧା ପାଇପାରୁଛନ୍ତି। ୧୯୯୮ ମସିହାରେ ପ୍ରତିଷ୍ଠିତ ଏକ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ସ୍ଥାନୀୟ ପିଲାମାନେ ପାଠ ପଢୁଛନ୍ତି। ଡକ୍ଟର ଅଚ୍ୟୁତ ସାମନ୍ତ ନିଜ ଗ୍ରାମବାସୀ ଓ ଆଖପାଖ ଗ୍ରାମର ଲୋକଙ୍କ ଅନୁରୋଧ ରକ୍ଷା କରି ଏଠାରେ ଏକ ଇଂଲିଶ ମିଡିୟମ୍ ସ୍କୁଲ୍ ପ୍ରତିଷ୍ଠା କରିଛନ୍ତି। ଗ୍ରାମରେ ବହୁ ବର୍ଷ ହେଲା ଏକ ପୋଷ୍ଟ ଅଫିସ୍ କାର୍ଯ୍ୟ କରୁଥିଲା; କିନ୍ତୁ ମାଣପୁର ପଞ୍ଚାୟତର ଲୋକମାନେ ଏକ ଥାନାର ଅଭାବ ଅନୁଭବ କରୁଥିଲେ। ତାଙ୍କ ଉଦ୍ୟମରେ କଲରାବାଙ୍କରେ ୨୦୦୬ ମସିହାରୁ ଏକ ପୋଲିସ୍ ଫାଣ୍ଡି ପ୍ରତିଷ୍ଠା ହୋଇ ଲୋକମାନଙ୍କର ବହୁଦିନର ଅସୁବିଧା ଦୂର କରିପାରିଛି। ଏହି ଫାଣ୍ଡିଟିକୁ ଥାନାରେ ପରିଣତ କରିବାକୁ ଡକ୍ଟର ସାମନ୍ତ ନିଜର ଉଦ୍ୟମ ଜାରି ରଖିଛନ୍ତି। ଏହି ଗ୍ରାମରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍ ଆଦି ବିଭିନ୍ନ ଧର୍ମର ପ୍ରାୟ ବାର ଶହ ଲୋକ ଶାନ୍ତି ସୌହାର୍ଦ୍ଦ୍ୟର ସହିତ ବାସ କରୁଛନ୍ତି। ଗ୍ରାମରେ ନାରୀମାନେ ଏକ ନାରୀ ମଙ୍ଗଳ ସମିତି ଗଠନ କରିଛନ୍ତି, ଯାହାକୁ ଡକ୍ଟର ସାମନ୍ତଙ୍କ ସାନଭଉଣୀ ଡକ୍ଟର ଇତି ସାମନ୍ତ ସବୁବେଳେ ସହଯୋଗ ପ୍ରଦାନ କରୁଛନ୍ତି। ଏହି ଗ୍ରାମରେ କେତେଗୁଡ଼ିଏ ସ୍ୱୟଂ ସହାୟକ ଗୋଷ୍ଠୀ ଅର୍ଥ ଉପାର୍ଜନକାରୀ କାର୍ଯ୍ୟରେ ରତ ରହି ମହିଳା ସଶକ୍ତିକରଣରେ ସହାୟକ ହେଉଛନ୍ତି।

ଏହି ଗ୍ରାମର ଅଧିବାସୀମାନେ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇ ବହୁ କଷ୍ଟ ସ୍ୱୀକାର କରିଥିଲେ। ସ୍ୱର୍ଗତ କିରଣବାଳା ସାମନ୍ତ ଏହି ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରେ ଥିଲେ ଅଗ୍ରଗଣ୍ୟ। ରମାଦେବୀ, ମାଳତୀ ଚୌଧୁରୀ, ସରଳା ଦେବୀଙ୍କ ଆଦର୍ଶ କିରଣବାଳାଙ୍କୁ ଅନୁପ୍ରାଣିତ କରିଥିଲା। ଗ୍ରାମର ବହୁ ପରିବାର କୃଷି ଉପରେ ନିର୍ଭର କରନ୍ତି। ସେମାନେ ସାର, ବିହନ, କୃଷି ଯନ୍ତ୍ରପାତି ଖରିଦ କରିବାକୁ ସରକାରଙ୍କ ଦ୍ୱାରା ବ୍ଲକ୍ ମାଧ୍ୟମରେ ଦିଆଯାଉଥିବା କୃଷି ଋଣର ସୁଯୋଗ ନେଇ ନିଜ ଜମିରେ

ଅଧିକ ଶସ୍ୟ ଅମଳ କରିବାରେ ସକ୍ଷମ ହୋଇପାରିଛନ୍ତି। ଗ୍ରାମ ଚରିପଟେ ଗ୍ରାମବାସୀମାନେ ବୃକ୍ଷରୋପଣ କରି ଗାଁଟିକୁ ସବୁଜ ସୁନ୍ଦର କରିବାରେ ପ୍ରୟାସ କରୁଛନ୍ତି। ମୁଁ ବୁଲିଲାବେଳେ କେତେକ କୃଷକଙ୍କ ସହିତ ଆଲୋଚନା କଲି ଏବଂ ସମସ୍ତେ କହିଲେ ଆମକୁ ଏକାଠି କରି ଅଚ୍ୟୁତ ସାମନ୍ତ ସରକାରୀ ସାହାଯ୍ୟ ନେବାକୁ ପ୍ରବର୍ତ୍ତାଇଲେ ଓ ସେ ଜିଲ୍ଲାପାଳ ଓ ବିଡିଓମାନଙ୍କୁ ଫୋନ୍ କରି ଆମ ଗ୍ରାମକୁ କ୍ଷେତ୍ର କର୍ମଚାରୀମାନଙ୍କୁ ପଠାଇବାକୁ ଅନୁରୋଧ କରିଥିଲେ ଏବଂ ସେମାନଙ୍କ ଦିଗ୍‌ଦର୍ଶନରେ କାମ କରି ଆମେ ଉପକୃତ ହୋଇଛୁ। ଗ୍ରାମ ପୋଖରୀଗୁଡ଼ିକରେ ମାଛଚାଷ ହେଉଛି। ଏହି ଗ୍ରାମରେ କିଛି ଆଦିବାସୀ ରହିଥିବା ଜାଣି ତାଙ୍କ ବସ୍ତିକୁ ଯାଇଥିଲି। ସେମାନେ ମତ୍ସ୍ୟଚାଷ, କୁକୁଡ଼ା ଚାଷ, ଛେଳି ଚାଷ ଇତ୍ୟାଦିରେ ବ୍ୟାପୃତ ଥାଇ ସ୍ୱଚ୍ଛଳ ଅବସ୍ଥାରେ ବାସ କରୁଛନ୍ତି। ଗ୍ରାମରେ ଗୋପାଳନ କରି 'ଓମ୍‌ଫେଡ୍'କୁ ଗ୍ରାମବାସୀମାନେ ଦୁଗ୍ଧ ଯୋଗାଇ ଦେଉଛନ୍ତି ଏବଂ ତଦ୍ୱାରା ଲାଭବାନ ହେଉଛନ୍ତି।

ଶେଷ କରିବା ପୂର୍ବରୁ, କାନାରା ବ୍ୟାଙ୍କର ଯେଉଁ ଶାଖାଟି କଲରାବାଙ୍କରେ ପ୍ରତିଷ୍ଠିତ ହେଲା, ସେଠାରେ ଯୋଗ ଦେଇଥିବା ଦୁଇଜଣ ବରିଷ୍ଠ ବ୍ୟାଙ୍କ ଅଫିସର ରାଜେନ୍ଦ୍ର କୁମାର ସ୍ୱାଇଁ, ଡେପୁଟି ଜେନେରାଲ ମ୍ୟାନେଜର ଓ ଧୋବେଇ ପ୍ରଧାନ, ଆସିଷ୍ଟାଣ୍ଟ ଜେନେରାଲ ମ୍ୟାନେଜର ଗ୍ରାମବାସୀଙ୍କୁ ଯେଉଁ କେତେକ ଉପଦେଶ ଦେଇଥିଲେ, ସେଥିରୁ କିଛି ଉଲ୍ଲେଖ କରିବା ଉଚିତ୍ ମନେକରୁଛି। ଡିଜିଏମ୍ ରାଜେନ୍ଦ୍ର ବାବୁ କହିଥିଲେ ଯେ, ଗ୍ରାମାଞ୍ଚଳର ସର୍ବାଙ୍ଗୀନ ଉନ୍ନତି ତଥା ଗ୍ରାମବାସୀମାନଙ୍କୁ ଅର୍ଥନୈତିକ ସ୍ୱାବଲମ୍ବୀଶୀଳ କରିବାରେ କାନାରା ବ୍ୟାଙ୍କର ଶାଖା ସବୁମତେ ସହଯୋଗ କରିବ। କୃଷିର ଉନ୍ନତି ପାଇଁ, ପଶୁପାଳନ କରିବା ପାଇଁ, ମତ୍ସ୍ୟଚାଷ କରିବାକୁ ଗାଡ଼ିଆ ପୋଖରୀ ଖୋଳିବାକୁ ବ୍ୟାଙ୍କ ନାମମାତ୍ର ସୁଧରେ ଋଣ ଦେବ। ଛେଳି, ମେଣ୍ଢା, ମଇଁଷି, ଗାଈ, କୁକୁଡ଼ା ଓ ବତକ ପ୍ରଭୃତି ପାଳନ କରିବାକୁ ବ୍ୟାଙ୍କ ଋଣ ଦେବ। ଗାଁରେ କୁଟୀର ଶିଳ୍ପ ପ୍ରତିଷ୍ଠା କରିବାକୁ ଘରୋଇ ଉଦ୍ୟମରେ ପାଉଁରୁଟି, ବିସ୍କୁଟ, ସାବୁନ, ଦିଆସିଲି, ମହମବତୀ ପ୍ରଭୃତି ତିଆରି କରି ସେମାନଙ୍କ ଆର୍ଥିକ ଉନ୍ନତି ଘଟାଇବାକୁ ବ୍ୟାଙ୍କ କେବଳ ଋଣ ପ୍ରଦାନ କରିବ ନାହିଁ, ସେମାନଙ୍କୁ ତାଲିମ୍ ପ୍ରଦାନ କରିବାରେ ମଧ୍ୟ ସହାୟକ ହେବ। ଏଜିଏମ୍ ଧୋବେଇ ପ୍ରଧାନ ମଧ୍ୟ ଉପରୋକ୍ତ ବିଷୟବସ୍ତୁ ଉପରେ କଲରାବାଙ୍କ ଗ୍ରାମ, ମାଣପୁର ପଞ୍ଚାୟତ ଓ ରଘୁନାଥପୁର ଅଞ୍ଚଳବାସୀ ସୁଯୋଗ ନେବାକୁ ଆହ୍ୱାନ କରିଥିଲେ। ଡକ୍ଟର ଅଚ୍ୟୁତ ସାମନ୍ତ ତାଙ୍କ

ସଭାପତି ଭାଷଣରେ କହିଥିଲେ ଏହି ବ୍ୟାଙ୍କ ପ୍ରତିଷ୍ଠା ଦ୍ୱାରା ଗ୍ରାମାଞ୍ଚଳର ଗରିବ ଲୋକ ସେମାନଙ୍କ ସ୍ୱପ୍ନକୁ ସାକାର କରିବାରେ ସକ୍ଷମ ହେବେ। ବ୍ୟାଙ୍କ ହେଉଛି ଜନତାର ସୁଖଦୁଃଖର ବନ୍ଧୁ, ହିତାକାଂକ୍ଷୀ ଓ ମାର୍ଗଦର୍ଶକ। ତେଣୁ ବ୍ୟାଙ୍କରୁ ଋଣ ଗ୍ରହଣ କରି ଜନସାଧାରଣ ଯଥା ସମୟରେ ଚୁକ୍ତି ଖିଲାପ ନ କରି ବ୍ୟାଙ୍କ ଋଣ ପରିଶୋଧ କରିବା ଆବଶ୍ୟକ। ଯେଉଁଥି ପାଇଁ ସେମାନେ ଋଣ ଗ୍ରହଣ କରନ୍ତି, ସେ ଋଣକୁ ସେହି କାମରେ ବିନିଯୋଗ ନ କରି ଦାୟିତ୍ୱହୀନ ଭାବରେ ଅନ୍ୟଦିଗରେ ଖର୍ଚ୍ଚ କରିଦେଲେ ବ୍ୟାଙ୍କ ସହାୟତା ଅର୍ଥହୀନ ହୋଇପଡ଼େ। ତେଣୁ ଋଣଗ୍ରହୀତାମାନେ ନିଜ ନିଜର ଗୁରୁଦାୟିତ୍ୱ ବିଷୟରେ ସଚେତନ ରହିବା ଆବଶ୍ୟକ। ଗ୍ରାମାଞ୍ଚଳର ଛାତ୍ରମାନଙ୍କ ଭିତରେ ବ୍ୟାଙ୍କର କର୍ମଚାରୀମାନେ ସଞ୍ଚୟଶୀଳ ମନୋଭାବ ସୃଷ୍ଟି କରିବାକୁ ସେ ଅନୁରୋଧ ଜଣାଇଥିଲେ।

କାନାରା ବ୍ୟାଙ୍କ ଉନ୍ମୋଚିତ ଉତ୍ସବରେ ଯୋଗଦେବା ଅବସରରେ କଲରାବାଙ୍କ ଗ୍ରାମଟି ଦେଖି ସେ ଗ୍ରାମରେ ଜନ୍ମଲାଭ କରି ନିଜ ଶୈଶବ ଅତିବାହିତ କରିଥିବା ଡକ୍ଟର ସାମନ୍ତଙ୍କ ପ୍ରଚେଷ୍ଟାରେ ଏହି ଗ୍ରାମ ଯେ ଏକ ଆଦର୍ଶ ଗ୍ରାମରେ ପରିଣତ ହୋଇଛି ସେ ବିଷୟରେ ମୁଁ ନିଃସନ୍ଦେହ ହୋଇଗଲି। ଓଡ଼ିଶାର ପ୍ରତ୍ୟେକ ଗ୍ରାମରେ ଜନ୍ମିତ ଶିକ୍ଷିତ ବ୍ୟକ୍ତିମାନେ ଯଦି ନିଜ ନିଜ ଗ୍ରାମବାସୀଙ୍କ ଉନ୍ନତି ପାଇଁ ମନପ୍ରାଣ ଦେଇ କାର୍ଯ୍ୟ କରନ୍ତେ, ତେବେ ଓଡ଼ିଶାର ଲୋକମାନଙ୍କର ଭାଗ୍ୟରେ ପରିବର୍ତ୍ତନ ହୁଅନ୍ତା ଏବଂ ଓଡ଼ିଶାକୁ ଦରିଦ୍ରତମ ରାଜ୍ୟ ବୋଲି କେହି ଚିତ୍ରଣ କରନ୍ତେ ନାହିଁ। କଲରାବାଙ୍କ ଗ୍ରାମଟିକୁ ବୁଲାଇ ଦେଖାଇଥିବାରୁ ଖେଣ୍ଟାଳ ଗ୍ରାମର ଅଧିବାସୀ ତଥା କିଟ୍‌ରେ କର୍ମରତ ରବୀନ୍ଦ୍ର ନାଥ ବିଶ୍ୱାଳଙ୍କ ପାଖରେ ମୁଁ କୃତଜ୍ଞ।

*ଓଡ଼ିଶା ଭାସ୍କର - ୧୦.୩.୨୦୧୪*

# ନାରୀର ସଂଘର୍ଷମୟ ଜୀବନ କାହାଣୀ 'କ୍ରାନ୍ତିଧାରା'

ଓଡ଼ିଶାର ଜଣେ ସୁପରିଚିତ ଲେଖିକା ଓ କାଦମ୍ବିନୀ ପତ୍ରିକାର ସଂପାଦିକା ଡକ୍ଟର ଇତି ସାମନ୍ତଙ୍କ ଉପନ୍ୟାସ 'ଝଡ଼ ପରର ସୂର୍ଯ୍ୟ'ର କାହାଣୀ ଆଧାରରେ ପ୍ରସ୍ତୁତ ହୋଇଛି ଏକ ନୂତନ ସ୍ୱାଦର କଳାତ୍ମକ ଚଳଚ୍ଚିତ୍ର 'କ୍ରାନ୍ତିଧାରା'। ବିଶ୍ୱ ଦରବାରରେ ସୁପରିଚିତ ଶିକ୍ଷାବିତ୍ ଓ ସମାଜସେବୀ ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ଦ୍ୱାରା ପ୍ରତିଷ୍ଠିତ କାଦମ୍ବିନୀ ମିଡିଆ ବ୍ୟାନରରେ ଏହି ଚଳଚ୍ଚିତ୍ରଟି ପ୍ରସ୍ତୁତ ହୋଇଛି। ସମାଜରେ ବିଭିନ୍ନ କ୍ଷେତ୍ରରେ ଉନ୍ନତି ଆଣିବା ଓ ସମସ୍ତଙ୍କ ଜୀବନ କିଭଳି ଆନନ୍ଦପ୍ରଦ ହେବ ସେହି ଚିନ୍ତାଧାରାରେ ନିମଗ୍ନ ଡକ୍ଟର ଅଚ୍ୟୁତ ସାମନ୍ତଙ୍କ ପ୍ରାୟୋଜିତ ଏହି ଚଳଚ୍ଚିତ୍ର ଶିକ୍ଷଣୀୟ ଓ ହୃଦୟସ୍ପର୍ଶୀ ହୋଇଛି। ମହାତ୍ମା ଗାନ୍ଧିଙ୍କ ଚିନ୍ତାଧାରା ଥିଲା ଗ୍ରାମପଞ୍ଚାୟତଗୁଡ଼ିକ ନିଜ ଅଞ୍ଚଳରେ ଶାସନ ସୁରୁଖୁରୂପେ ପରିଚାଳନା କଲେ ଲୋକଙ୍କର ଦୁଃଖଦୁର୍ଦ୍ଦଶାର ନିଶ୍ଚିତ ପରିସମାପ୍ତି ଘଟିବ, କିନ୍ତୁ ଆଜିର ପଞ୍ଚାୟତିରାଜ ବ୍ୟବସ୍ଥାରେ ତାହା ସମ୍ଭବ ହେଉନାହିଁ। ଏହି ରାଜନୀତିକ ପୃଷ୍ଠଭୂମିରେ ନିର୍ମିତ ହୋଇଛି ଓଡ଼ିଶାର ଜଣେ ଖ୍ୟାତିସମ୍ପନ୍ନ ଚଳଚ୍ଚିତ୍ର ନିର୍ଦ୍ଦେଶକ ହିମାଂଶୁ ଶେଖର ଖଟୁଆଙ୍କ ଦ୍ୱାରା ନିର୍ଦ୍ଦେଶିତ 'କ୍ରାନ୍ତିଧାରା'। ଜଣେ ଶିକ୍ଷିତା ନାରୀ ସରପଞ୍ଚ ଭାବେ ନିର୍ବାଚିତ ହୋଇଥିଲେ ମଧ ତାଙ୍କର ସମସ୍ତ କ୍ଷମତା ଉପରେ ତାଙ୍କ ସ୍ୱାମୀ ଜୋରଜବରଦସ୍ତ ଅଧିକାର ସାବ୍ୟସ୍ତ କରି ନିଜେ ସମସ୍ତ କ୍ଷମତା ହଡ଼ପ କରୁଥିବା କରୁଣ କାହାଣୀ ଏହି ଚଳଚ୍ଚିତ୍ରରେ ପ୍ରଦର୍ଶିତ ହୋଇଛି।

ଚଳିତବର୍ଷ ୨୪ ଏପ୍ରିଲରେ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ହୋଇଥିବା ଜାତୀୟ ପଞ୍ଚାୟତିରାଜ ଦିବସ ଅବସରରେ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ମହିଳା ସରପଞ୍ଚମାନଙ୍କ ସ୍ୱାମୀମାନେ ସେମାନଙ୍କ ପତ୍ନୀମାନଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରୁଥିବା ଉପରେ ଚିନ୍ତା ବ୍ୟକ୍ତ କରି 'ପତି ସରପଞ୍ଚ' କାର୍ଯ୍ୟଧାରାକୁ ନିନ୍ଦନୀୟ ବୋଲି ମତ ପ୍ରକାଶ କରିଥିଲେ। ଯଦିଓ ଆଇନ୍ ମହିଳାମାନଙ୍କୁ କ୍ଷମତା ପ୍ରଦାନ କରିଛି, ସେମାନେ ତାହା ନିଜେ ବ୍ୟବହାର କରିବାକୁ ସମସ୍ତ ସୁବିଧା ସୁଯୋଗ ସବୁ କ୍ଷେତ୍ରରେ ପାଇପାରୁ ନାହାଁନ୍ତି।

ସୁଖର କଥା ଯେ ଦେଶର ପ୍ରଧାନମନ୍ତ୍ରୀ ସରପଞ୍ଚ ପତି ବ୍ୟବସ୍ଥାକୁ ବିଲୋପ କରିବା ପାଇଁ ଘୋଷଣା କରିବାର ବହୁ ପୂର୍ବରୁ ଡକ୍ଟର ଇତି ସାମନ୍ତ ତାଙ୍କର ଉପନ୍ୟାସ 'ଝଡ଼ ପରର ସୂର୍ଯ୍ୟ'ରେ ଏହି ସରପଞ୍ଚ ପତି ବ୍ୟବହାର ବିରୁଦ୍ଧରେ ଲେଖନୀ ଚାଳନା କରିଥିଲେ।

'କ୍ରାନ୍ତିଧାରା'ର କାହାଣୀରେ ପ୍ରତିଜ୍ଞା (ଗାର୍ଗୀ) ନାମ୍ନୀ ଜଣେ ଶିକ୍ଷିତା ମହିଳା ତାଙ୍କ ସ୍ୱାମୀ ଅଭୟ, ଶାଶୂ, ଶ୍ୱଶୁର, ଗୋଟିଏ ପୁଅ ଓ ଝିଅଙ୍କ ସହିତ ଏକ ସରଳ ଜୀବନଯାପନ କରୁଥିଲେ। ସ୍ୱାମୀ ଅଭୟ (ସମରେଶ) ସ୍ଥାନୀୟ ସରପଞ୍ଚ ରୂପେ କାର୍ଯ୍ୟରତ ଥିଲେ, କିନ୍ତୁ ସରକାର ସେ କାର୍ଯ୍ୟ କରୁଥିବା ସରପଞ୍ଚ ଆସନଟିକୁ ମହିଳାମାନଙ୍କ ପାଇଁ ସଂରକ୍ଷିତ କରିବା ପରେ ନିଜ ସ୍ତ୍ରୀ ପ୍ରତିଜ୍ଞାର ଅନିଚ୍ଛା ସତ୍ତ୍ୱେ ତାଙ୍କୁ ସରପଞ୍ଚ ଭାବେ ଠିଆ କରାଇଥିଲେ ଏବଂ ପ୍ରତିଜ୍ଞାର ଗ୍ରାମରେ ଥିବା ସୁଖ୍ୟାତି ଓ ବ୍ୟବହାର ଯୋଗୁଁ ସେ ନିର୍ବାଚିତ ହୋଇଥିଲେ। ସ୍ୱାମୀ ଅଭୟ ରାଜନୀତିରେ ପ୍ରବେଶ କଲାପରେ ସରପଞ୍ଚ ହୋଇ ଅନୀତି ଓ ଦୁର୍ନୀତି ଉପାୟରେ ଅର୍ଥ ଉପାର୍ଜନ କରିବା ସହ ପଞ୍ଚାୟତର ସାଧାରଣ ଲୋକଙ୍କ ସ୍ୱାର୍ଥକୁ ଯେଭଳି ଅଣଦେଖା କରିଥିଲେ, ତାହା ପ୍ରତିଜ୍ଞାଙ୍କ ମନରେ ଆଘାତ ଦେଇଥିଲା। ପଞ୍ଚାୟତର ପୁଞ୍ଜି କିଭଳି ଭାବରେ ପୂର୍ବରୁ ଆତ୍ମସାତ ହେଉଥିଲା ଓ କିଭଳି ତାଙ୍କ ସ୍ୱାମୀ ଅଭୟ ପକ୍ଷପାତ ନୀତି ଅବଲମ୍ବନ କରୁଥିଲେ, ତାହା ମଧ୍ୟ ତାଙ୍କ ନଜରକୁ ଆସିଥିଲା।

ରଙ୍ଗବୋଉ (ବିଦ୍ୟୁତପ୍ରଭା) ନାମକ ଏକ ଗରିବ ବିଧବା ମହିଳାର ଦୟନୀୟ ଅବସ୍ଥା ପ୍ରତିଜ୍ଞାକୁ ମର୍ମାହତ କରିଥିଲା। ତା'ର ବିଧବା ଭତ୍ତା ଓ ଇନ୍ଦିରା ଆବାସର ଅର୍ଥ ଉଭୟ ଆତ୍ମସାତ କରିଥିବା ପ୍ରତିଜ୍ଞା ନିଶ୍ଚିତ ହୋଇଥିଲେ ଏବଂ ରଙ୍ଗବୋଉ ରହୁଥିବା ଚାଳିଆର କାନ୍ଥ ପଡ଼ି ତା'ର ମୃତ୍ୟୁ ହେବା ପ୍ରତିଜ୍ଞାକୁ ଶକ୍ତ ଧକ୍କା ଦେଇଥିଲା। ସ୍ୱାମୀଙ୍କର ସବୁ ପ୍ରତିରୋଧ ସତ୍ତ୍ୱେ ପ୍ରତିଜ୍ଞା କେତେକ ମହିଳା ସମର୍ଥକଙ୍କ ସହଯୋଗରେ ନ୍ୟାୟୋଚିତ ଭାବରେ କାର୍ଯ୍ୟ କରିବାରେ ସମର୍ଥ ହୋଇଥିଲେ। ଗୃହର ସମସ୍ତ କାର୍ଯ୍ୟ ଯଥା, ଶାଶୂ-ଶ୍ୱଶୁର ସେବା, ପିଲାଙ୍କ ଯତ୍ନ ସୁଚାରୁରୂପେ କରିବା ସତ୍ତ୍ୱେ ସ୍ୱାମୀ ଅଭୟଙ୍କ ଅକଥନୀୟ ଅତ୍ୟାଚାରର ଶିକାର ହେଉଥିଲେ। ପ୍ରତିଜ୍ଞାର ଶାଶୂ, ଶ୍ୱଶୁର ବୋହୂର ସେବାରେ ଅତ୍ୟନ୍ତ ସନ୍ତୁଷ୍ଟ ଥିଲେ ମଧ୍ୟ ଅଭୟର ଅତ୍ୟାଚାରକୁ ପ୍ରତିରୋଧ କରିବାକୁ ଅସମର୍ଥ ଥିଲେ। ଦୁଇଟି ବାଳୁତ ପିଲା ମା'ର ଆଦର ଯତ୍ନରେ ପାଳିତ ହେଉଥିଲେ ଏବଂ ବାପାର ଏଭଳି ଅମାନବୀୟ ବ୍ୟବହାରର ମୃଦୁ ପ୍ରତିବାଦ କରୁଥିଲେ।

ବାବୁ ସ୍ୱାଇଁ (ଦେବାଶିଷ) ନାମକ ଜଣେ ମଦ ଦୋକାନୀ ଓ କଣ୍ଟ୍ରାକ୍ଟର ଅଭୟକୁ ବିଭିନ୍ନ ସମୟରେ ନିଜର ସୁବିଧା ପାଇଁ ଉତ୍କୋଚ ଦେଇ ହାତମୁଠାରେ ରଖିଥିଲା। ବାବୁ ସ୍ୱାଇଁର ମଦ ଦୋକାନଟି ଗାଁ ମଝିରେ ଅବସ୍ଥିତ ଥିବାରୁ ସେଠାରେ ସାଧାରଣ ଲୋକେ ମଦ୍ୟପାନ କରି ନିଜ ଘରେ ସ୍ତ୍ରୀମାନଙ୍କ ପ୍ରତି ଅତ୍ୟାଚାର କରୁଥିଲେ ଓ ଅସାମାଜିକ ଯୁବକମାନେ ଝିଅବୋହୂଙ୍କୁ ଅଶ୍ଳୀଳ ଇଙ୍ଗିତମାନ ଦେବା ଏକ ନିତିଦିନିଆ ଘଟଣାରେ ପରିଣତ ହୋଇଥିଲା। ମଦ ଦୋକାନଟିକୁ ଗ୍ରାମ ବାହାରକୁ ଉଠାଇଦେବାର ପ୍ରସ୍ତାବକୁ ବାବୁ ସ୍ୱାଇଁ କର୍ଣ୍ଣପାତ କରିନଥିଲା। ସେ ଗ୍ରାମର ଗୋଚର ଜମିକୁ ଅଧିକାର କରି ସେଠାରେ ଏକ ସ୍ପଞ୍ଜ ଆଇରନ୍ କାରଖାନା କରିବାର ପ୍ରସ୍ତାବ ବହୁଦିନରୁ ଅଭୟ ପାଖରେ ରଖୁଥିଲା ଏବଂ ସେଥିପାଇଁ ଅଭୟକୁ ପ୍ରଚୁର ଉତ୍କୋଚ ମଧ ଦେଇଥିଲା । ଗ୍ରାମସଭାରେ ଗୋଚର ଜମିକୁ ବାବୁ ସ୍ୱାଇଁକୁ ଦେବା ସପକ୍ଷରେ ପ୍ରସ୍ତାବ ପାସ୍ କରାଇ ଦେବାକୁ ପ୍ରତିଜ୍ଞା ଉପରେ ଅଭୟ ଚାପ ପକାଇଥିଲା ଓ ତାକୁ ଧମକ୍ ଦେଇ ପରେ ମାରଧର ମଧ କରିଥିଲା ଏବଂ ଯେଉଁଦିନ ଗ୍ରାମସଭାର ବୈଠିକ ହୋଇଥିଲା ସେଦିନ ପ୍ରତିଜ୍ଞାକୁ ଚେତାବନୀ ଦେଇଥିଲା ଯେ ଯଦି ଏ ପ୍ରସ୍ତାବକୁ ସେ ସମର୍ଥନ କରି ପାସ୍ କରାଇ ନ ଦିଏ ତେବେ ସେ ଘରକୁ ଫେରିପାରିବ ନାହିଁ। ଗ୍ରାମସଭାରେ ବିଡିଓଙ୍କ ଉପସ୍ଥିତିରେ ବାବୁ ସ୍ୱାଇଁକୁ ଗୋଚର ଜମି ହସ୍ତାନ୍ତର ପ୍ରସ୍ତାବ ବିଷୟରେ ଆଲୋଚିତ ହୋଇଥିଲା ଏବଂ ସପକ୍ଷ ଓ ବିପକ୍ଷରେ ୧୨ଟି ଲେଖାଏଁ ଭୋଟ ପଡ଼ିଥିଲା। ପ୍ରତିଜ୍ଞା ନିର୍ଣ୍ଣାୟକ ଭୋଟଟି ଗୋଚର ଜମି ହସ୍ତାନ୍ତର ନ କରିବା ସପକ୍ଷରେ ଦେବାରୁ ବାବୁ ସ୍ୱାଇଁର ସମସ୍ତ ଯୋଜନା ଧୂଳିସାତ୍ ହୋଇଥିଲା। କିନ୍ତୁ ଏ ଖବର ବାବୁ ସ୍ୱାଇଁ ଓ ଅଭୟ ପାଖରେ ପହଞ୍ଚିବା ପରେ ସେମାନେ ଆସି ପଞ୍ଚାୟତ ଅଫିସକୁ ପ୍ରତିଜ୍ଞାର ଉପସ୍ଥିତିରେ କିରାସିନି ଢାଳି ନିଆଁ ଲଗାଇ ଜାଳି ଦେଇଥିଲେ ଏବଂ ଦୁର୍ଭାଗ୍ୟବଶତଃ ସେହି ଘରେ ଅଭୟର ମୃତ୍ୟୁ ଘଟିଲା ଓ ପ୍ରତିଜ୍ଞା ବଞ୍ଚିଗଲା।

ଏକ ପୁରୁଷପ୍ରଧାନ ସମାଜରେ ଜଣେ ନାରୀର ଦୃଢ଼ ଇଚ୍ଛାଶକ୍ତି କିଭଳି ପୁରୁଷତ୍ୱ ଜାହିରକୁ ପ୍ରତିହତ କରିବାକୁ ସମର୍ଥ ହୁଏ ଓ ଏହାଦ୍ୱାରା ସମାଜର ଅଶେଷ କଲ୍ୟାଣ ସାଧିତ ହୁଏ, ତାହା ନିଖୁଣ ଭାବରେ ଚିତ୍ରିତ ହୋଇଛି 'କ୍ରାନ୍ତିଧାରା' ଚଳଚ୍ଚିତ୍ରରେ। ଜଣେ ସୁଗୃହିଣୀ ସାମାଜିକ କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ଅନିଚ୍ଛା ସତ୍ତ୍ୱେ ରାଜନୀତିରେ ଯୋଗଦେଇ ନିଜ ସ୍ୱାମୀଙ୍କ ଦ୍ୱାରା ନିର୍ଯାତିତ ହେଲେ ମଧ ନିଜ ଦାୟିତ୍ୱକୁ ହୃଦୟଙ୍ଗମ କରି କିଭଳି ସଫଳତା ହାସଲ କରେ, ତାହା ପ୍ରଦର୍ଶିତ ହୋଇଛି କଳାତ୍ମକ ଚଳଚ୍ଚିତ୍ର

'କ୍ରାନ୍ତିଧାରା'ରେ। ଏହି ଚଳଚ୍ଚିତ୍ରଟି ସତ୍ୟଜିତ ରାୟଙ୍କ ଦ୍ୱାରା ନିର୍ଦ୍ଦେଶିତ ଚଳଚ୍ଚିତ୍ର 'ଚାରୁଲତା', 'ତିନି କନ୍ୟା', 'ମହାନଗର' ଓ 'ପଥେର ପାଞ୍ଚାଳୀ' ଭଳି ବଙ୍ଗଳା ସିନେମା ସହିତ ତୁଳନୀୟ। ହିନ୍ଦି ସିନେମା 'ଲଜ୍ଜା'ରେ ଯେପରି ଏକ ନାରୀ ବହୁ ପ୍ରତିକୂଳ ପରିସ୍ଥିତିର ସାମ୍ନା କରି ନିଜର ସ୍ଥିତି ଜାହିର କରିବାରେ ସକ୍ଷମ ହୋଇଛି, କ୍ରାନ୍ତିଧାରାର ନାୟିକା ପ୍ରତିଜ୍ଞା ସେହିପରି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ନିଜର ସତ୍ତାକୁ ଜାହିର କରିପାରିଛି। କ୍ରାନ୍ତିଧାରାର ସଂଳାପ ଲେଖିଛନ୍ତି ଓ ନିର୍ଦ୍ଦେଶନା ଦେଇଛନ୍ତି ହିମାଂଶୁ ଶେଖର ଖଟୁଆ। ବିମଳ ରାୟ ତାଙ୍କ ନିର୍ଦ୍ଦେଶିତ ହିନ୍ଦି ଚଳଚ୍ଚିତ୍ର 'ବନ୍ଦିନୀ' ଓ 'ବିରାଜ ବୋହୂ'ରେ ଯେଉଁଳି ନାରୀ ଚରିତ୍ରକୁ ସୁନ୍ଦର ଭାବରେ ଫୁଟାଇ ପାରିଥିଲେ, ସେହିଭଳି ହିମାଂଶୁ ଖଟୁଆ 'କ୍ରାନ୍ତିଧାରା'ର ତିନୋଟି ନାରୀ ଚରିତ୍ର ଯଥା, ପ୍ରତିଜ୍ଞା ଭୂମିକାରେ ଅଭିନୟ କରିଥିବା ଗାର୍ଗୀ ମହାନ୍ତି, ରଂଗବୋଉ ଭୂମିକାରେ ଅଭିନୟ କରିଥିବା ବିଦ୍ୟୁତପ୍ରଭା ପଟ୍ଟନାୟକ ଓ ଲୀନା ଭୂମିକାରେ ଅଭିନୟ କରିଥିବା କୁନି ପଣ୍ଡାଙ୍କ ଚରିତ୍ରକୁ ନିଖୁଣ ଭାବେ ଫୁଟାଇବାରେ ସମର୍ଥ ହୋଇଛନ୍ତି।

John W Hood ତାଙ୍କ ରଚିତ 'The Essential Mystery' ପୁସ୍ତକରେ ଭାରତର ପ୍ରଖ୍ୟାତ ୧୭ ଜଣ କଳାଚିତ୍ର ନିର୍ମାତାଙ୍କ ନାମ ଉଲ୍ଲେଖ କରିଛନ୍ତି। ସେମାନଙ୍କ ଭିତରେ ଓଡ଼ିଶାର ଦୁଇଜଣ ଚଳଚ୍ଚିତ୍ର ନିର୍ମାତା ମନମୋହନ ମହାପାତ୍ର ଓ ନୀରଦ ମହାପାତ୍ରଙ୍କ ନାଁ ଉଲ୍ଲେଖ ଅଛି। ନୀରଦ ମହାପାତ୍ର ଗୋଟିଏ ଚଳଚ୍ଚିତ୍ର 'ମାୟାମିରିଗ' ନିର୍ମାଣ କରି ଜାତୀୟ ସ୍ତରରେ 'ରଜତ କମଳ' ପୁରସ୍କାର ଓ ମନମୋହନ ମହାପାତ୍ରଙ୍କ ୧୧ଟି କଳାତ୍ମକ ଚଳଚ୍ଚିତ୍ର ମଧ୍ୟରୁ ୯ଟି ଚଳଚ୍ଚିତ୍ର 'ରଜତ କମଳ' ପୁରସ୍କାର ଲାଭ କରିଥିଲା। ଏହି 'କ୍ରାନ୍ତିଧାରା' ଚଳଚ୍ଚିତ୍ର ଶକୁନ୍ତଳା ରାୟଙ୍କ ଦ୍ୱାରା ପ୍ରାୟୋଜିତ ଓ ମନମୋହନ ମହାପାତ୍ରଙ୍କ ନିର୍ଦ୍ଦେଶିତ 'ମୁହୂର୍ତ୍ତ' ଚଳଚ୍ଚିତ୍ର ସହିତ ତୁଳନୀୟ। ଫ୍ରାନ୍ସର ନବ୍ୟ ସିନେମା ତରଙ୍ଗର ଧାରାରେ ନାରୀର ମାନସିକତାକୁ ନେଇ ମନମୋହନ ମହାପାତ୍ରଙ୍କ ନିର୍ଦ୍ଦେଶିତ 'ଶୀତରାତି' ଚଳଚ୍ଚିତ୍ର ପରି 'କ୍ରାନ୍ତିଧାରା' ଚଳଚ୍ଚିତ୍ରଟି ପରିସ୍ଫୁଟିତ।

ସାଂପ୍ରତିକ ସାମାଜିକ ପୃଷ୍ଠଭୂମିରେ ଜଣେ ନାରୀର ସଂଘର୍ଷମୟ ଜୀବନକୁ ନେଇ ଗଢ଼ିଉଠିଛି ଏହି ଚଳଚ୍ଚିତ୍ର। ନାରୀର ସମସ୍ତ ଯୋଗ୍ୟତା ଥିଲେ ମଧ୍ୟ ଏକ ପୁରୁଷପ୍ରଧାନ ସମାଜରେ ନାରୀ ପ୍ରତି ପୁରୁଣାକାଳରୁ ଚଳିଆସିଥିବା ରକ୍ଷଣଶୀଳ ଓ ହେୟ ମନୋଭାବ ଏବେ ବି ଦୂର ହୋଇପାରିନାହିଁ। 'କ୍ରାନ୍ତିଧାରା'ର କାହାଣୀ ସାମାଜିକ

ପୃଷ୍ଠଭୂମି ଭିତ୍ତିରେ ବେଶ୍ ବଳିଷ୍ଠ ହୋଇଥିଲାବେଳେ ଏହାର ସଂଳାପ ବେଶ୍ ମନଛୁଆଁ ହୋଇପାରିଛି । ଜୁନ୍ ୧୪ ତାରିଖରେ କାଦମ୍ବିନୀ ମିଡିଆ ନିବେଦିତ 'କ୍ରାନ୍ତିଧାରା'ର ପ୍ରିମିୟର ଶୋ ଭୁବନେଶ୍ୱର କିଟ୍ ପରିସରରେ ପ୍ରଦର୍ଶିତ ହେବା ପୂର୍ବରୁ ଏହା ବେଙ୍ଗାଲୁରୁ ଓ ଚେନ୍ନାଇଠାରେ ପ୍ରଦର୍ଶିତ ହୋଇ ଉଚ୍ଚ ପ୍ରଶଂସିତ ହୋଇଥିଲା ଏବଂ କାନ୍ସ ଫିଲ୍ମ ଫେଷ୍ଟିଭାଲରେ ମଧ୍ୟ ତୃତୀୟ ଓଡ଼ିଆ ଚଳଚ୍ଚିତ୍ର ଭାବେ ପ୍ରଦର୍ଶିତ ହେବାର ଗୌରବ ଅର୍ଜନ କରିଥିଲା । ଏହି ଚଳଚ୍ଚିତ୍ରରେ କୌଣସି ନୃତ୍ୟ ଓ ସଂଗୀତ ପରିବେଷଣ ହୋଇନଥିଲେ ମଧ୍ୟ ଏହା ଦର୍ଶକମାନଙ୍କୁ ୧ ଘଣ୍ଟା ୪୫ ମିନିଟ୍ କାଳ ବାନ୍ଧି ରଖିଥିଲା ।

*ସମୟ - ୩୦.୬.୨୦୧୫*

# ଦୁର୍ନୀତିମୁକ୍ତ ଭାରତ ଏକ ଦିବାସ୍ୱପ୍ନ !

ୟୁପିଏ ସରକାର ଅମଳରେ ହୋଇଥିବା ମହାଦୁର୍ନୀତି ୨ଜି, ଆଦର୍ଶ ହାଉସିଂ, ଗୋଖାଦ୍ୟ, ପିଡିଏସ୍, କୋଇଲା, ଖଣି ପ୍ରଭୃତି ଦୁର୍ନୀତିଗୁଡ଼ିକୁ ସମଗ୍ର ଦେଶବାସୀ ଧୀରେ ଧୀରେ ପାଶୋରି ଯାଉଥିବା ବେଳେ ପୁନର୍ବାର ବ୍ୟାପମ୍, ଲଳିତଗେଟ୍, ଆଇପିଏଲ୍ ଓ ସର୍ବଭାରତୀୟ ଡେଣ୍ଟାଲ ଓ ମେଡିକାଲ ଆଡ଼ମିଶନ ଟେଷ୍ଟ ପ୍ରଭୃତିରେ ଘଟିଥିବା ଦୁର୍ନୀତିଗୁଡ଼ିକ କେନ୍ଦ୍ର ସରକାର ରୋକିବାରେ ଯେ ବିଫଳ ହୋଇଛନ୍ତି ତାହା ଦେଶବାସୀଙ୍କୁ ମର୍ମାହତ କରିଛି। ଏତଦ୍‌ବ୍ୟତୀତ ବିଜେପି ଶାସିତ ୨ଟି ରାଜ୍ୟ ମଧ୍ୟପ୍ରଦେଶ ଓ ମହାରାଷ୍ଟ୍ର ସରକାର ନେଇଥିବା ନିଷ୍ପତ୍ତି 'ଅପରାଧ ଘଟିଥିବା ସଂପର୍କୀୟ ଏଫ୍.ଆଇ.ଆର୍. ରାଜ୍ୟ ସରକାର କିମ୍ବା ଆଡ଼ଭୋକେଟ ଜେନେରାଲଙ୍କର ଅନୁମତି ବିନା ପୁଲିସ୍ ଦାଏର କରିପାରିବ ନାହିଁ' ଏହା କ୍ଷମତାରେ ଥିବା ରାଜନୈତିକ ବ୍ୟକ୍ତିମାନଙ୍କର ନୈତିକ ଅଧୋପତନ ଓ ପଦବୀର ଦୁରୁପଯୋଗକୁ ପଦାରେ ପକାଇଦେଇଛି। ୧୨ ଅଗଷ୍ଟ ୨୦୧୪ରେ ଲେହଠାରେ ନିମୁ-ବାଜଗୋ ହାଇଡ୍ରୋ-ଇଲେକ୍ଟ୍ରିକ୍ ପ୍ରୋଜେକ୍ଟ ଓ କାରଗିଲ, ଶ୍ରୀନଗର ଟ୍ରାନ୍ସମିସନ ସିଷ୍ଟମ୍‌କୁ ଉଦ୍‌ଘାଟନ କରି ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି କହିଥିଲେ ଯେ ଦୁର୍ନୀତି ଦେଶକୁ ଧ୍ୱଂସ କରୁଛି ଏବଂ ତାଙ୍କ ସରକାର ସଚ୍ଚୋଟ ଅଫିସର ଓ ଦୁର୍ନୀତି ବିରୋଧୀ ସଂଗଠନଗୁଡ଼ିକ ସଙ୍ଗରେ ମିଳିତ ହୋଇ ଦୁର୍ନୀତି ବିରୁଦ୍ଧରେ ସଂଗ୍ରାମ କରିବ। କିନ୍ତୁ ଏ ମହାସଂଗ୍ରାମ କେବେ ଆରମ୍ଭ ହେବ ଦେଶବାସୀ ଦେଖିବାକୁ ଚାତକଭଳି ଅନେଇ ବସିଛନ୍ତି।

୨୦୧୦ ମସିହାରେ ଭାରତର ଚିଫ୍ ଭିଜିଲାନ୍ସ କମିଶନର ଥିବା ପ୍ରତ୍ୟୁଷ ସିହ୍ନା ପ୍ରକାଶ କରିଥିଲେ ଯେ ପ୍ରତି ତିନିଜଣ ଭାରତୀୟଙ୍କ ଭିତରେ ଜଣେ ଦୁର୍ନୀତିଗ୍ରସ୍ତ। ସେ ଟ୍ରାନ୍ସପାରେନ୍ସି ଇଣ୍ଟରନ୍ୟାସନାଲ ଦ୍ୱାରା ପ୍ରକାଶିତ ତଥ୍ୟକୁ ଉଦ୍ଧାର କରି ଦର୍ଶାଇଥିଲେ ଯେ ପୃଥିବୀର ୧୮୦ଟି ଦେଶ ମଧ୍ୟରୁ ଭାରତ ଅନ୍ୟତମ ଦୁର୍ନୀତିଗ୍ରସ୍ତ ରାଷ୍ଟ୍ର ରୂପେ ୮୪ତମ ସ୍ଥାନରେ ରହିଛି। ଭାରତ ମୋଟ ୧୦ ଅଙ୍କ ମଧ୍ୟରୁ ୩.୪ ପାଇଥିବାସ୍ଥଳେ ନିଉଜିଲାଣ୍ଡ ସବୁଠାରୁ ଦୁର୍ନୀତିମୁକ୍ତ ରାଷ୍ଟ୍ରରୂପେ ବିବେଚିତ ହୋଇ ୯.୪ ଅଙ୍କ ହାସଲ କରିଛି। ସୋମାଲିଆ ୧.୧ ଅଙ୍କ ପାଇ ଚରମ ଦୁର୍ନୀତିଗ୍ରସ୍ତ ଦେଶଭାବେ ବିବେଚିତ

ହୋଇଛି । କିନ୍ତୁ ଡିସେମ୍ବର ୨୦୧୨ରେ ଟ୍ରାନ୍ସପାରେନ୍ସି ଇଣ୍ଟରନ୍ୟାସନାଲର ପ୍ରକାଶିତ ତଥ୍ୟ ଅନୁଯାୟୀ ଭାରତ ୧୭୬ଟି ଦେଶ ମଧ୍ୟରୁ ଦୁର୍ନୀତିରେ ୯୪ତମ ସ୍ଥାନରେ ରହିଛି । ପୂର୍ବତନ ଚିଫ୍ ଭିଜିଲାନ୍ସ କମିଶନର ଏନ୍. ଭିଟ୍ଟଲ ମତ ଦେଇଥିଲେ ଯେ ଭାରତରେ ପ୍ରଶାସକମାନେ ରାଜନୈତିକ ଲୋକଙ୍କଠାରୁ ବେଶୀ ଦୁର୍ନୀତିଗ୍ରସ୍ତ । ୧୯ ଅକ୍ଟୋବର ୨୦୧୨ରେ ଭାରତର ପ୍ରେସ୍ କାଉନସିଲ୍‌ର ଚେୟାରମ୍ୟାନ ଥିବା ଜଷ୍ଟିସ୍ ମାର୍କଣ୍ଡେୟ କାଟଜୁ କହିଥିଲେ ଯେ ସଠିକ ନେତୃତ୍ୱ ଅଭାବରୁ ଭାରତ ଏକ ଚୋରଙ୍କ ଦେଶ ରୂପେ ପରିଗଣିତ ହୋଇଛି । ନୋବେଲ ପୁରସ୍କାର ବିଜେତା ଡକ୍ଟର ଅମର୍ତ୍ତ୍ୟ ସେନ୍ ୩୧ ଜୁଲାଇ ୨୦୧୨ରେ କହିଥିଲେ ଯେ ଆନ୍ନା ହଜାରେଙ୍କ ଦୁର୍ନୀତି ବିରୋଧୀ ଆନ୍ଦୋଳନ ପ୍ରତି ତାଙ୍କର ସମର୍ଥନ ରହିଛି; କିନ୍ତୁ ସରକାର ଦୁର୍ନୀତିକୁ ପ୍ରତିରୋଧ କରିବାକୁ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁନାହାନ୍ତି ।

ପୂର୍ବରୁ କେନ୍ଦ୍ରୀୟ ଭିଜିଲାନ୍ସ କମିଶନ କରିଥିବା ଏକ ସମୀକ୍ଷାରୁ ଜଣାପଡ଼ିଥିଲା ଯେ ଦେଶର ୫୫ ଭାଗ ଆଇଏଏସ୍ ଓ ଆଇପିଏସ୍‌ମାନେ ଦୁର୍ନୀତିଗ୍ରସ୍ତ । ହଂକଂର ଏକ ଖ୍ୟାତିସମ୍ପନ୍ନ ସଂସ୍ଥା 'ପଲିଟିକାଲ ଆଣ୍ଡ ଇକୋନୋମିକ୍ ରିସ୍କ କନସଲଟାନ୍ସି' ଏସିଆ ମହାଦେଶର ୧୨ଟି ଦେଶର ସମୀକ୍ଷା କରି ସିଙ୍ଗାପୁରର ଅମଲାତନ୍ତ୍ର ସବୁଠାରୁ ଦକ୍ଷ ଓ ଦୁର୍ନୀତିମୁକ୍ତ ଏବଂ ଭାରତୀୟ ଅମଲାତନ୍ତ୍ର ଅପାରଗ ବୋଲି ଅଭିହିତ କରିଛନ୍ତି । ଭିଏତ୍‌ନାମ ସବୁଠୁ ଦୁର୍ନୀତିଗ୍ରସ୍ତ ରାଷ୍ଟ୍ର ବୋଲି ଏଥିରେ ଉଲ୍ଲେଖ ଅଛି । ଭାରତର ଜଣେ ଖ୍ୟାତନାମା ଆଇଏଏସ୍ ଅଫିସର ସି.ପି. ଶ୍ରୀବାସ୍ତବ ଯେ କି ପଦ୍ମଭୂଷଣ ଉପାଧିରେ ଭୂଷିତ ହୋଇଥିଲେ, ସେ ତାଙ୍କ ପୁସ୍ତକ 'କରପସନ୍ ଇଣ୍ଡିଆଜ୍ ଏନିମି ଉଇଦିନ୍'ରେ କ୍ଷୋଭ ପ୍ରକାଶ କରିଛନ୍ତି ଯେ ଆମ ଦେଶର ଅଧିକାଂଶ ଆଇଏଏସ୍ ଅଫିସର ନିଜର ବିବେକ ସହ ସାଲିସ କରିନେଉଛନ୍ତି । ଦେଶର ଜନସାଧାରଣ ଆଇଏଏସ୍‌ମାନଙ୍କୁ ସାଧୁତା, ଦକ୍ଷତା, ସ୍ୱଚ୍ଛତା, ନିରପେକ୍ଷତା ଓ ସମ୍ବେଦନଶୀଳତାର ପ୍ରତୀକ ଭାବେ ଗ୍ରହଣ କରିପାରୁ ନାହାନ୍ତି । ଦେଶରେ ପ୍ରାୟ ୪,୨୦୦ ଆଇଏଏସ୍ ଅଫିସର ଅଛନ୍ତି । ସମସ୍ତେ ଯଦି ଦେଶବାସୀଙ୍କର ସ୍ୱାର୍ଥକୁ ଜଗି କାର୍ଯ୍ୟ କରନ୍ତେ, ତେବେ ଦେଶର ଦ୍ରୁତ ବିକାଶ ଘଟନ୍ତା, କିନ୍ତୁ ସେପରି ହେଉନାହିଁ । ଏବେ ମଧ୍ୟ ଅନେକ ଆଇଏଏସ୍ ଅଫିସର ଅଛନ୍ତି ଯେଉଁମାନେ ଆଦର୍ଶବାଦୀ, ଦେଶପ୍ରେମୀ, ସାଧୁ, ଦୁର୍ନୀତିମୁକ୍ତ ଓ ନିଷ୍ପାପର ଅଟନ୍ତି । ଅନ୍ୟମାନେ ସେମାନଙ୍କ ପଦାଙ୍କ ଅନୁସରଣ କରିବା ଉଚିତ୍ । ବର୍ତ୍ତମାନ ସାଧାରଣ ଲୋକଟିଏ ତହସିଲ, ବ୍ଲକ, ଥାନା, ଡାକ୍ତରଖାନା

ଯେକୌଣସି ସ୍ଥାନକୁ ଯାଉଛି ହାତଗୁଞ୍ଜା ନଦେଲେ ତା' କାର୍ଯ୍ୟ ହେଉନାହିଁ। ସମସ୍ତେ ଅନୁଭବ କରୁଛନ୍ତି ଯେ ଉପରସ୍ତରର ଅଫିସର ଯଦି ଦୁର୍ନୀତିମୁକ୍ତ ରହନ୍ତେ ତେବେ ନିମ୍ନସ୍ତରରେ ଦୁର୍ନୀତି ଆପେ ଆପେ ବନ୍ଦ ହୋଇଯାଆନ୍ତା, କିନ୍ତୁ ତାହା ହେଉନାହିଁ।

ନରେନ୍ଦ୍ର ମୋଦି କ୍ଷମତାସୀନ ହେବା ପୂର୍ବରୁ ୨୬ ମାର୍ଚ୍ଚ ୨୦୧୪ରେ ନିର୍ବାଚନ ଇସ୍ତାହାରରେ ଦେଶବାସୀଙ୍କୁ କହିଥିଲେ ଯେ ସେ କ୍ଷମତାକୁ ଆସିଲେ ବିଦେଶରୁ କଳାଧନ ଫେରାଇ ଆଣିବେ ଏବଂ ଏହା ଯଦି ଦେଶବାସୀଙ୍କ ମଧ୍ୟରେ ବାଣ୍ଟି ଦିଆଯାଏ ତେବେ ପ୍ରତ୍ୟେକ ପରିବାରକୁ ୧୫ ଲକ୍ଷ ଟଙ୍କା ଲେଖାଏଁ ଉପଲବ୍ଧ ହେବ। ଦେଶ ମଧ୍ୟରେ କଳାଟଙ୍କାକୁ ବାହାର କରାଯିବ ଓ ଏହାର ବ୍ୟବହାର ଉପରେ ସମ୍ପୂର୍ଣ୍ଣ ଅଂକୁଶ ଲାଗିବ ବୋଲି ଦେଶବାସୀଙ୍କୁ ସେ ନିର୍ଭର ପ୍ରତିଶ୍ରୁତି ଦେଇଥିଲେ। କିନ୍ତୁ ସେ ୨୬ ମେ' ୨୦୧୪ରେ ପ୍ରଧାନମନ୍ତ୍ରୀ ହେବାପରେ ତାଙ୍କ ସରକାର କେବଳ ଏକ ଆଇନ କରିଛନ୍ତି ଯେ ବିଦେଶରେ କଳାଧନ ରଖିଥିବା ଲୋକଙ୍କୁ ଦଣ୍ଡିତ କରାଯିବ ଓ ଦ୍ୱିତୀୟ କାର୍ଯ୍ୟଟି ହେଲା ସ୍ପେସିଆଲ ଇନଭେଷ୍ଟିଗେସନ ଟିମ୍ ଗଠନ। ସମସ୍ତେ ଜାଣନ୍ତି ଯେ ଦେଶ ଭିତରେ ଅପର୍ଯ୍ୟାପ୍ତ କଳାଧନ ରହିଛି, ଯାହାର କାରବାରକୁ ବନ୍ଦ କରିବାକୁ କିମ୍ବା ଜବତ କରିବାକୁ ସରକାର ଦୃଢ଼ ପଦକ୍ଷେପ ନେଇନାହାଁନ୍ତି। ଯୋଗଗୁରୁ ବାବା ରାମଦେବଙ୍କ କଳାଟଙ୍କା ବିରୋଧୀ ଆନ୍ଦୋଳନ ବର୍ତ୍ତମାନ ମଧ୍ୟ ଜାରି ରହିଛି। ବର୍ତ୍ତମାନ ଦେଶ ଭିତରେ ୧୫ ଲକ୍ଷ କୋଟି କଳାଟଙ୍କା ଗଚ୍ଛିତ ଥିବା ଅନୁମାନ କରାଯାଉଛି। ଏହି କଳାଟଙ୍କା ଯୋଗୁଁ ଦେଶର ଅର୍ଥନୀତି ଘୋର ବିପର୍ଯ୍ୟୟ ଆଡ଼କୁ ମାଡ଼ିଚାଲିଛି। ଦେଶରେ କଳାଟଙ୍କାର ଅଧିକାରୀମାନେ ଏକ ସମାନ୍ତରାଳ ସରକାର ଚଳାଇଛନ୍ତି ବୋଲି ଅର୍ଥନୀତିଜ୍ଞମାନେ ପ୍ରକାଶ କରିଛନ୍ତି। ରାଜନୈତିକ ନେତୃବୃନ୍ଦ, ବହୁ ପ୍ରଶାସକ ଓ ପୁଲିସ୍ ଅଧିକାରୀ ଏହି ସମାନ୍ତରାଳ ସରକାରର ପୃଷ୍ଠପୋଷକ। ଏହି କଳାଟଙ୍କାର ପ୍ରଚଳନ ଦ୍ୱାରା ଦେଶରେ ଧନୀକଙ୍କ ସଂଖ୍ୟା ବଢୁଛି। ୨୦୧୦ ମସିହାରେ ୧୦୦ ଜଣ ଧନୀ ବ୍ୟକ୍ତିଙ୍କ ସଂପତ୍ତି ୧୩ ଲକ୍ଷ କୋଟି ଟଙ୍କା ଥିଲାବେଳେ ୭୭ ପ୍ରତିଶତ ସାଧାରଣ ବ୍ୟକ୍ତିଙ୍କ ଦୈନିକ ଖର୍ଚ୍ଚ କରିବାର ଶକ୍ତି ଥିଲା ପାଖାପାଖି ୨୦ ଟଙ୍କା। ଦେଶ ଦାରିଦ୍ର୍ୟର କଷାଘାତରୁ ମୁକ୍ତ ହେବା ପରିବର୍ତ୍ତେ ହାତଗଣତି ଶିଳ୍ପପତି ଧନୀରୁ କୁବେର ହେବାରେ ଲାଗିଛନ୍ତି। ଏକ ଆକଳନରୁ ଜଣାପଡ଼ିଛି ଯେ, ଦେଶରେ ହେଉଥିବା ୫୪୭ଟି ଲୋକସଭା ଆସନ, ୪ ହଜାରରୁ ଊର୍ଦ୍ଧ୍ୱ ବିଧାନସଭା ଆସନ, ଜିଲ୍ଲାପରିଷଦ ଓ ଗ୍ରାମପଞ୍ଚାୟତ ନିର୍ବାଚନରେ ପ୍ରାର୍ଥୀମାନେ ପାଖାପାଖି ୧ ଲକ୍ଷ କୋଟି ଟଙ୍କାର

କଳାଧନ ନିୟୋଜିତ କରିଥାନ୍ତି। ନେହେରୁଙ୍କ ପ୍ରଧାନମନ୍ତ୍ରୀତ୍ୱ ସମୟରେ 'ଏସିଆନ୍ ଡ୍ରାମା' ପୁସ୍ତକର ରଚୟିତା ଗୁନାର ମିରଡାଲ କହିଥିଲେ ଯେ, ବିଶେଷ ସତର୍କତା ଅବଲମ୍ବନ ନ କଲେ ଭାରତରେ ଦୁର୍ନୀତି କ୍ଷୀପ୍ରତର ହେବ, ଯାହା ଏବେ ସତ୍ୟରେ ପରିଣତ ହୋଇଛି। ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ପ୍ରଫେସର ଅରୁଣ କୁମାର ତାଙ୍କ ଲିଖିତ ପୁସ୍ତକ 'ବ୍ଲାକ୍ ମନି'ରେ ଭାରତରେ କଳାଧନ ଦ୍ରୁତଗତିରେ ବୃଦ୍ଧି ପାଉଛି ବୋଲି ମତ ପ୍ରକାଶ କରିଛନ୍ତି।

ଦାରିଦ୍ର୍ୟ ଦୂରୀକରଣର ପ୍ରଧାନ ଶତ୍ରୁ ଦୁର୍ନୀତି। ଦେଶରେ ଦୁର୍ନୀତି ବୃଦ୍ଧି ପାଉଛି, ତେଣୁ ଦାରିଦ୍ର୍ୟ କମିବ କିପରି ? ୟୁପି କ୍ୟାଡ଼ରର ସେବାନିବୃତ ଆଇଏଏସ୍ ଅଫିସର ପ୍ରମିଳା ଶଙ୍କର ତାଙ୍କ ଲିଖିତ ପୁସ୍ତକ 'ଗଡ଼ସ୍ ଅଫ୍ କରପ୍ସନ୍'ରେ ଆଇନର ଲୋକାଭିମୁଖୀ ଶାସନ ପ୍ରଚଳନ କରିବାରେ ଦୁର୍ନୀତିଗ୍ରସ୍ତ ରାଜନୈତିକ ନେତାମାନେ କେବଳ ପ୍ରତିବନ୍ଧକ ସୃଷ୍ଟି କରନ୍ତି ନାହିଁ, ସଚ୍ଚୋଟ ଅଫିସରମାନଙ୍କୁ କିଭଳି ବିଭିନ୍ନ ଉପାୟରେ ମାନସିକ ଯନ୍ତ୍ରଣା ଦିଆଯାଉଛି ତାହା ଉଲ୍ଲେଖ କରିଛନ୍ତି। ଟି.ଏସ୍. ନାଥ ତାଙ୍କ ରଚିତ ପୁସ୍ତକ 'କ୍ରାଇମ୍ ଆଣ୍ଡ୍ କରପ୍ସନ୍'ରେ ଅପରାଧୀମାନେ ସବୁ କ୍ଷେତ୍ରରେ ନିଜର କାୟା ବିସ୍ତାର କରି ନିର୍ବାଚିତ ସରକାରଙ୍କ ପ୍ରତିନିଧିମାନଙ୍କୁ କବଜାରେ ରଖି ସାଧାରଣ ଜନତାର ଉନ୍ନତିରେ କିପରି ମେଘନାଦ ପାଚେରି ଦଣ୍ଡାୟମାନ କରିଛନ୍ତି, ତାହା ବିଶଦଭାବେ ବର୍ଣ୍ଣନା କରିଛନ୍ତି।

ନରେନ୍ଦ୍ର ମୋଦି ୧୫ ଅଗଷ୍ଟ ୨୦୧୫ରେ ଲାଲକିଲାରେ ଘୋଷଣା କରିଥିଲେ ଯେ, ତାଙ୍କ ସରକାରର ୧୬ ମାସ ଶାସନ ସମୟରେ କୌଣସି ଦୁର୍ନୀତି ଘଟିନାହିଁ। କିନ୍ତୁ ଦେଶର ସବୁସ୍ତରରେ ଦୁର୍ନୀତି ଓ କଳାଟଙ୍କାର ବ୍ୟବହାର ବଢ଼ିବଢ଼ି ଚାଲିଛି, ଦରଦାମ ବୃଦ୍ଧି ତାହାର ଜ୍ୱଳନ୍ତ ଉଦାହରଣ। ଏକ ସର୍ବେକ୍ଷଣରୁ ଜଣାପଡ଼ିଛି ଯେ ବର୍ତ୍ତମାନ ଦେଶବାସୀଙ୍କ ମଧ୍ୟରେ ମୋଦିଙ୍କ ଲୋକପ୍ରିୟତା ହ୍ରାସ ପାଇବାରେ ଲାଗିଛି। ଦେଶରେ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ନୈତିକ ମୂଲ୍ୟବୋଧକୁ ଜଳାଞ୍ଜଳି ଦେଇ ଅର୍ଥ ଉପାର୍ଜନ କରିବା ମନୋବୃତ୍ତି ଅତି ନିମ୍ନସ୍ତରକୁ ଗଲାଣି। ଯୋଗଗୁରୁ ରାମଦେବଙ୍କ ଭଳି ସଂକଳ୍ପବଦ୍ଧ ବ୍ୟକ୍ତିଙ୍କ ସହିତ ଯୁବସମାଜ 'ଦୁର୍ନୀତି ହଟାଓ, ଦେଶ ବଚାଓ' ଆନ୍ଦୋଳନକୁ ଏକ ବିପ୍ଳବରେ ପରିବର୍ତ୍ତନ କରି ଦେଶର ଦରିଦ୍ର ଜନସାଧାରଣଙ୍କ ହିତ ସାଧନ ପାଇଁ ଆଗେଇ ନ ଆସିଲେ ଦୁର୍ନୀତିମୁକ୍ତ ଭାରତ ଏକ ଦିବାସ୍ୱପ୍ନରେ ରହିଯିବ।

*ସମ୍ବାଦ – ୧୨.୯.୨୦୧୫*

# ଗୋ-ସୁରକ୍ଷା ପ୍ରତି ସମ୍ମାନ

ଆମ ରାଜ୍ୟରେ ଓ ଦେଶରେ ୧୯୫୨ ମସିହାଠାରୁ ଗୋ-ସମ୍ବର୍ଦ୍ଧନା ସପ୍ତାହ ପ୍ରତିବର୍ଷ ପାଳନ କରାଯାଉଛି। ଚଳିତବର୍ଷ ଏହି ଗୋ-ସମ୍ବର୍ଦ୍ଧନା ସପ୍ତାହ ନଭେମ୍ବର ୨ରୁ ନଭେମ୍ବର ୮ ତାରିଖ ଯାଏ ପାଳନ କରାଯାଇଛି। ଏହି ଅବସରରେ ସରକାରୀ ସ୍ତରରେ ଓ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ଦ୍ୱାରା ସଭାସମିତି ଆୟୋଜନ କରାଯାଇ ଗୋସମ୍ପଦର ସୁରକ୍ଷା ଓ ବିକାଶ ସମ୍ବନ୍ଧରେ ଆଲୋଚନା କରାଯାଇଥାଏ। କିନ୍ତୁ ପରିତାପର ବିଷୟ ଯେ ସପ୍ତାହଟି ଶେଷ ହେବା ପରେ ସରକାର ଓ ଜନସାଧାରଣ ଗୋସମ୍ପଦର ସୁରକ୍ଷା ବିଷୟରେ ଉଦାସୀନତା ପ୍ରଦର୍ଶନ କରିଥାନ୍ତି। ଏ କଥା ଜଣାଶୁଣା ଯେ ଆମ ରାଜ୍ୟରେ କୃଷି ସହିତ ଗୋପାଳନ ଉପରେ ଗ୍ରାମାଞ୍ଚଳର ଲୋକମାନେ ଜୀବିକାର୍ଜନ ପାଇଁ ନିର୍ଭରଶୀଳ। ଏବେ କିନ୍ତୁ ଦେଶରେ ଗୋରୁଗାଈଙ୍କ ସଂଖ୍ୟା କମିବାରେ ଲାଗିଛି, ଯାହାକି ଉଦ୍‌ବେଗର ବିଷୟ। ବିଶେଷକରି ଆମ ରାଜ୍ୟରେ ୫୦ ଓ ୬୦ ଦଶକରେ ଗୋରୁଗାଈଙ୍କ ସଂଖ୍ୟା ବୃଦ୍ଧି ପାଇଥିଲାବେଳେ, ଏବେ ସେମାନଙ୍କ ସଂଖ୍ୟା କ୍ରମାଗତ ଭାବେ କମୁଥିବା ଜଣାଯାଇଛି। କେନ୍ଦ୍ରମନ୍ତ୍ରୀ ମେନକା ଗାନ୍ଧୀ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ଏପ୍ରିଲ ୨୦୧୬ରେ ଏକ ଚିଠି ଲେଖି ଜଣାଇଛନ୍ତି ଯେ ଓଡ଼ିଶାରୁ ପ୍ରତିମାସରେ ପାଖାପାଖି ଅଢ଼େଇଲକ୍ଷ ଗୋରୁ ବେଆଇନ ଭାବେ ପଶ୍ଚିମବଙ୍ଗ, ତେଲେଙ୍ଗାନା ଓ ଆନ୍ଧ୍ରପ୍ରଦେଶକୁ ଚାଲାଣ ହେଉଛନ୍ତି। ଗୋ-ଚାଲାଣକାରୀ ମାଫିଆଙ୍କ ସହିତ ହାତ ମିଳାଇଛନ୍ତି ଦୁର୍ନୀତିଗ୍ରସ୍ତ ପୋଲିସ ଅଧିକାରୀ ଓ କିଛି ପ୍ରଶାସନିକ ଅଧିକାରୀ। ରାୟଗଡ଼ାର ଜିଲ୍ଲାପାଳ ଜଗନ୍ନାଥ ଦାସଙ୍କ ବିରୁଦ୍ଧରେ ମେନକା ଗାନ୍ଧୀ ଏ ସଂକ୍ରାନ୍ତରେ ଅଭିଯୋଗ ଆଣିଛନ୍ତି। ରାୟଗଡ଼ାର ଜଣେ ସାମାଜିକ କର୍ମୀ ତୀର୍ଥକୁମାର ସାହୁ ଗୋଚାଲାଣକାରୀଙ୍କ ବିରୁଦ୍ଧରେ ଅଭିଯୋଗ କରିବାରୁ ଜିଲ୍ଲାପାଳ ତାଙ୍କୁ ଜେଲ ପଠାଇ ଦେଲେ ଏବଂ ସେଠାରେ ତାଙ୍କ ଉପରେ ମରଣାନ୍ତକ ଆକ୍ରମଣ ହୋଇଥିଲା। ଓଡ଼ିଶାରେ ଗୋଚାଲାଣକାରୀଙ୍କ ଦୌରାତ୍ମ୍ୟ ଏଭଳି ଭାବରେ ବଢ଼ିଗଲାଣି ଯେ ୭ ଅକ୍ଟୋବରରେ ଭାରତ ରକ୍ଷା ମଞ୍ଚର ଜାତୀୟ ସହ-ସଂଯୋଜକ ମୁରଲୀ ମନୋହର ଶର୍ମା ମୁଖ୍ୟମନ୍ତ୍ରୀଙ୍କୁ ଅଳ୍ପଦିନ ବ୍ୟବଧାନରେ ସୋରୋ, ପଟ୍ଟାମୁଣ୍ଡାଇ ଓ ରାଉରକେଲା ପ୍ରଭୃତି ସ୍ଥାନମାନଙ୍କରେ

ଘଟିଯାଇଥିବା ସାଂପ୍ରଦାୟିକ ଦଙ୍ଗା ପଛରେ ଗୋଚାଲାଣକାରୀ ଏଜେଣ୍ଟମାନଙ୍କର ପ୍ରଛନ୍ନ ହାତ ଓ ପ୍ରୋତ୍ସାହନ ଥିବା ଦର୍ଶାଇ ଏହାର କ୍ରାଇମ୍ ବ୍ରାଞ୍ଚ ଦ୍ୱାରା ତଦନ୍ତ କରାଇବାକୁ ଅନୁରୋଧ କରିଥିଲେ। ଗୋଜ୍ଞାନ ଫାଉଣ୍ଡେସନର ମୁଖପାତ୍ର ଜଗପ୍ରୀତି ଲୁଥ୍ରା ମୁରଲି ଶର୍ମାଙ୍କ ଅଭିଯୋଗକୁ ସତ୍ୟ ଉପରେ ଆଧାରିତ ବୋଲି ବକ୍ତବ୍ୟ ପ୍ରଦାନ କରିଛନ୍ତି।

ଭାରତର ଏହି ଗୋସୁରକ୍ଷା ପ୍ରଶ୍ନ ଉପରେ ଏବେ ସାଙ୍ଘାତିକ ପରିସ୍ଥିତିମାନ ସୃଷ୍ଟି ହୋଇ ସାମ୍ପ୍ରଦାୟିକ ବିଦ୍ୱେଷରେ ପରିଣତ ହେଉଛି ଏବଂ ଦେଶର ସଂହତି ଉପରେ ବିପଦ ସୃଷ୍ଟି କରିଛି। ନିକଟରେ ଗୁଜୁରାଟରେ ଉନ୍ନା ସହର ପାର୍ଶ୍ୱବର୍ତ୍ତୀ ମୋଟାସମଧୀୟାଲ୍ଲା ଗ୍ରାମରେ ଚାରିଜଣ ଦଳିତ ଯୁବକଙ୍କୁ ମଲା ଗୋରୁଙ୍କ ଚମଡ଼ା ଉତାରୁଥିବା ସମୟରେ ଗୋରକ୍ଷକ ବୋଲି ନିଜକୁ ପ୍ରଚାର କରୁଥିବା କେତେକ ଗୁଣ୍ଡା ସେମାନଙ୍କୁ ନିର୍ଦ୍ଧୁମ୍ ପିଟିଥିଲେ। ଏହି ଘଟଣା ଗୁଜୁରାଟରେ ଏବଂ ଦେଶରେ ଉତ୍ତେଜନା ସୃଷ୍ଟି କରିଥିଲା। ଏହା ସଂସଦରେ ମଧ୍ୟ ଆଲୋଚନା ହୋଇ ସବୁ ରାଜନୈତିକ ଦଳ ଦ୍ୱାରା ନିନ୍ଦିତ ହୋଇଛି। ସେହିଭଳି ଡିସେମ୍ବର, ୨୦୧୫ରେ ହିମାଚଳପ୍ରଦେଶରେ ଦୁଇଜଣ ଗୋରୁବେପାରୀଙ୍କୁ ତଥାକଥିତ ଗୋସୁରକ୍ଷା କର୍ମୀମାନେ ହତ୍ୟା କରିଥିଲେ। ଗତ ମାର୍ଚ୍ଚମାସରେ ଝାଡ଼ଖଣ୍ଡ ଲଟେହାର ଜିଲ୍ଲାର ଗୋରକ୍ଷକ ସମିତିର କିଛି ସଦସ୍ୟ ସଂଖ୍ୟାଲଘୁ ସମ୍ପ୍ରଦାୟର ଦୁଇଜଣ ବ୍ୟକ୍ତି ଗୋରୁଙ୍କୁ ଗାଡ଼ିରେ ବିକ୍ରି ପାଇଁ ନେଇଯାଉଥିବା ସମୟରେ ସେମାନଙ୍କୁ ଅଟକେଇ ନିର୍ମମ ଭାବେ ହତ୍ୟା କଲେ। ଅନେକ ସମୟରେ ଗୋସୁରକ୍ଷା ନାମରେ ଏଭଳି ଘଟଣାମାନ ଘଟୁଛି ଯାହାକି ନିନ୍ଦନୀୟ। ହିନ୍ଦୁସ୍ଥାନ ଟାଇମ୍ସ ଭଳି ପ୍ରତିଷ୍ଠିତ ଇଂରାଜୀ ଖବରକାଗଜରେ ପ୍ରଦତ୍ତ ତଥ୍ୟ ଅନୁଯାୟୀ ଗୁଜୁରାଟର ୩୩ଟି ଜିଲ୍ଲାରେ ଦଶହଜାରରୁ ଉର୍ଦ୍ଧ୍ୱ ଗୋ-ଭକ୍ତ ସକ୍ରିୟ ହୋଇ ଗୋରୁଗାଈ ଚାଲାଣ କରୁଥିବା ଗାଡ଼ି ଓ ଲୋକମାନଙ୍କୁ ହଇରାଣ ହରକତ ଓ ଅତ୍ୟାଚାର କରୁଥିଲା ବେଳେ ପୋଲିସ କୌଣସି ପଦକ୍ଷେପ ନେଇ ନଥିବା ଜଣାଯାଏ।

ଦିନଥିଲା ଯେତେବେଳେ ଆମ ଦେଶରେ ଗାଈଙ୍କୁ ଗୋମାତା ରୂପେ ଲୋକେ ପୂଜା କରୁଥିଲେ। ଏବେ କିନ୍ତୁ ସେ ପରିସ୍ଥିତି ନାହିଁ। ଜାତିର ଜନକ ମହାତ୍ମାଗାନ୍ଧୀ ତାଙ୍କ ପତ୍ରିକା 'ନବଜୀବନ'ର ଫେବୃଆରୀ ୨୫, ୧୯୨୫ ସଂଖ୍ୟାରେ ଲେଖିଥିଲେ ଗୋରକ୍ଷାର ପ୍ରଶ୍ନ ସ୍ୱରାଜ୍ୟ ପ୍ରଶ୍ନଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ। ଲୋକମାନ୍ୟ ତିଲକ, ମଦନ ମୋହନ ମାଲବ୍ୟ, ଗୋପାଳକୃଷ୍ଣ ଗୋଖଲେ ପ୍ରମୁଖ ଘୋଷଣା କରିଥିଲେ ସ୍ୱରାଜ୍ୟ

ମିଳିବା ମାତ୍ରକେ ଗୋ-ହତ୍ୟା ତୁରନ୍ତ ବନ୍ଦ କରି ଦିଆଯିବ । କିନ୍ତୁ ତାହା ହେଲା ନାହିଁ । ୧୯୬୬ ମସିହା ନଭେମ୍ବର ମାସରେ ଦିଲ୍ଲୀ ସଂସଦ ଭବନଠାରେ ଗୋହତ୍ୟା ବିରୁଦ୍ଧରେ ଗୋଭକ୍ତମାନଙ୍କର ଜାତିଧର୍ମ ନିର୍ବିଶେଷରେ ଏକ ସମ୍ମିଳନୀ ହୋଇ ଗୋସୁରକ୍ଷା ଦାବି କରାଯାଇଥିଲା । ଅନ୍ୟମାନଙ୍କ ମଧ୍ୟରେ ପୁରୀର ଶଙ୍କରାଚାର୍ଯ୍ୟ ୭୩ ଦିନ ଅନଶନ କରିଥିଲେ । ଏବେ ମଧ୍ୟ ଓଡ଼ିଶାରେ ସ୍ୱାମୀ ପ୍ରଜ୍ଞାନାନନ୍ଦଙ୍କ ମାର୍ଗଦର୍ଶନରେ ଗୋପାଳନ ଓ ଗୋସୁରକ୍ଷା ପାଇଁ କାର୍ଯ୍ୟକ୍ରମ ବିଭିନ୍ନ ସଂଗଠନ ଦ୍ୱାରା କରାଯାଉଛି । ଏହା ସତ୍ତ୍ୱେ ଗାଈଗୋରୁମାନେ ଅକର୍ମଣ୍ୟ ହେଲେ ସେମାନଙ୍କୁ ପାଳୁଥିବା ଲୋକମାନେ ରାସ୍ତାରେ ଛାଡ଼ି ଦେବାକୁ ପଛାଉ ନାହାଁନ୍ତି ।

ଆଗ କାଳରେ ଗୋସୁରକ୍ଷା ପାଇଁ ଗୋମଙ୍ଗଳ ସମିତିମାନ କାର୍ଯ୍ୟ କରୁଥିଲା । ଏହି ସମିତି ମାଧ୍ୟମରେ ଅବହେଳିତ ଗାଈଗୋରୁଙ୍କ ଯତ୍ନ ଗୋଶାଳାମାନଙ୍କରେ ନିଆଯାଉଥିଲା । ସାଧୁସନ୍ଥମାନେ ମଧ୍ୟ ସେମାନଙ୍କ ଆଶ୍ରମରେ ବୃଦ୍ଧ ଓ ଅକର୍ମଣ୍ୟ ଗାଈଗୋରୁଙ୍କୁ ରଖି ସେବା ଯତ୍ନ କରୁଥିଲେ । ନରେନ୍ଦ୍ର ମୋଦି ଗୁଜୁରାଟର ମୁଖ୍ୟମନ୍ତ୍ରୀ ଥିବାବେଳେ ତାଙ୍କ ରାଜ୍ୟରେ ଗୋଶାଳାମାନଙ୍କୁ ଓ ଗୋସୁରକ୍ଷା ସମିତିମାନଙ୍କୁ ସରକାରୀ ସାହାଯ୍ୟ ଦେବାର ବ୍ୟବସ୍ଥା କରିଥିଲେ । ଏକ ପ୍ରକାଶିତ ତଥ୍ୟରୁ ଜଣାଯାଏ ୨୦୧୧ରୁ ୨୦୧୪ ମଧ୍ୟରେ ଗୁଜୁରାଟରେ ଗୋସୁରକ୍ଷା ପାଇଁ ୧୫୦ କୋଟି ଟଙ୍କାର ଅନୁଦାନ ଦିଆଯାଇଥିଲା ।

ଅନ୍ୟପକ୍ଷରେ ଆଜି ଭାରତବର୍ଷ ପୃଥିବୀରେ ସବୁଠାରୁ ଅଧିକ ଗୋମାଂସ ରପ୍ତାନିକାରୀ ଦେଶ ଭାବେ ଗଣାଯାଉଛି । ଆମେରିକାର କୃଷି ବିଭାଗ ୨୦୧୪ ମସିହାରେ ଏହି ତଥ୍ୟ ପ୍ରକାଶ କରିଛି । ପ୍ରତିବର୍ଷ ଗୋମାଂସ ଓ ମଇଁଷି ମାଂସ ରପ୍ତାନୀ ବଢ଼ିବଢ଼ି ଚାଲିଛି ।

ଭାରତବର୍ଷର ବିଭିନ୍ନ ରାଜ୍ୟରେ ବିଶେଷକରି ହରିୟାନା, ମହାରାଷ୍ଟ୍ର, କର୍ଣ୍ଣାଟକ, ଆନ୍ଧ୍ରପ୍ରଦେଶ, ତେଲେଙ୍ଗାନାରେ ଗୋସୁରକ୍ଷା ପାଇଁ ସରକାର ବିଶେଷ କାର୍ଯ୍ୟକ୍ରମ ଗ୍ରହଣ କରୁଥିବା ଜଣାଯାଏ । ଗୋଶାଳାମାନ ପ୍ରତିଷ୍ଠା କରିବାକୁ ଏହି ରାଜ୍ୟମାନଙ୍କରେ ସରକାରୀ ସହାୟତା ଯୋଗାଇ ଦିଆଯାଉଛି । ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଗତ ୨୬ ସେପ୍ଟେମ୍ବରରେ ପ୍ରାଣୀ ସମ୍ପଦର ସୁପରିଚାଳନା ଦ୍ୱାରା ଗ୍ରାମାଞ୍ଚଳରେ ବସବାସ କରୁଥିବା କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କର ଆର୍ଥିକ ଉନ୍ନତି ନିଶ୍ଚିତ ବୋଲି କହିଥିଲେ । ଏଥିପାଇଁ ପ୍ରଣୟନ କରାଯାଇଥିବା ଏକ ନୂତନ ଯୋଜନା

'ଦେଶୀ ଗୋପ୍ରଜାତିର ଉନ୍ନତି ନିମନ୍ତେ ନିୟନ୍ତ୍ରିତ ଉପାୟରେ ପ୍ରଜନନ' ଠିକ୍ ଭାବରେ କାର୍ଯ୍ୟକାରୀ କରିବା ପାଇଁ ବିଭାଗୀୟ କର୍ମଚାରୀମାନଙ୍କୁ ନର୍ଦ୍ଦେଶ ଦେଇଥିଲେ । ସରକାର ଗୋହତ୍ୟା ନିରୋଧ ପାଇଁ ବିଭିନ୍ନ ଆଇନଗତ ପଦକ୍ଷେପମାନ ଗ୍ରହଣ କରିଛନ୍ତି ।

ଦେଶବାସୀ ଜାତି, ଧର୍ମ ନିର୍ବିଶେଷରେ ସମ୍ପୂର୍ଣ୍ଣ ଗୋହତ୍ୟା ନିଷେଧ ଭଳି ଅବାସ୍ତବ ପ୍ରସ୍ତାବରୁ କ୍ଷାନ୍ତ ରହି ଗୋସୁରକ୍ଷା ଆଇନରେ ରହିଥିବା ବ୍ୟବସ୍ଥାକୁ ସମ୍ମାନ ଜଣାଇ ସମସ୍ତଙ୍କ ସହମତି ଭିତ୍ତିରେ ଗୋସୁରକ୍ଷା ପାଇଁ ସମର୍ପିତ ହେବା ଆବଶ୍ୟକ ।

*ସମାଜ - ୧୫.୧୧.୨୦୧୬*

# ବିନା ପ୍ରସ୍ତୁତିରେ ବିମୁଦ୍ରାୟନ ଲୋକଙ୍କ ପାଇଁ କାଳ

ନଭେମ୍ବର ୮, ୨୦୧୬ ସନ୍ଧ୍ୟା ୮ ଘଟିକା ସମୟରେ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ଦେଶରେ ୫୦୦ ଓ ୧୦୦୦ ଟଙ୍କିଆ ନୋଟ୍‌ର ପ୍ରଚଳନ ସେହିଦିନ ମଧ୍ୟରାତ୍ରରୁ ଅଚଳ ହୋଇଯିବା ବିଷୟ ଘୋଷଣା କରିଥିଲେ ଏବଂ ଡିସେମ୍ବର ୩୦, ୨୦୧୬ ମଧ୍ୟରେ ପୁରୁଣା ନୋଟ୍‌କୁ ବ୍ୟାଙ୍କରେ ବଦଳାଇ ନୂଆ ନୋଟ୍ ଆଣି ହେବ ବୋଲି ମୋଦି ପ୍ରତିଶ୍ରୁତି ଦେଇଥିଲେ । ଏହି ପଦକ୍ଷେପଦ୍ୱାରା ଦୁର୍ନୀତି, କଳାଟଙ୍କା ଓ ଜାଲନୋଟ୍ ପ୍ରସାରକୁ ରୋକାଯାଇପାରିବ ବୋଲି ସେ କହିଥିଲେ । ବିଜେପିର ରାଷ୍ଟ୍ରୀୟ ସଭାପତି ଅମିତ୍ ଶାହା ଏହାକୁ ମୋଦିଙ୍କର କଳାଧନ ବିରୋଧରେ ସର୍ଜିକାଲ ଷ୍ଟ୍ରାଇକ୍ ବୋଲି ପ୍ରଚାର କରୁଛନ୍ତି, କିନ୍ତୁ କଂଗ୍ରେସ ନେତା ଓ ବିଶିଷ୍ଟ ଆଇନଜୀବୀ କପିଲ ଶିବଲ ମୋଦିଙ୍କର ଏହି ପଦକ୍ଷେପକୁ ଭାରତର ସାଧାରଣ ଲୋକଙ୍କ ବିରୁଦ୍ଧରେ ସର୍ଜିକାଲ ଷ୍ଟ୍ରାଇକ୍ ବୋଲି ଚିତ୍ରଣ କରି ତୀବ୍ର ସମାଲୋଚନା କରିଛନ୍ତି । ଦେଶର ବିରୋଧୀଦଳମାନେ ଏକତ୍ରିତ ହୋଇ ୨୦୧୬ ବିମୁଦ୍ରାୟନ ନିଷ୍ପତ୍ତିକୁ ପ୍ରତ୍ୟାହାର କରିବା ପାଇଁ କେନ୍ଦ୍ର ସରକାରଙ୍କ ଉପରେ ଚାପ ସୃଷ୍ଟି କରୁଛନ୍ତି । ଉଭୟ ଲୋକସଭା ଓ ରାଜ୍ୟସଭାର ଶୀତକାଳୀନ ଅଧିବେଶନକୁ ଅଚଳ କରିଦେଇଛନ୍ତି । ନଭେମ୍ବର ୧୦ରୁ ପ୍ରତିଦିନ ସାଧାରଣଲୋକେ ସେମାନଙ୍କ ପାଖରେ ଥିବା ନୋଟ୍ ବଦଳାଇବାକୁ ବ୍ୟାଙ୍କମାନଙ୍କ ସମ୍ମୁଖରେ ଲମ୍ବା ଲାଇନ୍ କରି ଘଣ୍ଟାଘଣ୍ଟା ଧରି ଅପେକ୍ଷା କରିବାର ଦୃଶ୍ୟ ସମସ୍ତଙ୍କୁ ମର୍ମାହତ କରିଛି । ସେହିଭଳି ଯେଉଁମାନେ ବ୍ୟାଙ୍କକୁ ନିଜ ଜମା ଅର୍ଥରୁ ଟଙ୍କା ଉଠାଇବାକୁ ଯାଉଛନ୍ତି ସେମାନଙ୍କୁ ମଧ୍ୟ ଘଣ୍ଟାଘଣ୍ଟା ଧରି ଅପେକ୍ଷା କରିବାକୁ ପଡୁଛି । ସେମାନେ ମଧ୍ୟ ବହୁ ଅସୁବିଧାର ସମ୍ମୁଖୀନ ହେଉଛନ୍ତି, କେତେବେଳେ ବ୍ୟାଙ୍କରୁ ଟଙ୍କା ସରିଗଲାଣି ତ କେତେବେଳେ ଏଟିଏମ୍‌ରେ ଟଙ୍କା ନାହିଁ ।

ଭାରତରେ ସ୍ୱାଧୀନତା ପୂର୍ବରୁ ୧୯୪୬ ମସିହାରେ ବ୍ରିଟିଶ ସରକାର କଳାଟଙ୍କା ଜବତ କରିବା ପାଇଁ ୧୦୦ ଟଙ୍କିଆ ନୋଟ୍ ପ୍ରଚଳନ ବାତିଲ କରିଥିଲେ । କିନ୍ତୁ ଏହା ରାଜାରାଜୁଡ଼ାଙ୍କ ଅଧିନରେ ଥିବା ଅଞ୍ଚଳରେ ଲାଗୁ ହୋଇନଥିବାରୁ ଆଖିଦୃଶିଆ ସଫଳତା ମିଳିନଥିଲା । ପାଖାପାଖି ୧୪୪ କୋଟି ଟଙ୍କାର ୧୦୦ ଟଙ୍କିଆ ନୋଟ୍ ପ୍ରଚଳନ

ମଧ୍ୟରୁ ମାତ୍ର ୯ କୋଟି ଟଙ୍କାର ନୋଟ୍ ଅଚଳ ହୋଇଥିଲା। ସେତେବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଭାରତର ବ୍ୟବସାୟୀମାନେ ସରକାରଙ୍କୁ ସାମଗ୍ରୀ ଯୋଗାଇ ପ୍ରଚୁର ଅର୍ଥ ଉପାର୍ଜନ କରିଥିଲେ। ଟିକସ ଫାଙ୍କି ବହୁ କଳାଧନ ଉପାର୍ଜନ କରିଥିଲେ। ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ଥିଲାବେଳେ ୧୯୭୮ ମସିହା ଜାନୁଆରୀ ୧୬ ତାରିଖରେ କେନ୍ଦ୍ର ସରକାର ୧୦୦୦, ୫୦୦୦, ୧୦୦୦୦ ଟଙ୍କିଆ ନୋଟ୍‌ର ପ୍ରଚଳନ ବନ୍ଦ କରିଦେଇଥିଲେ। ଏହି ସମୟରେ ୧୮୦ କୋଟି ଟଙ୍କାର ଉଚ୍ଚ ମୂଲ୍ୟର ନୋଟ୍ ପ୍ରଚଳିତ ଥିଲା, କିନ୍ତୁ ସରକାରଙ୍କ ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ସେଥିରୁ ୨୦ କୋଟି ଟଙ୍କା ଅଚଳ ହୋଇଥିଲା।

୨୦୧୬ ମସିହାରେ ହୋଇଥିବା ବିମୁଦ୍ରାକରଣର ଉଦ୍ଦେଶ୍ୟ ମହତ ହୋଇଥିଲେ ମଧ୍ୟ ଏହା କିଭଳି କାର୍ଯ୍ୟକାରୀ ହେବ ସେ ସମ୍ବନ୍ଧରେ ସୁଚିନ୍ତିତ ବ୍ୟବସ୍ଥା କରାଯାଇ ନ ଥିବାରୁ ଏହା ସାଧାରଣ ଲୋକମାନଙ୍କ ଉପରେ ବଜ୍ରପାତ ବୋଲି ବିବେଚନା କରାଯାଇପାରେ। ସବୁଠାରୁ ଚାଷୀ, ମୂଲିଆ, ଗରିବ ଲୋକମାନେ ଯେଭଳି ହରକତ ହେଉଛନ୍ତି ତାହା ସେମାନେ କେବେ ବି ଭୁଲିପାରିବେନି ଓ ସରକାରଙ୍କୁ କ୍ଷମା ଦେଇପାରିବେନି। ଘଣ୍ଟା ଘଣ୍ଟା ଧରି ବ୍ୟାଙ୍କ, ପୋଷ୍ଟଅଫିସ ସମ୍ମୁଖରେ ଧାଡ଼ିବାନ୍ଧି ସେମାନେ ଯେଭଳି ଅତିଷ୍ଠ ହୋଇପଡୁଛନ୍ତି ତାହା ଅତ୍ୟନ୍ତ ଦୁଃଖଦାୟକ। ବର୍ତ୍ତମାନ ସୁଦ୍ଧା ଦେଶର ବିଭିନ୍ନ ଅଂଚଳରେ ବ୍ୟାଙ୍କ ସମ୍ମୁଖରେ ଠିଆହୋଇ ବା ନିଜ ଝିଅ-ପୁଅର ବିବାହ ପାଇଁ ଅର୍ଥ ଯୋଗାଡ଼ କରି ନପାରି ପ୍ରାୟ ୫୦ ଜଣ ଲୋକ ମୃତ୍ୟୁବରଣ କରିଛନ୍ତି। କେବଳ ଆନ୍ଧ୍ରପ୍ରଦେଶରେ ଲୋକେ ୫୦ ହଜାର ବାହାଘର ସ୍ଥଗିତ ରଖିବାକୁ ବାଧ୍ୟ ହୋଇଛନ୍ତି।

ଆମ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦିଙ୍କର ୨୦୧୪ ମସିହା ନିର୍ବାଚନ ପୂର୍ବର ପ୍ରତିଶ୍ରୁତି ଏବେ ବି ପ୍ରତ୍ୟେକ ଭାରତୀୟଙ୍କର ମନେଅଛି। ସେ ବିଦେଶରେ ଗଚ୍ଛିତ ଥିବା ଭାରତୀୟମାନଙ୍କର କଳାଟଙ୍କାକୁ ନିଶ୍ଚିତ ଜବତ କରିବେ ଏବଂ ପ୍ରତ୍ୟେକ ଭାରତୀୟଙ୍କ ବ୍ୟାଙ୍କ ଖାତାରେ ୧୫ ଲକ୍ଷ ଟଙ୍କା ଜମା କରିଦେବେ, ଦେଶବାସୀଙ୍କ ପାଇଁ ଭଲଦିନ ଆଣିଦେବେ ବୋଲି କହିଥିଲେ। ତାହା ତ ସେ କରିପାରିଲେ ନାହିଁ ଏବଂ ଅମିତ୍ ଶାହା ତାକୁ ମୋଦିଙ୍କର ନିର୍ବାଚନୀ ଜୁମୁଲା ବୋଲି ଅଭିହିତ କରିଥିଲେ। ଏହି କଳାଟଙ୍କା ବିରୁଦ୍ଧରେ ସଂଗ୍ରାମ ଏକ ଜୁମୁଲା ବା ପ୍ରହସନରେ ପରିଣତ ନ ହେଉ।

ଦିଲ୍ଲୀ ଓ ଉତ୍ତରପ୍ରଦେଶ ଗଣମାଧ୍ୟମର ପ୍ରତିନିଧିମାନେ ପୁଲିସଠାରୁ ଖବର ସଂଗ୍ରହ କରି ପ୍ରକାଶ କରିଛନ୍ତି ଯେ ବ୍ୟାଙ୍କଗୁଡ଼ିକ ସମ୍ମୁଖରେ ପ୍ରତ୍ୟେକ ଦିନ ହଜାରହଜାର ସଂଖ୍ୟାରେ ହିଂସକ ଘଟଣାମାନ ଘଟୁଛି। ସର୍ବୋଚ୍ଚ ନ୍ୟାୟାଳୟ କେତେକ ପି.ଆଇ.ଏଲ୍.ର ବିଚାର କରିବା ସମୟରେ ତାଙ୍କ ରାୟରେ ସରକାରଙ୍କ ବିମୁଦ୍ରାକରଣ ନିଷ୍ପତ୍ତିକୁ ଅବୈଧ ଘୋଷଣା କରିନଥିଲେ ମଧ୍ୟ ଏହାଦ୍ୱାରା ଦେଶରେ ସର୍ବତ୍ର ଯେଉଁଭଳି ବିଶୃଙ୍ଖଳା ସୃଷ୍ଟି ହୋଇଛି ତାହାର ପରିଣତିସ୍ୱରୂପ ରାସ୍ତାଘାଟ-ବିଚବଜାରରେ ଦଙ୍ଗା ହେବା ଅସମ୍ଭବ ନୁହେଁ ବୋଲି ସତର୍କ କରାଇଦେଇଛନ୍ତି।

ସଂସଦର ଅଧିବେଶନରେ ବିରୋଧୀଦଳର ସାଂସଦମାନଙ୍କର ଦାବୀ ସତ୍ତ୍ୱେ ପ୍ରଧାନମନ୍ତ୍ରୀ ତାଙ୍କର ନିଷ୍ପତ୍ତିର ଯଥାର୍ଥତାକୁ ନେଇ କୌଣସି ବିବୃତି ଦେଲେନାହିଁ। ବିଶ୍ୱର ମାନ୍ୟଗଣ୍ୟ ଅର୍ଥନୀତିଜ୍ଞ ଆମ ଦେଶର ଦୁଇଦୁଇଥର ପ୍ରଧାନମନ୍ତ୍ରୀ ଆସନ ଅଳଂକୃତ କରିଥିବା ଡକ୍ଟର ମନମୋହନ ସିଂହ ରାଜ୍ୟସଭାରେ ମୋଦିଙ୍କର ନିଷ୍ପତ୍ତି ଏକ ସଂଗଠିତ ଉପାୟରେ ଆଇନ ପରିସର ଭିତରେ ଦେଶର ସଂପତ୍ତିକୁ ଲୁଣ୍ଠନ ବୋଲି ପ୍ରଧାନମନ୍ତ୍ରୀ ମୋଦିଙ୍କ ଉପସ୍ଥିତିରେ କହିଥିଲେ। ବଡ଼ ବିସ୍ମୟର କଥା ମୋଦି ଏହା ଶୁଣିସାରିବା ପରେ ରାଜ୍ୟସଭାରୁ ଉଠି ପଳାଇଗଲେ ଯେ ଆଉ ଫେରିଲେ ନାହିଁ। ସେ ଯଦି ସେହି ସମୟରେ ଆଲୋଚନାରେ ଭାଗନେଇ ତାଙ୍କର ଏହି ବିମୁଦ୍ରାକରଣ ସଂପର୍କରେ ବକ୍ତବ୍ୟ ପ୍ରଦାନ କରିଥାନ୍ତେ ତାହା ଦେଶବାସୀଙ୍କୁ ଉତ୍ସାହିତ କରିଥାନ୍ତା। କିନ୍ତୁ ସେ ସଂସଦକୁ ସଂପୂର୍ଣ୍ଣ ଭାବରେ ଅନ୍ଧକାରରେ ରଖି ଦେଶର ବିଭିନ୍ନ ସ୍ଥାନରେ ଉଦ୍‌ଘାଟନୀ ସଭା ଓ ନିର୍ବାଚନୀ ସଭାମାନଙ୍କରେ କେତେବେଳେ ଲୋକମାନଙ୍କଠାରୁ ୫୦ ଦିନ ସମୟ ମଧ୍ୟରେ ସବୁ ଠିକ୍ ହୋଇଯିବ ବୋଲି କହୁଛନ୍ତି ତ ଅନ୍ୟ କେତେବେଳେ ଏହି ବିମୁଦ୍ରାକରଣ ଅମିର ଓ ଗରିବ ଲୋକମାନଙ୍କ ମଧ୍ୟରେ ଲଢ଼ାଇ ବୋଲି କହି ଗରିବ ଲୋକଙ୍କ ସ୍ୱାର୍ଥ ପାଇଁ ସେ ବିମୁଦ୍ରାକରଣ କରିଛନ୍ତି ବୋଲି କହୁଛନ୍ତି।

ସାଧାରଣରେ ଚର୍ଚ୍ଚା ହେଉଛି ଯେ ୫୦୦ ଓ ୧୦୦୦ ଟଙ୍କିଆ ନୋଟ୍ ଅଚଳ ହେବାପରେ ମଧ୍ୟ ଦେଶରେ କଳାଧନ ଓ ଜାଲ ନୋଟ୍‌ର କାରବାର ବନ୍ଦ ହୋଇନାହିଁ। ନୂଆ ୨୦୦୦ ଟଙ୍କିଆ ନୋଟ୍ ବଜାରକୁ ଆସିବାର ଅଳ୍ପଦିନ ମଧ୍ୟରେ ତାର ଜାଲ ନୋଟ୍ ବିଭିନ୍ନ ସ୍ଥାନରୁ ଏପରିକି ଆତଙ୍କବାଦୀଙ୍କଠାରୁ ଜବତ ହୋଇଛି। ବିଶିଷ୍ଟ ସମାଜସେବୀ ଆନ୍ନା ହଜାରେ ୨୦୦୦ ଟଙ୍କିଆ ନୋଟ୍ ପ୍ରଚଳନ ବିରୋଧରେ

ମତପୋଷଣ କରିଛନ୍ତି ଏବଂ ତାହା ଶୀଘ୍ର ଅପସାରଣ କରିବାକୁ ସରକାରଙ୍କୁ ପରାମର୍ଶ ଦେଇଛନ୍ତି। ନୋବେଲ ବିଜୟୀ ବିଶିଷ୍ଟ ଅର୍ଥନୀତିଜ୍ଞ ଅମର୍ତ୍ତ୍ୟ ସେନ୍ ମୋଦିଙ୍କର ଏହି ବଡ଼ ନୋଟ୍ ଅଚଳ କରିବା ପଦକ୍ଷେପକୁ ସରକାରଙ୍କ ସ୍ୱେଚ୍ଛାଚାରିତା ଓ ବିଶ୍ୱାସଘାତକତା ବୋଲି ବର୍ଣ୍ଣନା କରିଛନ୍ତି। ଚଳିତବର୍ଷ ଅର୍ଥନୀତିରେ ନୋବେଲ ପୁରସ୍କାର ପାଇଥିବା ହୋମ୍‌ଷ୍ଟ୍ରୋମ୍ ଷ୍ଟକହୋମ୍‌ଠାରେ ୧୪ ଡିସେମ୍ବରରେ ଏକ ସାକ୍ଷାତକାରରେ କହିଛନ୍ତି ଯେ, ଭାରତ ସରକାରଙ୍କର ବିମୁଦ୍ରାକରଣ ନିଷ୍ପତ୍ତି କଳାଧନ ରୋକିବାକୁ ଏକ ସଠିକ ପଦକ୍ଷେପ ନୁହେଁ। ୧୮ ଡିସେମ୍ବରରେ ଭାଜପା ଏମ୍.ପି. ସୁବ୍ରମଣ୍ୟମ୍ ସ୍ୱାମୀ ଆବଶ୍ୟକ ଥିବା ପୂର୍ବପ୍ରସ୍ତୁତିର ଅଭାବ ଯୋଗୁଁ ନୋଟ୍ ସଂକଟ ସୃଷ୍ଟି ହୋଇଛି ଏବଂ ଏହା ସବୁଶ୍ରେଣୀର ଲୋକଙ୍କୁ ବାଧୁଛି ବୋଲି କୋଏମ୍ବାଟୁରଠାରେ ଏକ ସାମ୍ବାଦିକ ସମ୍ମିଳନୀରେ ସରକାରଙ୍କୁ ସମାଲୋଚନା କରିଛନ୍ତି। ପୂର୍ବତନ କେନ୍ଦ୍ର ଅର୍ଥମନ୍ତ୍ରୀ ପି. ଚିଦାମ୍ବରମ୍ ନୂଆଦିଲ୍ଲୀଠାରେ ଗତ ୧୩ ତାରିଖ ଦିନ କହିଛନ୍ତି ଯେ ନୋଟ୍ ଅଚଳ ହେବାଦ୍ୱାରା ଗରିବ ଜନସାଧାରଣ ଯେଉଁଭଳି ହଇରାଣ ହେଉଛନ୍ତି ତାହାକୁ ସେମାନେ କେବେବି ଭୁଲିପାରିବେ ନାହିଁ କିମ୍ବା ସରକାରଙ୍କୁ କ୍ଷମା ଦେଇପାରିବେ ନାହିଁ। ଚାଷୀମାନଙ୍କ ପାଖରେ ମଞ୍ଜି ଓ ସାର କିଣିବାକୁ ଏବଂ ମଜଦୁରମାନଙ୍କୁ ମୂଲ ଦେବାକୁ ଟଙ୍କା ନାହିଁ। ଦୈନିକ ମଜୁରୀ ଉପରେ ନିର୍ଭରଶୀଳ ୫ କୋଟି ଲୋକ କାମଧନ୍ଦା ନ ପାଇ ହଇରାଣ ହେଉଛନ୍ତି। ସେ କହିଛନ୍ତି ଯେ ଭାରତରେ ମାତ୍ର ୩ ପ୍ରତିଶତ କାରବାର କ୍ୟାସ୍‌ଲେସ୍‌ରେ ହୋଇଥାଏ। ଏହାକୁ ଅଳ୍ପ କେଇମାସ ଭିତରେ ୧୦୦ ପ୍ରତିଶତରେ ପହଞ୍ଚାଇବା ଲକ୍ଷ୍ୟ ଅବାସ୍ତବ।

୨୦୦୦ ଟଙ୍କିଆ ନୋଟ୍ ପ୍ରଚଳନ କଳାଟଙ୍କା ବଢ଼ାଇବାରେ ସହାୟକ ହେବ ବୋଲି ସମାଲୋଚନା ହେବାପରେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ସହିତ ଘନିଷ୍ଠ ସଂପର୍କରେ ଥିବା ଅର୍ଥଶାସ୍ତ୍ରୀ ସ୍ୱାମୀନାଥନ୍ ଗୁରୁମୂର୍ତ୍ତି ୧୨ ଡିସେମ୍ବରରେ 'ଦି ଫାଇନସିଆଲ ଏକ୍ସପ୍ରେସ'ରେ ପ୍ରକାଶ କରିଛନ୍ତି ଯେ ଆଗାମୀ ୪-୫ ବର୍ଷରେ ୨୦୦୦ ଟଙ୍କିଆ ନୋଟ୍ ପ୍ରଚଳନ ବନ୍ଦ ହେବ ଓ ୫୦୦ ଟଙ୍କିଆ ନୋଟ୍ ସବୁଠାରୁ ବଡ଼ ନୋଟ୍‌ର ମାନ୍ୟତା ପାଇବ। ଗୁରୁମୂର୍ତ୍ତିଙ୍କ ଭଳି ବିଶିଷ୍ଟ ସାମ୍ବାଦିକ ପ୍ରକୃତ ସତ୍ୟକୁ ସାମନାକୁ ଆଣୁନାହାଁନ୍ତି। ବିମୁଦ୍ରାକରଣର ଆବଶ୍ୟକତା କାହିଁକି ହଠାତ୍ ଦରକାର ପଡ଼ିଲା ସେ ସମ୍ବନ୍ଧରେ ଚୁପ୍ ରହିଛନ୍ତି।

ବିଶିଷ୍ଟ ଅର୍ଥନୀତିଜ୍ଞ ପ୍ରଫେସର ପ୍ରଭାତ ପଟ୍ଟନାୟକ, ପ୍ରଶାନ୍ତ ଭୂଷଣ, ଅରୁଣା ରାୟ, ବେଜୱାଦା ଉଇଲସନ, ଜୟତୀ ଘୋଷ, ହର୍ଷ ମନ୍ଦର, କବିତା ଶ୍ରୀବାସ୍ତବ,

ସିପି ଚନ୍ଦ୍ରଶେଖର, ନିଖିଲ ଦେ, ସନ୍ଥ ସିହ୍ନା, ଅନିକେତ ଆଲମ, ଦୀପା ସିହ୍ନା ସରକାରଙ୍କ ଦୁର୍ନୀତି ବିରୋଧରେ ସଂଗ୍ରାମ, କଳାଧନକୁ ଲୋପ କରିବା, ଜାଲି ନୋଟ୍ ପ୍ରଚଳନକୁ ବନ୍ଦ କରି ଦେଶରେ ଆତଙ୍କବାଦ ଓ ଅରାଜକତାକୁ ଦୂର କରିବାରେ ସହମତ ଥିଲେ ମଧ୍ୟ ୫୦୦ ଓ ୧୦୦୦ ଟଙ୍କିଆ ନୋଟ୍ ପ୍ରଚଳନକୁ ବନ୍ଦ କରିବାଦ୍ୱାରା ସରକାରଙ୍କ ଉଦ୍ଦେଶ୍ୟ ସାଧିତ ହେବନାହିଁ ବୋଲି ମତ ପ୍ରଦାନ କରିଛନ୍ତି।

କେତେକ କହୁଛନ୍ତି ଯେ ନୋଟ୍ ଅଚଳ କରିବାର ପ୍ରଧାନ କାରଣ ହେଲା ଦେଶର ବ୍ୟାଙ୍କଗୁଡ଼ିକୁ ନଗଦ ଅର୍ଥ ଉପଲବ୍ଧ କରାଇବା। ଦେଶର ବଡ଼ବଡ଼ କର୍ପୋରେଟ୍‌ମାନଙ୍କ ବ୍ୟାଙ୍କ ଋଣ ଛଅ ଲକ୍ଷ କୋଟିକୁ ଛୁଇଁଛି। ଏହା ବ୍ୟାଙ୍କମାନଙ୍କୁ ଘୋର ସଂକଟରେ ପକାଇବା ସହିତ ସେମାନଙ୍କର ଋଣ ପ୍ରଦାନ କରିବାର କ୍ଷମତାକୁ ସୀମିତ କରିଦେଇଛି। ସରକାର ବ୍ୟାଙ୍କମାନଙ୍କୁ ତାଙ୍କର ଏହି ସଂକଟବେଳେ ଚଳିତବର୍ଷ ୨୩ ହଜାର କୋଟି ଟଙ୍କା ଉପଲବ୍ଧ କରାଇଛନ୍ତି। ବର୍ତ୍ତମାନ ନୋଟ୍ ଅଚଳ ଫଳରେ ଲୋକେ ନିଜ ପାଖରେ ରଖିଥିବା ସଂଚିତ ଧନକୁ ବ୍ୟାଙ୍କରେ ଜମା କରିବାକୁ ବାଧ୍ୟ ହୋଇଛନ୍ତି ଏବଂ ବ୍ୟାଙ୍କଗୁଡ଼ିକ ବିପୁଳ ଜମା ସଂଗ୍ରହ କରିବାରେ ସମର୍ଥ ହୋଇ ପୁନର୍ବାର ଋଣ ବଣ୍ଟନ କରିବାର ସାମର୍ଥ୍ୟ ହାସଲ କରିଛନ୍ତି। ମୋଦି ସରକାର ବର୍ତ୍ତମାନ କର୍ପୋରେଟ୍ ସଂସ୍ଥାମାନଙ୍କ ଉପରେ ରହିଥିବା ଋଣ ଓ ୮.୨୭ ଲକ୍ଷ କୋଟି ଟଙ୍କାର ଅନାଦେୟ ଟିକସକୁ ଆଦାୟ କରିବାର ଦାୟିତ୍ୱକତା ଦେଖାନ୍ତୁ ଏବଂ ଦେଶକୁ ପ୍ରତିଦିନ ନୂଆ ନୂଆ ଭେଲିକି ଯଥା କ୍ୟାସ୍‌ଲେସ୍ ସୋସାଇଟି, ମୋବାଇଲ ବ୍ୟାଙ୍କିଙ୍ଗ୍ ଓ ଡିଜିଟାଲ ପେମେଣ୍ଟ ଇତ୍ୟାଦି କଥା କହି ଆଉ ବିଭିନ୍ନ ସ୍ୱପ୍ନ ଦେଖାଇବାର ପ୍ରଚେଷ୍ଟା କରନ୍ତୁ ନାହିଁ। କାରଣ ଏକ ଇଂରାଜୀ Pro-verb ରହିଛି, You can fool all the people some of the time, and some of the people all the time, but you cannot fool all the people all the time.

*ସମାଜ - ୨୭.୧୨.୨୦୧୬*

# ମନର କିଛି କଥା ଓ ହୃଦୟର କିଛି ବ୍ୟଥା

ଆଜି ଓଡ଼ିଶାର ପ୍ରତିଷ୍ଠା ଦିବସ ସାରା ଓଡ଼ିଶାରେ ଓ ଯେଉଁ ସ୍ଥାନରେ ଓଡ଼ିଆମାନେ ବାସ କରୁଛନ୍ତି, ସେଠାରେ ପାଳିତ ହେଉଛି । ଏହି ଅବସରରେ ଖଣ୍ଡବିଖଣ୍ଡିତ ହୋଇ ବଙ୍ଗଳା, ବିହାର, ମାନ୍ଦ୍ରାଜ, ମଧ୍ୟପ୍ରଦେଶରେ ବିଛିନ୍ନ ହୋଇ ପଡ଼ିରହିଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ଏକତ୍ରିତ କରିବା ପାଇଁ ମହାମାନବ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ନେତୃତ୍ୱରେ ସଂଗଠିତ ହୋଇଥିବା ସଂଗ୍ରାମରେ ଝାସ ଦେଇଥିବା ଉତ୍କଳମଣି ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, ହରିହର ମର୍ଦ୍ଦରାଜ, ସ୍ୱଭାବ କବି ଗଙ୍ଗାଧର ମେହେର, ମଦନମୋହନ ମିଶ୍ର, ଶ୍ରୀପତି ମିଶ୍ର, ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୂପକାର, ମହନ୍ତ ବିହାରୀ ଦାସ, ନୀଳମଣି ବିଦ୍ୟାରତ୍ନ, ଭୁବନାନନ୍ଦ ଦାସ, ନୀଳକଣ୍ଠ ଦାସ, ରାମଚନ୍ଦ୍ର ମର୍ଦ୍ଦରାଜ, ରାଧାନାଥ ରଥ, ସ୍ୱାମୀ ବିଚିତ୍ରାନନ୍ଦ ଦାସ ପ୍ରଭୃତି ଅଗଣିତ ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ କୃତାଞ୍ଜଳିପୁଟରେ ପ୍ରଣାମ ଜଣାଇବା ଏବଂ ସେମାନଙ୍କ ପ୍ରଦର୍ଶିତ ପଥରେ ଆମ ରାଜ୍ୟକୁ ଆଗେଇ ନେବାପାଇଁ ଆଜି ଏହି ପବିତ୍ର ଦିବସରେ ଶପଥ ନେବା ।

ପ୍ରତ୍ୟେକ ଓଡ଼ିଆ ଜାଣି ଗର୍ବିତ ହେବା ଉଚିତ ଯେ ଜାତିର ପିତା ମହାତ୍ମା ଗାନ୍ଧୀଙ୍କର ମୁଧସୂଦନ ଦାସ ଜଣେ ମାର୍ଗଦର୍ଶକ ଥିଲେ ଏବଂ ଅନେକ କ୍ଷେତ୍ରରେ ମହାତ୍ମା ଗାନ୍ଧୀ ମଧୁସୂଦନ ଦାସଙ୍କୁ ତାଙ୍କର ଗୁରୁ ବୋଲି ଭାବି ସମ୍ମାନ ପ୍ରଦର୍ଶନ କରୁଥିଲେ । କେତୋଟି କାର୍ଯ୍ୟ ଯାହା ମହାତ୍ମା ଗାନ୍ଧୀଙ୍କୁ ଜନାଦୃତ କରିଥିଲା ସେହି କାର୍ଯ୍ୟଗୁଡ଼ିକ ମଧୁସୂଦନ ଦାସ ଓଡ଼ିଶାରେ ବହୁ ପୂର୍ବରୁ ଆରମ୍ଭ କରି ସଫଳ ହୋଇଥିଲେ । ଏଠାରେ ଦୁଇଟି କାର୍ଯ୍ୟର ଉଲ୍ଲେଖ କରିବା ସମୀଚୀନ ହେବ । ମହାତ୍ମା ଗାନ୍ଧୀ ୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖରେ ଲବଣ ସତ୍ୟାଗ୍ରହ ଆରମ୍ଭ କରିଥିଲେ । ଅହମଦାବାଦଠାରୁ ୩୨୦ କିଲୋମିଟର ଗୁଜୁରାଟ ଉପକୂଳ ଦାଣ୍ଡିକୁ ଯାତ୍ରା ଆରମ୍ଭ କରିଥିଲେ । ତାଙ୍କ ସହିତ ଓଡ଼ିଶାରୁ ମୋତି ଦାସ ନାମକ ଜଣେ ୨୦ ବର୍ଷ ବୟସ୍କ ଛାତ୍ର ଯାଇଥିବା ଜଣାଯାଏ । କିନ୍ତୁ ତା'ର ବହୁପୂର୍ବରୁ ମଧୁସୂଦନ ଦାସ ଓଡ଼ିଶାରେ ବ୍ରିଟିଶ ସରକାର ଜାରି କରିଥିବା ଲବଣ ଆଇନ ବିରୋଧରେ ଜନସଚେତନତା ସୃଷ୍ଟି କରିଥିଲେ । ସେହିପରି ଗାନ୍ଧିଜୀ

ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟକ୍ରମ ଆରମ୍ଭ କରିବା ବେଳକୁ ମଧୁସୂଦନ ନିଜ 'ଉତ୍କଳ ଟ୍ୟାନେରୀ'ରେ ହରିଜନମାନଙ୍କୁ ସାମିଲ କରାଇ ତାହାର ଶୁଭାରମ୍ଭ କରିସାରିଥିଲେ। ଏହିପରି ଅନେକ ଦୃଷ୍ଟାନ୍ତ ରହିଛି ଯାହାକୁ ନେଇ କୁହାଯାଇପାରିବ ଯେ ବହୁ କ୍ଷେତ୍ରରେ ଓ କାର୍ଯ୍ୟରେ ମହାତ୍ମା ଗାନ୍ଧୀଙ୍କଠାରୁ ମଧୁସୂଦନ ଅଗ୍ରଣୀ ଥିଲେ। ୧୯୨୫ ମସିହା ଅଗଷ୍ଟ ୧୯ ତାରିଖ ଦିନ ମହାତ୍ମା ଗାନ୍ଧୀ କଟକ ଆସି ମଧୁସ୍ମୃତିରେ ଅବସ୍ଥାନ କରିଥିଲେ ଏବଂ ଉତ୍କଳ ଟ୍ୟାନେରୀ ଦେଖି ସ୍ତମ୍ଭୀଭୂତ ହୋଇଯାଇଥିଲେ। ୧୯୩୩ ମସିହା ସେପ୍ଟେମ୍ବର ମାସ ୩ ତାରିଖରେ ହରିଜନ ପତ୍ରିକାରେ ମହାତ୍ମା ଗାନ୍ଧୀ ହରିଜନ କର୍ମୀମାନଙ୍କୁ ପରାମର୍ଶ ଦେଇ ଲେଖିଥିଲେ, "…. ମଧୁସୂଦନ ଦାସ କ'ଣ କରୁଥିଲେ? ସେ ଉତ୍କଳର ସମସ୍ତ କାରିଗରଙ୍କୁ ଏକତ୍ରିତ କରିଥିଲେ। ବହୁତ ହରିଜନ ମଧୁସୂଦନ ଦାସଙ୍କ ତତ୍ତ୍ୱାବଧାନରେ ରହି ଏହି ଚମଡ଼ା ଶିଳ୍ପର କାର୍ଯ୍ୟ ସଫଳତାର ସହ ଶିକ୍ଷା କରୁଥିଲେ। ମଧୁସୂଦନ ଦାସଙ୍କ ପରି ତୁମେ ମଧ ଏହି କାର୍ଯ୍ୟରେ ପାରଦର୍ଶିତା ଲାଭ କର।" ମହାତ୍ମା ଗାନ୍ଧୀ ୧୯୩୪ ମସିହା ସେପ୍ଟେମ୍ବର ମାସ ୭ ତାରିଖରେ ପ୍ରକାଶିତ 'ହରିଜନ' ପତ୍ରିକାରେ ଲେଖିଥିଲେ, "…. ମଣିଷ ସମାଜର ଏକ ଅଂଶ ପ୍ରତି ଆମେ ଯେଉଁ ଅବିଚାର କରିଚାଲିଛେ, ସ୍ୱର୍ଗତ ମଧୁସୂଦନ ଦାସ ସେ ସମ୍ପର୍କରେ ମୋର ଆଖି ଖୋଲି ଦେଇଥିଲେ। ଆଉ ଆମେ ଯେଉଁ ଅପରାଧ କରିଚାଲିଛେ, ତା'ର ପ୍ରାୟଶ୍ଚିତ ଓ ନିରାକରଣ ପାଇଁ ସେ ଗୋଟିଏ ଶିକ୍ଷାମୂଳକ ଟ୍ୟାନେରୀ ଖୋଲିଥିଲେ। ତାଙ୍କର ଏହି ଉଦ୍ୟୋଗ ଆଶାତୀତ ସଫଳତା ହାସଲ କରି ନଥିଲେ ମଧ ସେ କଟକରେ ଶହ ଶହ ଜୋତା କାରିଗରଙ୍କୁ ଉନ୍ନତ ଜୀବନ ଧାରଣର ପନ୍ଥା ଯୋଗାଇବାର ଗୁରୁ ଦାୟିତ୍ୱ ବହନ କରି ଚାଲିଗଲେ।"

ମହାତ୍ମା ଗାନ୍ଧୀ ଏକଦା ମୁକ୍ତ କଣ୍ଠରେ ସ୍ୱୀକାର କରିଥିଲେ ଯେ, ତାଙ୍କ ପାଇଁ ମଧୁସୂଦନ ଥିଲେ ଦ୍ୱିତୀୟ ଟଲଷ୍ଟୟ। ଗାନ୍ଧିଜୀ ଏ ବାବଦରେ ୧୯୩୭ ମସିହା ଅକ୍ଟୋବର ମାସ ୩୧ ତାରିଖରେ ହରିଜନ ପତ୍ରିକାରେ ଉଲ୍ଲେଖ କରିଥିଲେ, "ମଧୁସୂଦନ ଜଣେ ଆଇନଜୀବୀ ଥିଲେ। ତାଙ୍କର ଦୃଢ଼ ଆତ୍ମପ୍ରତ୍ୟୟ ଓ ସିଦ୍ଧାନ୍ତ ଥିଲା ଯେ ଆମ୍ଭମାନଙ୍କର ହାତ ଓ ପାଦ ବିଧିବଦ୍ଧ ଭାବରେ ଯଦି ନିୟୋଜିତ ନହୁଏ ତା'ହେଲେ ତାହା ସଇତାନର ଆଡ଼୍‌ଡାସ୍ଥଳୀରେ ପରିଣତ ହେବ। ଟଲଷ୍ଟୟ ମଧ ଏହି ବାର୍ତ୍ତା ତାଙ୍କ ରଚିତ ଅସଂଖ୍ୟ ଗଳ୍ପମାନଙ୍କରେ ପ୍ରଚାର କରିଯାଇଛନ୍ତି।"

ବାସ୍ତବରେ ଦେଖିବାକୁ ଗଲେ ବିଶ୍ୱର ପ୍ରବାଦପୁରୁଷ କାଉଣ୍ଟ ଲିଓ ଟଲଷ୍ଟୟ ଏବଂ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ପ୍ରାଣପ୍ରତିଷ୍ଠାତା ମଧୁସୂଦନଙ୍କ ମଧରେ ଅନେକ

ସାମଞ୍ଜସ୍ୟ ରହିଥିଲା । ଟଲଷ୍ଟୟ ୧୮୨୮ ମସିହା ଅଗଷ୍ଟ ମାସ ୨୮ ତାରିଖରେ ଜନ୍ମଗ୍ରହଣ କରିଥିବା ବେଳେ ମଧୁସୂଦନଙ୍କର ଜନ୍ମ ତାହାର ୨୦ ବର୍ଷ ପରେ ଅର୍ଥାତ୍ ୧୮୪୮ ମସିହା ଏପ୍ରିଲ ୨୮ ତାରିଖରେ ହୋଇଥିଲା । ଟଲଷ୍ଟୟଙ୍କୁ ଘରେ ନୁହେଁ, ମୃତ ଅବସ୍ଥାରେ ଗୋଟିଏ ଟ୍ରେନ୍ କମ୍ପାର୍ଟମେଣ୍ଟରୁ ଉଦ୍ଧାର କରାଯାଇଥିବା ବେଳେ ମୃତ୍ୟୁ ବେଳକୁ ମଧୁସୂଦନ ନିଃସ୍ୱ ହୋଇ ଯାଇଥିଲେ । ତାଙ୍କର ଘର ନ ଥିଲା । କିଛିବର୍ଷ ଆଗରୁ ତାଙ୍କୁ ଅଦାଲତ ଦେବାଳିଆ ଘୋଷଣା କରିଥିଲେ । ମହାତ୍ମା ଗାନ୍ଧୀ ଏକଦା ଉଲ୍ଲେଖ କରିଥିଲେ, "ଟଲଷ୍ଟୟ ବିଶ୍ୱାସ କରୁଥିଲେ ଯେ ଐଶ୍ୱରୀୟ ନିୟମ ହେଉଛି, ଜଣେ ବ୍ୟକ୍ତି ତାହାର ଖାଦ୍ୟ ନିଜର ହସ୍ତର ଶ୍ରମ ମାଧ୍ୟମରେ ଉପାର୍ଜନ କରିବା ଉଚିତ।" ୧୯୨୪ ମସିହାରେ ମଧୁସୂଦନ ପାଟଣାଠାରେ ବକ୍ତବ୍ୟ ଦେଇ କହିଥିଲେ, "ଜଣେ ବ୍ୟକ୍ତି ଯେଉଁ ହାତରେ ରୁଟି ଖାଏ, ସେହି ହାତରେ ହିଁ ତାକୁ ସେହି ରୁଟି ଉପାର୍ଜନ କରିବାକୁ ପଡ଼ିବ।" ୧୯୨୫ ମସିହାରୁ ୧୯୩୮ ମସିହା ପର୍ଯ୍ୟନ୍ତ ମଧୁସୂଦନଙ୍କୁ ନିଜର ମାର୍ଗଦର୍ଶକ ରୂପେ ଅଭିହିତ କରି ଗାନ୍ଧିଜୀ ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ନାମ ଉଲ୍ଲେଖ କରିଥିଲେ । ତାଙ୍କୁ ସେ ଜଣେ ମହାନ ଦେଶବତ୍ସଳ ଜନନାୟକ ବୋଲି ବର୍ଣ୍ଣନା କରିଥିଲେ । ଦେଶର ତରୁଣମାନଙ୍କୁ ଶ୍ରମର ମର୍ଯ୍ୟାଦା ସମ୍ପର୍କରେ ଶିକ୍ଷା ଦେବାକୁ ଯାଇ ମଧୁସୂଦନ ନିଜକୁ ନିଃଶେଷ କରି ଦେଇଥିଲେ ବୋଲି ଗାନ୍ଧିଜୀ କହିଛନ୍ତି ।

୧୯୩୩ ମସିହା ଫେବୃଆରୀ ୧୩ ତାରିଖରେ ଓଡ଼ିଆ ଜାତି ଉଦ୍ଦେଶ୍ୟରେ ମଧୁସୂଦନ ଦାସ ଶ୍ରୀରାମଚନ୍ଦ୍ର ଭବନଠାରେ ଦେଇଥିବା ଭାଷଣ ଅତ୍ୟନ୍ତ ମର୍ମସ୍ପର୍ଶୀ ଥିଲା । ୯୦ ମିନିଟ୍ କାଳ ଭାଷଣ ଲୋକମାନେ ମନ୍ତ୍ରମୁଗ୍ଧ ହୋଇ ଶୁଣୁଥିଲେ ଏବଂ ତାଙ୍କର ଅଭିଜ୍ଞତାରୁ ସତ୍‌ପଥରେ ରହି ସଂଗ୍ରାମ କଲେ ସଫଳତା ଆପେ ଆପେ ଆସେ ବୋଲି ଦୃଢ଼ତାର ସହିତ କହିଥିଲେ । ଶିଳ୍ପ ଓ କୃଷିକୁ ଗୁରୁତ୍ୱ ଦେଇ କାର୍ଯ୍ୟ କଲେ ରାଜ୍ୟ ସମୃଦ୍ଧ ହୋଇପାରିବ ବୋଲି ସେ ଆଶାପୋଷଣ କରିଥିଲେ ।

ସ୍ୱାମୀ ବିବେକାନନ୍ଦ ଯେଭଳି ୧୮୯୩ ମସିହା ସେପ୍ଟେମ୍ବର ୧୧ ତାରିଖରେ ଚିକାଗୋଠାରେ ଅନୁଷ୍ଠିତ 'ଧର୍ମ ମହାସଭା'ରେ ଭାରତକୁ ଓ ହିନ୍ଦୁଧର୍ମକୁ ବିଶ୍ୱରେ ଏକ ଆଦରଣୀୟ ସ୍ଥାନରେ ପହଞ୍ଚାଇଥିଲେ, ସେହିଭଳି ୧୮୯୭ ମସିହାରେ ମଧୁସୂଦନ ଦାସ ବିଲାତ ଯାଇ ଲଣ୍ଡନରେ ଭାରତ ସଚିବ ହାମିଲଟନ୍‌ଙ୍କ ପାଖେ ବିଚ୍ଛିନ୍ନ ଓଡ଼ିଶା ଅଞ୍ଚଳର ଦାବୀ ଓ ସେଠାରେ ଓଡ଼ିଶା ସ୍ୱଦେଶୀ ଶିଳ୍ପର ପ୍ରଦର୍ଶନୀ ଆୟୋଜନ କରି ଓଡ଼ିଆ ଏକ ସମୃଦ୍ଧ ଜାତି ବୋଲି ବିଲାତବାସୀଙ୍କ ଆଗରେ ଯେଉଁ ପ୍ରମାଣ ଦେଇଥିଲେ

ତାହା ସମସ୍ତଙ୍କୁ ଆଚମ୍ବିତ କରିଥିଲା। ବିଲାତରେ ରହଣି ସମୟରେ ତାଙ୍କ କାର୍ଯ୍ୟକଳାପ ବିଷୟରେ ଲଣ୍ଡନର ସମ୍ବାଦପତ୍ର 'ଲଣ୍ଡନ ଟାଇମ୍ସ'ରେ ପ୍ରକାଶିତ ହୋଇଥିଲା। ଏହା ଓଡ଼ିଆଙ୍କ ପାଇଁ ଏକ ଗୌରବ ଏବଂ ସେ ଓଡ଼ିଶାର ଗୌରବ ବଢ଼ାଇଥିବାରୁ ସେତେବେଳର ବିଖ୍ୟାତ ଓଡ଼ିଆ ପତ୍ରିକା 'ଉତ୍କଳ ଦୀପିକା' ତାଙ୍କୁ 'ଉତ୍କଳ ଗୌରବ' ଉପାଧିରେ ଭୂଷିତ କରିଥିଲା। ୧୯୦୦ ମସିହାରେ ମଧୁସୂଦନଙ୍କ ନିବେଦନରେ ଲର୍ଡ଼ କର୍ଜନଙ୍କର ଭୁବନେଶ୍ୱର ଓ କୋଣାର୍କ ମନ୍ଦିର ପରିଦର୍ଶନ ତାଙ୍କର ଓଡ଼ିଶା ପ୍ରତି ବିଶେଷ ଶ୍ରଦ୍ଧାର କାରଣ ହୋଇଥିଲା। ଲର୍ଡ଼ କର୍ଜନ ଭାରତରୁ ବିଲାତ ଫେରିଯିବା ପରେ ମଧ ଓଡ଼ିଆ ଭାଷାଭାଷୀଙ୍କର ଏକ ସ୍ୱତନ୍ତ୍ର ରାଜ୍ୟ ପ୍ରତିଷ୍ଠା ଏକାନ୍ତ ଆବଶ୍ୟକ ବୋଲି ତାଙ୍କର ମତ ବ୍ୟକ୍ତ କରୁଥିଲେ।

ଓଡ଼ିଶା ପ୍ରଦେଶ ଗଠନର ଏକାଅଶୀ ବର୍ଷ ବିତିଯାଇଥିଲେ ମଧ ଓଡ଼ିଶା ଅତ୍ୟନ୍ତ ମନ୍ଥର ଗତିରେ ଆଗକୁ ବଢ଼ୁଛି। ଏହାର ପ୍ରଧାନ କାରଣ ହେଉଛି ଦୁର୍ନୀତି ଓଡ଼ିଶାରେ ମହାମାରୀ ପରି ବ୍ୟାପିଛି। ଯେଉଁ ଭାଷାକୁ ଆୟୁଧ କରି ଓଡ଼ିଶା ପ୍ରଦେଶ ଜନ୍ମ ନେଇଥିଲା, ସେହି ଭାଷାର ସୁରକ୍ଷା ପାଇଁ ଆଜି ମଧ ଆନ୍ଦୋଳନ ଚାଲିଛି। ଓଡ଼ିଶାରେ ଓଡ଼ିଆ ଭାଷାର ପ୍ରଚଳନ ପାଇଁ ଆନ୍ଦୋଳନ କରିବାର ଆବଶ୍ୟକତା ଯେତିକି ଦୁଃଖଦାୟକ ଓଡ଼ିଆ ଭାଷା ପ୍ରତି ରାଜ୍ୟ ସରକାରଙ୍କ ଉଦାସୀନ ଭାବ ତତୋଧିକ ମର୍ମାନ୍ତକ। ଶିଳ୍ପ, କୃଷି, ଶିକ୍ଷା ପ୍ରଭୃତି ସମ୍ପର୍କରେ ମଧୁସୂଦନ ଦାସଙ୍କ ଆଭିମୁଖ୍ୟ ଅତ୍ୟନ୍ତ ପ୍ରାସଙ୍ଗିକ ଏବଂ ମଣିଷକୁ ସ୍ୱାବଲମ୍ବୀ କରିବାରେ ଅତ୍ୟନ୍ତ ସହାୟକ ବୋଲି ଭାରତର ବହୁ ମନିଷୀ ସ୍ୱୀକାର କରିଥିଲେ। ମଧୁସୂଦନଙ୍କ ପରି ବିଜୁ ପଟ୍ଟନାୟକ ଶିଳ୍ପର ବିକାଶ ପାଇଁ ଅନବରତ ଉଦ୍ୟମ ଜାରି ରଖିଥିଲେ। ଓଡ଼ିଶାର ପ୍ରତ୍ୟେକ ପଞ୍ଚାୟତରେ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରିବାକୁ ସେ ପ୍ରଚେଷ୍ଟା କରିଥିଲେ। ବିଜୁବାବୁ ନିଜେ ଶିଳ୍ପ ପ୍ରତିଷ୍ଠା କରିବା ସହିତ ସରକାରୀ ଉଦ୍ୟମରେ ଶିଳ୍ପମାନ ପ୍ରତିଷ୍ଠା କରାଇଥିଲେ। ଉଦୀୟମାନ ଯୁବକମାନଙ୍କୁ ଶିଳ୍ପାୟନ ପାଇଁ ଆକୃଷ୍ଟ କରାଇ ଓଡ଼ିଶାବାସୀଙ୍କୁ ସ୍ୱଚ୍ଛଳ କରିବାକୁ ଚାହୁଁଥିଲେ। ମଧୁସୂଦନ ଦାସଙ୍କ ଭଳି ବିଜୁବାବୁଙ୍କ ଧମନୀରେ ଓଡ଼ିଶାର ଶିଳ୍ପାୟନ ପାଇଁ ଅହରହ ଉଷ୍ମ ରକ୍ତ ପ୍ରବାହିତ ହେଉଥିଲା। ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଲୋକମାନେ ଦାରିଦ୍ର୍ୟବିହୀନ ଓଡ଼ିଶାର ସ୍ୱପ୍ନ ଦେଖିଥିଲେ। ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ହଜାର ଦିନରେ ହଜାର ଶିଳ୍ପ ପ୍ରତିଷ୍ଠା କରିବାର ଯୋଜନା ହୋଇଥିଲା। କେତେକାଂଶରେ ଏହା ସଫଳ ମଧ ହେଲା। ୨୦୦୦ ମସିହାରୁ

୨୦୧୬ ମସିହା ପର୍ଯ୍ୟନ୍ତ ସରକାର ବିଭିନ୍ନ ଦେଶୀ ଓ ବିଦେଶୀ ପ୍ରତିଷ୍ଠିତ କମ୍ପାନୀମାନଙ୍କ ସହିତ ବୁଝାମଣା ପତ୍ର ସ୍ୱାକ୍ଷର କରି ଓଡ଼ିଶାକୁ ଶିଳ୍ପ ସମୃଦ୍ଧ କରିବାକୁ ଚେଷ୍ଟା କରୁଛନ୍ତି। କିନ୍ତୁ ଓଡ଼ିଶା ଯେଉଁ ତିମିରରେ ଥିଲା ସେହି ତିମିରରେ ରହିଛି। ବର୍ତ୍ତମାନର ସରକାର ୫୨ ହଜାର କୋଟି ଟଙ୍କା ଓଡ଼ିଶାରେ ନିବେଶ କରିବାକୁ ପ୍ରସ୍ତୁତ ଥିବା ପୋହାଙ୍ଗ ଷ୍ଟିଲ କମ୍ପାନୀର ପ୍ରକଳ୍ପ କାର୍ଯ୍ୟକାରୀ କରିବାରେ ବିଫଳ ହୋଇଥିବା ଅତ୍ୟନ୍ତ କ୍ଷୋଭର ବିଷୟ।

କୃଷିକୁ ଜୀବିକା ଭାବେ ପୁରୁଷ ପୁରୁଷ ଧରି ଆପଣେଇ ନେଇଥିବା ଲୋକେ ଏବେ କୃଷିକ୍ଷେତ୍ରକୁ ପଡ଼ିଆ ପକାଇବାକୁ ଶ୍ରେୟ ମଣୁଛନ୍ତି। କାରଣ ସେମାନେ ଉତ୍ପାଦନ କରୁଥିବା ଫସଲର ଉପଯୁକ୍ତ ମୂଲ୍ୟ ପାଉ ନାହାଁନ୍ତି। ୨୦୦୦ ମସିହାରୁ ୨୦୧୪ ମସିହା ମଧ୍ୟରେ କୃଷିକୁ ଜୀବିକା କରିଥିବା ୩,୪୩୯ ଜଣ ବ୍ୟକ୍ତି ଆତ୍ମହତ୍ୟା କରିଛନ୍ତି। ନିଯୁକ୍ତି କ୍ଷେତ୍ରରେ ଯୁବକଯୁବତୀମାନଙ୍କ ମଧ୍ୟରେ ଏକ ହତାଶା ଭାବ ଦେଖାଦେଇଛି। କର୍ମସଂସ୍ଥାନ ପାଇଁ ୧୨ ଲକ୍ଷ ବେକାର ସେମାନଙ୍କ ନାମ ପଞ୍ଜିକରଣ କରି ନିଯୁକ୍ତି ଅପେକ୍ଷାରେ ରହିଛନ୍ତି। ରାଜ୍ୟରେ ଆଇନ ଶୃଙ୍ଖଳା ପରିସ୍ଥିତି ମଧ୍ୟ ଉଦ୍‌ବେଗଜନକ।

ଭାରତ ସରକାର ଓଡ଼ିଶା ପ୍ରତି କ୍ରମାନ୍ୱୟ ଭାବରେ ବୈମାତୃକ ଭାବ ପୋଷଣ କରିଆସୁଛନ୍ତି। ଏଥିରେ ବିବ୍ରତ ହୋଇ ବିଜୁ ପଟ୍ଟନାୟକ ତାଙ୍କ ଦ୍ୱିତୀୟ ପାଳି ମୁଖ୍ୟମନ୍ତ୍ରୀତ୍ୱ ସମୟରେ କେନ୍ଦ୍ରଠାରୁ ଅର୍ଥନୈତିକ ସ୍ୱାଧୀନତା ଦାବୀ କରିଥିଲେ। ପ୍ରକୃତିର କୋପ (ବଢ଼ି, ମରୁଡ଼ି, ବାତ୍ୟା) ଯୋଗୁଁ ଓଡ଼ିଶା କେନ୍ଦ୍ରର ବିନା ସାହାଯ୍ୟରେ ଉଠେଇ ପାରୁନାହିଁ। ଓଡ଼ିଶାକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ଦେବାକୁ ୧୯୭୯ ମସିହାରୁ ନିରବଚ୍ଛିନ୍ନ ଭାବେ ଦାବୀ ହେଉଥିଲେ ମଧ୍ୟ କେନ୍ଦ୍ର ତାହାକୁ ଅଗ୍ରାହ୍ୟ କରୁଛି। ଓଡ଼ିଶା ଭଳି ସବୁଠାରୁ କମ୍ ବିକଶିତ ରାଜ୍ୟକୁ ସ୍ୱତନ୍ତ୍ର ଅନୁଦାନ ଦିଆଗଲା ନାହିଁ। ଅଥଚ ସ୍ୱତନ୍ତ୍ର ପାହ୍ୟା ରାଜ୍ୟ ବଦଳରେ ବିହାରକୁ ୧ ଲକ୍ଷ ୨୫ ହଜାର କୋଟି ଟଙ୍କାର ସ୍ୱତନ୍ତ୍ର ପ୍ୟାକେଜ ଦିଆଗଲା। ରାଜ୍ୟ ବିଭାଜନ ପରେ ଆନ୍ଧ୍ରପ୍ରଦେଶ ପାଇଁ ସ୍ୱତନ୍ତ୍ର ପ୍ୟାକେଜ ଘୋଷଣା କରାଗଲା। ଏହା ଏକ ଐତିହାସିକ ବିଡ଼ମ୍ବନା ଯେ ବିଗତ ଶତାବ୍ଦୀର ସ୍ୱତନ୍ତ୍ର ରାଜ୍ୟ ଗଠନଠାରୁ ଆଜି ପର୍ଯ୍ୟନ୍ତ ବିଭିନ୍ନ ପ୍ରସଙ୍ଗରେ କେନ୍ଦ୍ର ସରକାର ଓଡ଼ିଶାର ସ୍ୱାର୍ଥରକ୍ଷା ପାଇଁ ସବୁବେଳେ ବିଫଳ ହୋଇଛନ୍ତି। ଏହା ଚର୍ଚ୍ଚା ହୁଏ ଯେ ଯଦି ଏପ୍ରିଲ ପହିଲା ୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇନଥାନ୍ତା, ତେବେ ତାହା ସ୍ୱାଧୀନ ଭାରତରେ କେବେ ବି ସ୍ୱତନ୍ତ୍ର ପ୍ରଦେଶ ହୋଇପାରି ନଥାନ୍ତା।

*ଓଡ଼ିଶା ଭାସ୍କର - ୨୪.୪.୨୦୧୭*

# ଆଇନଜୀବୀଙ୍କ ସମାଜ ପ୍ରତି ଅଙ୍ଗୀକାର

ଏପ୍ରିଲ ୨୮, ୧୮୪୮ ମସିହାରେ ଜନ୍ମଗ୍ରହଣ କରିଥିଲେ ପ୍ରଥମ ଓଡ଼ିଆ ଓକିଲ ମଧୁସୂଦନ ଦାସ। ତାଙ୍କଭଳି ବିଚକ୍ଷଣ ଆଇନଜ୍ଞ, ଦେଶସେବକ, ଦରିଦ୍ର ଜନସାଧାରଣଙ୍କ ତ୍ରାଣକର୍ତ୍ତା, ଜାତୀୟବାଦୀ ନେତାଙ୍କର ଜନ୍ମଦିବସକୁ 'ଆଇନଜୀବୀ ଦିବସ' ରୂପେ ପାଳନ କରିବା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ।

ବାଲ୍ୟକାଳରୁ ବହୁ ଘାତପ୍ରତିଘାତ ମଧ୍ୟରେ ନିଜ ମାତା ପାର୍ବତୀ ଦେବୀଙ୍କର ପଦେକଥା 'ଆଲୋ ସଖି ଆପଣା ମହତ ଆପେ ରଖି' ଓ ପିତାମହୀ କୃଷ୍ଣା ଦେଈ କିଭଳି ଅତ୍ୟନ୍ତ ଦୃଢ଼ମନା ହୋଇ ସ୍ୱଇଚ୍ଛାରେ ଜଳନ୍ତା ଚିତାଗ୍ନିରେ ବସି ସତୀ ହୋଇଯାଇଥିଲେ ତାହା ମଧୁସୂଦନଙ୍କୁ ସତ୍ୟନିଷ୍ଠ, କଷ୍ଟସହିଷ୍ଣୁ, ନିର୍ଭୀକ ଓ ନିଜ ଲକ୍ଷ୍ୟରେ ଅବିଚଳିତ ରହିବାକୁ ସମର୍ଥ କରିଥିଲା। ନିଜ ଗ୍ରାମ ଚାଟଶାଳୀରେ ପ୍ରାଥମିକ ଶିକ୍ଷା ପରେ ସେ ସତ୍ୟଭାମାପୁର ନିକଟବର୍ତ୍ତୀ ମହାସିଂହପୁରର ମିଡିଲ ଭର୍ଣ୍ଣାକୁଲାର ସ୍କୁଲରେ ପଢ଼ିଲେ। ତା'ପରେ କଟକର ଜିଲ୍ଲା ସ୍କୁଲ (ବର୍ତ୍ତମାନର ରେଭେନ୍ସା କଲେଜିଏଟ୍ ସ୍କୁଲ)ରେ ତାଙ୍କ ପିତା ରଘୁନାଥ ଦାସ ଆଣି ତାଙ୍କୁ ପଢ଼ାଇଲେ। ସେହି ସ୍କୁଲରୁ ଏଣ୍ଟ୍ରାନ୍ସ (ଏବର ମ୍ୟାଟ୍ରିକ୍ୟୁଲେସନ) ପାଶ୍ କରି ସେ କଲିକତା ଚାଲିଗଲେ। ୧୮୬୬ ମସିହାରେ ପଢୁଥିବା ସମୟରେ ଆଲେକଜାଣ୍ଡାର ଡଫ୍ ନାମକ ଜଣେ ଖ୍ରୀଷ୍ଟିଆନ ପାଦ୍ରୀଙ୍କ ଭାଷଣରେ ପ୍ରଭାବିତ ହୋଇ ପିତା ରଘୁନାଥ ଦାସଙ୍କର ପ୍ରବଳ ବିରୋଧ ସତ୍ତ୍ୱେ ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ। ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରି ଖ୍ରୀଷ୍ଟିଆନ ହୋଇଥିଲେ ଏକଥା ସତ, ହେଲେ ସେ 'ଚର୍ଚ୍ଚିଆନ୍' ନ ଥିଲେ ଏବଂ ସବୁ ଧର୍ମର ଦେବଦେବୀଙ୍କୁ ସମ୍ମାନ କରୁଥିଲେ। ହିନ୍ଦୁଧର୍ମ, ଓଡ଼ିଶାର ଜନସାଧାରଣ, ଇତିହାସ, ସଂସ୍କୃତି, ପରମ୍ପରା ପ୍ରତି ତାଙ୍କର ଯଥେଷ୍ଟ ସମ୍ମାନ ଥିଲା।

କଲିକତାରୁ ୧୮୭୦ ମସିହାରେ ବି.ଏ ପାଶ୍ କରି ପ୍ରଥମ ଓଡ଼ିଆ ଗ୍ରାଜୁଏଟ୍ ହେବାର ବିରଳ ସମ୍ମାନର ଅଧିକାରୀ ହୋଇଥିଲେ। ୧୮୭୩ ମସିହାରେ ମଧୁସୂଦନ ଇଂରାଜୀ ଭାଷା ସାହିତ୍ୟରେ ଏମ୍.ଏ ପରୀକ୍ଷାରେ କୃତକାର୍ଯ୍ୟ ହେବାପରେ ଖିଦିରିପୁର ଗାର୍ଡ଼େନ୍‌ରିଚ୍ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବେ ପ୍ରଥମେ କାର୍ଯ୍ୟ ଆରମ୍ଭ କରିଥିଲେ।

୧୮୭୮ ମସିହାରେ ସେ ଓକିଲାତି ପାଶ୍ କଲେ ଏବଂ କଲିକତାର ବିଭିନ୍ନ ଅଦାଲତମାନଙ୍କରେ ଆଇନ ବ୍ୟବସାୟ ଆରମ୍ଭ କରିଦେଲେ। ଓକିଲାତି କରୁଥିବା ସମୟରେ ସେ ଅନୁଭବ କଲେ ଯେ ଏହି ଆଇନ ବ୍ୟବସାୟ ଦ୍ୱାରା ସେ ଅର୍ଥ ଉପାର୍ଜନ କରିବା ସହିତ ଅବହେଳିତ, ଅତ୍ୟାଚାରିତ, ଦରିଦ୍ର ଲୋକମାନଙ୍କର ସେବା ମଧ୍ୟ କରିପାରିବେ। ସ୍ୱାଧୀନ ଭାବରେ, ସ୍ୱାବଲମ୍ବୀ ଭାବରେ ଓ ଏକ ଆତ୍ମମର୍ଯ୍ୟାଦାସମ୍ପନ୍ନ ଜୀବନଯାପନ କେବଳ ଆଇନଜୀବୀ ଭାବରେ ସମ୍ଭବ ବୋଲି ତାଙ୍କର ହୃଦ୍‌ବୋଧ ହୋଇଥିଲା। ଆଇନ ବ୍ୟବସାୟକୁ ସେ ଅତି ମର୍ଯ୍ୟାଦାଜନକ ପେସା ରୂପେ ବିବେଚନା କରି ସେହି ବୃତ୍ତିରେ ସାରାଜୀବନ ନିଜକୁ ନିୟୋଜିତ କରିଥିଲେ।

କଲିକତା ରହଣି ସମୟରେ ଓଡ଼ିଆମାନଙ୍କର ଦୁର୍ଦ୍ଦଶା ତାଙ୍କୁ ବ୍ୟଥିତ କରୁଥିଲା। ସେ ଖିଦିରିପୁରଠାରେ ଏକ ନୈଶ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ ଏବଂ ଓଡ଼ିଆମାନଙ୍କୁ ନିଜ ସାଧମତେ ସାହାଯ୍ୟ କରୁଥିଲେ। ବିବାହର ମାତ୍ର ପାଞ୍ଚବର୍ଷ ପରେ ୧୮୭୮ ମସିହାରେ ତାଙ୍କ ପତ୍ନୀ ସୌଦାମିନୀଙ୍କ ମୃତ୍ୟୁ ଘଟିଥିଲା। ପରେ ସେ ଓଡ଼ିଶା ଭୂଖଣ୍ଡରେ ଓଡ଼ିଆମାନଙ୍କ ସ୍ୱାର୍ଥରକ୍ଷା କରିବାକୁ ନିଷ୍ପତ୍ତି ଗ୍ରହଣ କରି ୧୮୮୧ ମସିହାରେ ସବୁଦିନ ପାଇଁ ଓଡ଼ିଶା ପ୍ରତ୍ୟାବର୍ତ୍ତନ କଲେ ଏବଂ ଓଡ଼ିଆମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ନିଜ ବ୍ୟକ୍ତିଗତ ଜୀବନର ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟକୁ ତ୍ୟାଗକରି ଜାତୀୟ ଜୀବନକୁ ସବୁକ୍ଷେତ୍ରରେ ଅଗ୍ରାଧିକାର ଦେଇ ଦେଶ କାର୍ଯ୍ୟରେ ନିଜକୁ ନିୟୋଜିତ କଲେ।

ମଧୁସୂଦନଙ୍କର ଦକ୍ଷତା, କଠିନ ପରିଶ୍ରମ, ସମୟାନୁବର୍ତ୍ତିତା, ବୁଦ୍ଧିମତା ଓ ଉଚ୍ଚାଭିଳାଷ ଯୋଗୁଁ ତାଙ୍କୁ ଏକ ଆଲୋକବର୍ତ୍ତିକା ଭାବରେ ଓଡ଼ିଆମାନେ ଗ୍ରହଣ କଲେ। ମଧୁସୂଦନ ଦାସ ନିଜର ଅଭିଜ୍ଞତାରୁ ବୁଝିଥିଲେ ଯେ ରାଜ୍ୟବାସୀଙ୍କ ଦାରିଦ୍ର୍ୟ ଦୂର କରିବା ପାଇଁ କୃଷି, ଶିଳ୍ପ ଓ ଶିକ୍ଷାକୁ ପ୍ରାଧାନ୍ୟ ଦେବାକୁ ପଡ଼ିବ। ସେଥିପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ।

କଟକରେ ଓକିଲାତି କରି ସାରା ଓଡ଼ିଶାରେ ଚହଳ ପକାଇ ଦେଇଥିଲେ ମଧ୍ୟ ସେହି ସଫଳତାରେ ସେ ସୁଖୀ ହୋଇପାରୁ ନଥିଲେ। ଓଡ଼ିଶାବାସୀଙ୍କ ମଧ୍ୟରେ ନବଜାଗରଣ କିପରି ଅଣାଯାଇପାରିବ ସେ ବିଷୟରେ ସେ ଗଭୀର ଭାବରେ ଚିନ୍ତାମଗ୍ନ ରହୁଥିଲେ। ମଧୁବାବୁ ଓଡ଼ିଆମାନଙ୍କୁ ସବୁକ୍ଷେତ୍ରରେ ଉତ୍ସାହିତ କଲେ। ସେ ଡାକରା ଦେଇଥିଲେ, ସାହସର ସହିତ ନିଜ ହାରିଗୁହାରି ପଦସ୍ଥ କର୍ମଚାରୀମାନଙ୍କୁ ଶୁଣାଅ ଓ ନିଜର ନ୍ୟାୟୋଚିତ ଦାବି ପୂରଣ ଲାଗି ନିର୍ଭୟରେ ମତବ୍ୟକ୍ତ କର।

ଆଇନଜୀବୀମାନଙ୍କର ସମାଜରେ ଏକ ସମ୍ମାନନୀୟ ସ୍ଥାନ ରହିଛି । ସେମାନେ ଦେଶରେ ପ୍ରଚଳିତ ଆଇନର ବିଶ୍ଳେଷଣ କରି ଅଦାଲତରେ ନାଗରିକଙ୍କୁ ସେମାନଙ୍କ ଅଧିକାର ସାବ୍ୟସ୍ତ କରିବା ପାଇଁ ସୁଯୋଗ ଦେଇଥାନ୍ତି । କିନ୍ତୁ ସାଧାରଣତଃ ଆଇନଜୀବୀମାନେ ନିଜ କାର୍ଯ୍ୟକୁ ନ୍ୟାୟାଳୟ ମଧ୍ୟରେ ସୀମିତ ରଖୁଛନ୍ତି । ଆଇନଜୀବୀଙ୍କ ଭଳି ଏକ ସଚେତନ ବୁଦ୍ଧିଜୀବୀ ଗୋଷ୍ଠୀ ଯଦି ନିଜର ସୀମିତ ପରିସର ଭିତରୁ ବାହାରି ଆସି ମଧୁବାବୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସମାଜରେ ଏକ ଜନଚେତନା ସୃଷ୍ଟି କରନ୍ତେ ତେବେ ଓଡ଼ିଶାର ଦରିଦ୍ର ଜନସାଧାରଣ ବହୁଭାବରେ ଲାଭବାନ ହୁଅନ୍ତେ । ମଧୁସୂଦନ ଦାସଙ୍କର ଗରିବ ମହକିଲମାନଙ୍କ ପ୍ରତି ସମ୍ବେଦନଶୀଳତା ବିଷୟରେ ଏଠାରେ ଏକ ଉଦାହରଣ ଦେବା ସମୀଚୀନ ହେବ । ପୁରୀ ସହରର ଜନୈକ ଧନୀ ମହନ୍ତ ଜଣେ ଗରିବ ଚାଷୀ ବିରୁଦ୍ଧରେ ମକଦ୍ଦମାଟିଏ କରିଥିଲେ । ସେ ନିଜ ଧନ ବଳରେ ଏମିତି ଏକ ଚକ୍ରବ୍ୟୂହ ରଚନା କରିଥିଲେ ଯେ ଯେମିତି କୌଣସି ବି ଓକିଲ ସେହି ଗରିବ ଚାଷୀଟି ସପକ୍ଷରେ ଲଢ଼ିପାରିବେ ନାହିଁ । ସେଥିପାଇଁ ସେ ତାଙ୍କ ଲ' ଏଜେଣ୍ଟଙ୍କ ଜରିଆରେ ଗୋଟିଏ ଓକାଲତନାମାରେ ସବୁ ଓକିଲଙ୍କଠାରୁ ଦସ୍ତଖତ କରାଇ ନେଉଥାନ୍ତି । ଲ' ଏଜେଣ୍ଟ ଜଣକ ସବୁ ବଙ୍ଗାଳୀ ଓକିଲଙ୍କଠାରୁ ଦସ୍ତଖତ ନେଇସାରି ଶେଷରେ ମଧୁସୂଦନଙ୍କ ନିକଟରେ ପହଞ୍ଚିଲେ । ମଧୁସୂଦନ ସେତେବେଳେ ଜଣେମାତ୍ର ଓଡ଼ିଆ ଓକିଲ ଥିଲେ । ଲ' ଏଜେଣ୍ଟ ଭାବିଲେ ଏହି ଓଡ଼ିଆ ଓକିଲଟା କାହିଁକି ବାଦ୍ ପଡ଼ିବ । ଏହାଠାରୁ ବି ଦସ୍ତଖତଟିଏ କରାଇ ନେବା । ପ୍ରତିବାଦୀ ଗରିବ ଚାଷୀଟି ନିଜ ସପକ୍ଷରେ ଲଢ଼ିବା ପାଇଁ ଗୋଟିଏ ବି ଓକିଲ ପାଇଲା ନାହିଁ । କିନ୍ତୁ ମଧୁବାବୁ ସେ ଲ' ଏଜେଣ୍ଟଙ୍କୁ କହିଲେ, ଆପଣ ତ ନିଜପାଇଁ ଅଦାଲତର ସମସ୍ତ ଓକିଲଙ୍କୁ କିଣିନେଲେଣି, ଅନ୍ତତଃ ସେହି ଗରିବ ଚାଷୀଟି ପାଇଁ ଏହି ନୂଆ ଓକିଲଟାକୁ ଛାଡ଼ି ଦିଅନ୍ତୁ । ମହନ୍ତ ବି ଚିନ୍ତାକଲେ ତାଙ୍କ ପାଖରେ ଅଦାଲତର ସବୁ ବଛାବଛା ଓକିଲ, ଏହି ଓଡ଼ିଆକୁ ନ ନେଲେ କ'ଣ ମାମଲା ବଳେଇଯିବ । ହେଲେ ବିଧିର ବିଧାନ ଭିନ୍ନ ଥିଲା । କଟକର ସବୁ ଓକିଲଙ୍କ ବିରୋଧରେ ଠିଆହୋଇ ମଧୁବାବୁ କେସ୍ ଲଢ଼ିଲେ, ଆଉ ଅବଶେଷରେ ଜିତାପଟ ଗରିବ ଚାଷୀଟିର ହିଁ ହେଲା । ଏହି ଘଟଣା ପରେ ମଧୁସୂଦନ ଆଉ ନୂଆ କିମ୍ବା ଅଜଣା ହୋଇ ରହିଲେ ନାହିଁ । ଚାହୁଁ ଚାହୁଁ ତାଙ୍କର ଖ୍ୟାତି ଆକାଶଛୁଆଁ ହୋଇଗଲା । ତାଙ୍କ ନିକଟକୁ ମାଲିମକଦ୍ଦମାର ସୁଅ ଛୁଟିଲା । ସେ ବହୁ ଅର୍ଥ ଉପାର୍ଜନ କଲେ । କିନ୍ତୁ ସେହି ଅର୍ଥ ସବୁ ଓଡ଼ିଶାର ଜନସାଧାରଣଙ୍କ ହିତରେ ଖର୍ଚ୍ଚ କରୁଥିଲେ ।

ମହିଳାମାନଙ୍କର ସର୍ବାଙ୍ଗୀନ ପ୍ରଗତି ପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ। ମହିଳାମାନଙ୍କ ପାଇଁ ପୂର୍ବରୁ ଆଇନ ବ୍ୟବସାୟ କରିବାର ବ୍ୟବସ୍ଥା ନଥିଲା। କଲିକତା ବିଶ୍ୱବିଦ୍ୟାଳୟରୁ ବି.ଏଲ୍ ଡିଗ୍ରୀ ହାସଲ କରିଥିବା ସୁଧାଂଶୁବାଳା ହାଜରା ଆଇନ ବ୍ୟବସାୟ କରିବାକୁ ତାଙ୍କୁ ଅନୁମତି ଦିଆଯାଉ ବୋଲି ପ୍ରାର୍ଥନା କରିଥିଲେ। ତାଙ୍କୁ ଅନୁମତି ଦିଆଯାଇ ନଥିଲା। ମଧୁସୂଦନ ଦାସଙ୍କର ନିରନ୍ତର ଚେଷ୍ଟା ଫଳରେ 'ଇଣ୍ଡିଆନ ଲିଗାଲ ପ୍ରାକ୍ଟିସନର୍ସ ଆକ୍ଟ-୧୮୭୯'ର ସଂଶୋଧନ କରାଗଲା ଏବଂ ମହିଳାମାନେ ଓକିଲାତି କରିବାର ସୁଯୋଗ ପାଇଲେ। ସୁଧାଂଶୁବାଳା ହାଜରା ଭାରତର ପ୍ରଥମ ମହିଳା ଓକିଲ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ।

ବର୍ତ୍ତମାନ ଓଡ଼ିଶାରେ ଜନସାଧାରଣ ବହୁ ସମସ୍ୟାର ସମ୍ମୁଖୀନ ହେଉଛନ୍ତି। ସେମାନଙ୍କୁ ସହାୟତାର ହାତ ବଢ଼ାଇବା ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି। ସରକାରୀ କର୍ମଚାରୀମାନଙ୍କର ହୃଦୟହୀନତା ଓ ଶିକ୍ଷିତ ବ୍ୟକ୍ତିମାନଙ୍କର ଉଦାସୀନତା ରାଜ୍ୟର ପ୍ରଗତିରେ ସ୍ଥାଣୁତା ସୃଷ୍ଟି କରୁଛି। ଗାଁଗହଳିରେ ଏବେ ବି ଲୋକେ ଅନାହାରରେ ମରୁଛନ୍ତି। ପ୍ରତିଦିନ ସମ୍ବାଦପତ୍ରର ପୃଷ୍ଠା ଲେଉଟାଇଲେ ତହସିଲସ୍ତରରୁ ଆରମ୍ଭ କରି ସଚିବାଳୟ ପର୍ଯ୍ୟନ୍ତ ସରକାରୀ କର୍ମଚାରୀମାନଙ୍କର ଅମାନବିକ ବ୍ୟବହାର, ନିଷ୍କ୍ରିୟତା ବିଷୟରେ ଖବରମାନ ଦୃଷ୍ଟିଗୋଚର ହେଉଛି। ଏ ବିଷୟ ଆଇନଜୀବୀମାନେ ବ୍ୟକ୍ତିଗତ ଭାବରେ କିମ୍ବା ସେମାନଙ୍କର ସଂଗଠନ ମାଧ୍ୟମରେ ଅଦାଲତର ଦୃଷ୍ଟିକୁ ଆଣି ତାହାର ପ୍ରତିକାର କରିପାରନ୍ତେ। କିନ୍ତୁ ସାଧାରଣତଃ ସେମାନେ ତାହା କରୁନାହାଁନ୍ତି। ଯଦି କୌଣସି ଆଇନଜୀବୀ ଉପରେ ଆକ୍ରମଣ ହେଉଛି ତେବେ ସେମାନେ ରାଜରାସ୍ତାକୁ ଆସି ଏ ବିଷୟରେ ପ୍ରତିବାଦ କରୁଛନ୍ତି ଏବଂ କାର୍ଯ୍ୟବନ୍ଦ ଆନ୍ଦୋଳନ ଆରମ୍ଭ କରୁଛନ୍ତି। ଯାହାଦ୍ୱାରା ସାଧାରଣ ବ୍ୟକ୍ତିମାନେ ଅସୁବିଧାର ସମ୍ମୁଖୀନ ହେଉଛନ୍ତି। ଓଡ଼ିଶାରେ ଲକ୍ଷଲକ୍ଷ ଲୋକ ଚିଟ୍‌ଫଣ୍ଡରେ ଅର୍ଥ ନିୟୋଜିତ କରି କ୍ଷତିଗ୍ରସ୍ତ ହେଲେ। ମୂଳରୁ ଏହି ଚିଟ୍‌ଫଣ୍ଡ କମ୍ପାନୀର କାର୍ଯ୍ୟ ଉପରେ ପିଆଇଏଲ୍ ଦାୟର କରି ଯଦି ଆଇନଜୀବୀମାନେ ଅଙ୍କୁଶ ଲଗାଇ ପାରିଥାନ୍ତେ, ତେବେ ସାଧାରଣ ଜନତା ଉପକୃତ ହୋଇଥାନ୍ତେ।

ପ୍ରତିବର୍ଷ ଆମ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଋଣଯନ୍ତାରେ ପଡ଼ି ଚାଷୀମାନେ ଆତ୍ମହତ୍ୟା କରୁଛନ୍ତି, ଏହା ସମସ୍ତଙ୍କର ହୃଦ୍‌ବୋଧ ହେଉଛି। କିନ୍ତୁ ସରକାରୀ ଅଫିସରମାନେ ଏହାକୁ ମାନିବାକୁ ପ୍ରସ୍ତୁତ ନୁହଁନ୍ତି। ଆଇନଜୀବୀମାନେ ନିଜ ଅଞ୍ଚଳରେ ଘଟୁଥିବା ଏଭଳି ଦୁଃଖଦ ଘଟଣାର ପ୍ରକୃତ ତଥ୍ୟ ଲୋକଲୋଚନକୁ ଆଣିବାରେ

ସହାୟକ ହୋଇପାରନ୍ତେ। ଚାଷୀଙ୍କ ପ୍ରତି ହେୟଜ୍ଞାନ ଏଭଳି ସ୍ତରରେ ପହଞ୍ଚିଲାଣି ଯେ ସେମାନଙ୍କ ଆତ୍ମହତ୍ୟାକୁ ଏକ ରାଜନୈତିକ ରୂପ ଦେବାକୁ ମଧ୍ୟ କ୍ଷମତାସୀନ ବ୍ୟକ୍ତିମାନେ ପଛାଉ ନାହାଁନ୍ତି।

ବର୍ତ୍ତମାନ ଆମ ରାଜ୍ୟରେ ଦରିଦ୍ର ଲୋକମାନେ ସମ୍ମୁଖୀନ ହେଉଥିବା ବିଭିନ୍ନ ସମସ୍ୟାଗୁଡ଼ିକ ଆଇନଜୀବୀମାନଙ୍କ ହୃଦୟକୁ ଆନ୍ଦୋଳିତ କରୁ। ଆମେ ଆଶା କରିବା ଯେ ମଧୁସୂଦନ ଦାସଙ୍କ ସ୍ମୃତି ଉଦ୍ଦେଶ୍ୟରେ ଯେଉଁ 'ଆଇନଜୀବୀ ଦିବସ' ପ୍ରତିବର୍ଷ ପାଳିତ ହେଉଛି ତାକୁ କେବଳ ଔପଚାରିକ ନ କରି ସେ ସୃଷ୍ଟି କରିଥିବା ଆଦର୍ଶରେ ଅନୁପ୍ରାଣିତ ହୋଇ ଆଇନଜୀବୀମାନେ ଓଡ଼ିଶାକୁ ଘେରି ରହିଥିବା ସମସ୍ୟାରୁ ମୁକ୍ତ କରି ଉନ୍ନତି ପଥରେ ଆଗେଇ ନିଅନ୍ତୁ।

*ସମ୍ବାଦ - ୨୮.୪.୨୦୧୭*

# ଚୀନ-ଭାରତ ତିକ୍ତତାର ପରିଣତି ଯୁଦ୍ଧ ?

ଭାରତ ସରକାର ୧୪ ଜୁଲାଇରେ ଏକ ସର୍ବଦଳୀୟ ବୈଠକ ଡାକି ଚୀନ ସିକିମ ସୀମାରେ ସୃଷ୍ଟି କରିଥିବା ଉତ୍ତେଜନା ସମ୍ପର୍କରେ ତିନିଘଣ୍ଟା ଧରି ଆଲୋଚନା କରିଥିଲେ । ଖୁସିର କଥା ଯେ ବିରୋଧୀଦଳର ସଦସ୍ୟମାନେ ସରକାରଙ୍କ ଆଭିମୁଖ୍ୟକୁ ସମର୍ଥନ କରି ଦେଶର ସୁରକ୍ଷା ଓ ଜାତୀୟ ଏକତା ବଜାୟ ରଖିବାକୁ ପ୍ରତିଶ୍ରୁତିବଦ୍ଧ ବୋଲି ସୂଚାଇ ଥିଲେ । ଚୀନ-ଭାରତ ତିକ୍ତତା ହ୍ରାସ ପାଉ ନ ଥିଲାବେଳେ ସରକାରଙ୍କର ହାତମୁଠା ଟାଣ କଲାଭଳି ଏହି ସମ୍ବାଦ ଦେଶବାସୀଙ୍କୁ ଆଶ୍ୱସ୍ତ କରିଛି । କିନ୍ତୁ ପ୍ରତିରକ୍ଷା ମନ୍ତ୍ରଣାଳୟ ବର୍ତ୍ତମାନ ପରିସ୍ଥିତିରେ ଅତ୍ୟନ୍ତ ଗୁରୁତ୍ୱ ବହନ କରୁଥିଲେ ମଧ୍ୟ ସେହି ବିଭାଗରେ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ଜଣେ ସ୍ୱତନ୍ତ୍ର ପ୍ରତିରକ୍ଷା ମନ୍ତ୍ରୀ ନିଯୁକ୍ତ ନ କରିବା ସାଧାରଣ ଲୋକଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରୁଛି ।

ମାଓ ସେ ତୁଙ୍ଗ ଚୀନର ସର୍ବମୟ କର୍ତ୍ତା ହେବାପରେ ଚୀନ ଓ ଭାରତ ମଧ୍ୟରେ ବନ୍ଧୁତା କେବଳ କଥାରେ ହିଁ ସୀମିତ ରହିଛି । ଭାରତ ଓ ଚୀନ ମଧ୍ୟରେ ଅବସ୍ଥିତ କ୍ଷୁଦ୍ର ନିରପେକ୍ଷ ଶାନ୍ତିପ୍ରିୟ ଦେଶ ତିବ୍‌ବତକୁ ୧୯୪୯ ମସିହାରେ ଚୀନ ବଳପୂର୍ବକ ନିଜର ଅକ୍ତିଆରକୁ ନେଲାବେଳେ ଭାରତ ନୀରବଦ୍ରଷ୍ଟା ହୋଇ ରହିଥିଲା, ଯାହାର କୁଫଳ ଭାରତକୁ ଚିରକାଳ ଭୋଗିବାକୁ ପଡୁଛି । ସେତେବେଳେ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କର ଅତ୍ୟଧିକ ଚୀନପ୍ରୀତି ଯୋଗୁଁ ଚୀନ ଅକ୍ଳେଶରେ କ୍ଷୁଦ୍ରଦେଶ ତିବ୍‌ବତକୁ ଅକ୍ତିଆର କଲା । ତିବ୍‌ବତକୁ କରାଗତ କଲାପରେ ମାଓ ସେ ତୁଙ୍ଗ୍ ଉତ୍‌ଫୁଲ୍ଲିତ ହୋଇ କହିଥିଲେ ଯେ, ତିବ୍‌ବତ ଯଦି ହାତର ପାପୁଲି ହୁଏ, ତେବେ ପାଞ୍ଚୋଟି ଆଙ୍ଗୁଳି ହେଲା ଲଦାଖ, ନେପାଳ, ସିକିମ, ଭୁଟାନ ଓ ଅରୁଣାଚଳ ପ୍ରଦେଶ । ଚୀନ ଯେପର୍ଯ୍ୟନ୍ତ ଏହି ରାଜ୍ୟଗୁଡ଼ିକୁ ନିଜ ଅକ୍ତିଆରକୁ ନ ଆଣିଛି ସେପର୍ଯ୍ୟନ୍ତ ନିଶ୍ଚିନ୍ତରେ ବସିପାରିବ ନାହିଁ । ସେହି ଅଭିଳାଷକୁ ଚୀନ ସରକାର ପୂରଣ କରିବାକୁ ସବୁବେଳେ ଲାଗିପଡ଼ିଛି ।

୧୯୬୨ ମସିହାରେ ଚୀନ ଓ ଭାରତ ମଧ୍ୟରେ ହୋଇଥିବା ଯୁଦ୍ଧରେ ଭାରତର ଲଜ୍ଜାଜନକ ପରାଜୟ ପରେ ଚୀନ ଆମ ଦେଶର ଲଦାଖର ଅକ୍‌ସାଇ-ଚୀନ ଅଞ୍ଚଳ

(୩୮,୦୦୦ ବର୍ଗକିଲୋମିଟର)କୁ ବଳପୂର୍ବକ ଦଖଲ କରି ରଖିଛି। ଅରୁଣାଚଳ ପ୍ରଦେଶର ୯୦,୦୦୦ ବର୍ଗକିଲୋମିଟର ଅଞ୍ଚଳକୁ ଚୀନ ନିଜର ଅଞ୍ଚଳ ବୋଲି ଦାବୀ କରୁଛି। ଭାରତ ଓ ଚୀନ ମଧ୍ୟରେ ୩,୫୦୦ କିଲୋମିଟର ସୀମାନ୍ତ ରହିଛି। ଚୀନ ସବୁବେଳେ କିଛିନା କିଛି ଆଳ ଦେଖାଇ ଏହି ସୀମାନ୍ତ ଅଞ୍ଚଳରେ ରହିଥିବା ସ୍ଥିତାବସ୍ଥାକୁ ବଦଳାଇବାକୁ ବଳପ୍ରୟୋଗ କରୁଛି। ୧୯୬୭ ମସିହାରେ ସିକିମର ନାଥୁଲା ନିକଟବର୍ତ୍ତୀ ଅଞ୍ଚଳକୁ ଚୀନ ଦଖଲ କରିବାକୁ ଚେଷ୍ଟା କରିଥିଲା ଓ ଭାରତୀୟ ସେନା ଏହାର ଦୃଢ଼ ପ୍ରତିରୋଧ କରିଥିଲେ ଏବଂ ଘମାଘୋଟ ଲଢ଼େଇରେ ଚୀନର ୪୦୦ ସେନା ନିହତ ହୋଇଥିଲେ ଓ ଭାରତର ୪୦ଜଣ ସୈନିକ ସହିଦ୍ ହୋଇଥିଲେ।

ବର୍ତ୍ତମାନ ସେହି ସଂଘର୍ଷ ସ୍ଥାନଠାରୁ ଅଳ୍ପ ଦୂରରେ ଭାରତ ସୀମାନ୍ତରେ ସିକିମ, ଭୁଟାନ ଓ ତିବ୍‌ବତକୁ ଯୋଡୁଥିବା ତ୍ରିଛକ ଅଞ୍ଚଳ ଡୋକଲାମ ନିକଟରେ ୮ ଜୁନ୍ ୨୦୧୭ରେ ଚୀନ ସେନାଙ୍କ ରାସ୍ତା ନିର୍ମାଣକୁ ନେଇ ବିବାଦୀୟ ପରିସ୍ଥିତି ଉପୁଜିଛି। ଏହି ଡୋକଲାମ ଅଞ୍ଚଳଟି ଭୁଟାନ ଦେଶର ଏକ ଅଂଶ। ଭୁଟାନ ରୟାଲ ସେନାବାହିନୀ ଏହି ରାସ୍ତା ନିର୍ମାଣକୁ ବିରୋଧ କରିବାରୁ ଚୀନ ସୈନ୍ୟ ସେମାନଙ୍କୁ ସେଠାରୁ ତଡ଼ି ଦେଇଛନ୍ତି। ଭୁଟାନର ବୈଦେଶିକ ଓ ପ୍ରତିରକ୍ଷା ଦାୟିତ୍ୱ ଭାରତର। ଡୋକଲାମ ଅଞ୍ଚଳରେ ଚୀନର ଅନଧିକାର ପ୍ରବେଶ ଉଭୟ ଭୁଟାନ ଓ ଭାରତ ପ୍ରତି ବିପଦ ସୃଷ୍ଟି କରିବ। ତେଣୁ ଭାରତ ଚୀନ ଚାପରେ ଭୟଭୀତ ହୋଇ ଡୋକଲାମ ଅଞ୍ଚଳରେ ଚୀନକୁ କେବେବି ପୂରାଇ ଦେବନାହିଁ।

ଚୀନ ଭୁଟାନର ୮୯ ବର୍ଗକିଲୋମିଟର ଅଞ୍ଚଳ 'ଡୋକଲାମ' ଜବରଦସ୍ତ ଦଖଲ କରିବାକୁ ଚେଷ୍ଟା କରୁଛି। ଭାରତୀୟ ସୈନ୍ୟବାହିନୀ, ଭୁଟାନ ଓ ଭାରତ ମଧ୍ୟରେ ୧୯୪୯ ମସିହାରେ ହୋଇଥିବା ଚୁକ୍ତି ଅନୁଯାୟୀ, ଭୁଟାନକୁ ସାହାଯ୍ୟ କରିବାକୁ ସେଠାରେ ଉପସ୍ଥିତ ହୋଇଛନ୍ତି। ଚୀନ ସରକାର ଭାରତର ଏହି କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କରି କୈଳାସ ମାନସରୋବରକୁ ତୀର୍ଥଯାତ୍ରୀମାନଙ୍କୁ ନାଥୁଲା ବାଟ ଦେଇ ଯିବାରେ ପ୍ରତିବନ୍ଧକ ସୃଷ୍ଟି କରିଛି ଏବଂ ଭାରତୀୟ ସାମ୍ବାଦିକମାନଙ୍କୁ ତିବ୍‌ବତ ଅଞ୍ଚଳକୁ ଯିବାକୁ ବାରଣ କରିଛି। ଦିଲ୍ଲୀସ୍ଥିତ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଚାଇନିଜ୍ ଷ୍ଟଡିଜ୍‌ର ନିର୍ଦ୍ଦେଶକ ଅଶୋକ କାନ୍ଥା କହିଛନ୍ତି, ଚୀନ ଓ ଭୁଟାନ ମଧ୍ୟରେ କୂଟନୈତିକ ସମ୍ପର୍କ ନ ଥିଲେ ମଧ୍ୟ ଅନ୍ୟ ବିବାଦୀୟ ଅଞ୍ଚଳ ଓ ଡୋକଲାମ ବିଷୟରେ ସେହି ଦୁଇଦେଶ ମଧ୍ୟରେ ୨୪ଥର ଆଲୋଚନା ହୋଇଛି ଏବଂ ୧୯୯୮ ମସିହାରେ ଦୁଇଦେଶ

ସୀମାନ୍ତରେ ସ୍ଥିତାବସ୍ଥା ବଜାୟ ରଖିବେ ବୋଲି ରାଜି ହୋଇଥିଲେ। କିନ୍ତୁ ପୁନର୍ବାର ଡୋକଲାମରେ ବିବାଦ ସୃଷ୍ଟି କରି ଚୀନ ସେହି ଅଞ୍ଚଳକୁ ଦଖଲ କରିନେବା ମତଲବରେ ରହିଛି। ଡୋକଲାମ ମାଳ ଅଞ୍ଚଳ – ଭାରତର ସୁରକ୍ଷା ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ। ଚୀନ ଏହି ଡୋକଲାମ ଅଞ୍ଚଳ ଦଖଲ କଲେ ଭାରତ ଭିତରକୁ ପଶିଆସିବାକୁ ତାକୁ ସୁବିଧାଜନକ ହେବ। ଭାରତ ସରକାର ବର୍ତ୍ତମାନ ପରିସ୍ଥିତିରେ ଅତ୍ୟନ୍ତ ସତର୍କତା ଓ ଦୃଢ଼ତାର ସହିତ ଚୀନର ଦାଦାଗିରିକୁ ଜବାବ ଦେବା ଉଚିତ ହେବ। ଭାରତ ଓ ଭୁଟାନ ମଧ୍ୟରେ ୨୦୦୭ ମସିହାରେ ହୋଇଥିବା ଚୁକ୍ତି ଅନୁଯାୟୀ ସେମାନେ ପରସ୍ପରର ଜାତୀୟ ସୁରକ୍ଷାକୁ ବିପଦ ସୃଷ୍ଟି କରୁଥିବା ଯେକୌଣସି ପ୍ରଚେଷ୍ଟାକୁ ପ୍ରତିହତ କରିବେ।

ଚୀନ ଭୁଟାନର ବନ୍ଧୁତ୍ୱ ହାସଲ କରିବାକୁ ସାଂସ୍କୃତିକ ଓ ଧାର୍ମିକ ଦିଗରୁ ମଧ୍ୟ ଜୋରଦାର ଚେଷ୍ଟା କରୁଛି। ଅତି ନିକଟରେ ଡକ୍ଟର ଜିଆଙ୍ଗ ୟିଲି, ଭାରତରେ ନିଯୁକ୍ତ ଥିବା ଚୀନର ରାଷ୍ଟ୍ରଦୂତ ଲାଓ ଝାଓହୁଇଙ୍କ ସ୍ତ୍ରୀ, ଭୁଟାନ ଯାଇ ସେଠାକାର ରାଜମାତାଙ୍କ ସହିତ ମହାଯାନ ବୌଦ୍ଧଧର୍ମ ସଂପର୍କରେ ଆଲୋଚନା କରିଥିଲେ। ଅନ୍ତର୍ନିହିତ ଉଦ୍ଦେଶ୍ୟ ହେଲା ଚୀନ ଓ ଭୁଟାନ ମଧ୍ୟରେ ଧର୍ମ ଓ ସଂସ୍କୃତିକୁ ନେଇ ଘନିଷ୍ଠ ବନ୍ଧୁତା ସୃଷ୍ଟି କରିବା।

ତିବ୍ବତ, ଭୁଟାନ ଓ ସିକିମର ତ୍ରିସଂଯୋଗସ୍ଥଳ ଡୋକଲାମଠାରେ ଭାରତ ଓ ଚୀନ ସେନା ଏକମାସରୁ ଉର୍ଦ୍ଧ୍ୱକାଳ ଧରି ମୁହାଁମୁହିଁ ହୋଇ ରହିଛନ୍ତି। ଚୀନ ଜାରି ରହିଥିବା ସ୍ଥିତାବସ୍ଥାକୁ ଉଲ୍ଲଙ୍ଘନ କରି ଭୁଟାନ ଅଞ୍ଚଳକୁ ଅକ୍ତିଆର କରିବାକୁ ତିବ୍ବତରେ ସୈନ୍ୟବାହିନୀ ଠୁଳ କରି ସେଠାରେ ଭାରତ ଆକ୍ରମଣ କରିବାକୁ ପ୍ରସ୍ତୁତି ଆରମ୍ଭ କରିଛି। ଚୀନ ସିକିମକୁ ସ୍ୱାଧୀନ ରାଷ୍ଟ୍ର କରିବାକୁ ମଧ୍ୟ ଦାବୀ କରିଛି। ୧୯୭୫ ମସିହାରେ ସିକିମର ଭାରତ ସହିତ ମିଶ୍ରଣ ଚୂଡ଼ାନ୍ତ ହୋଇଥିଲା ଏବଂ ଏହା ଭାରତର ଏକ ଅବିଚ୍ଛେଦ୍ୟ ଅଙ୍ଗ ରୂପେ ବିବେଚିତ ହୋଇଆସିଛି। ଚୀନ ମଧ୍ୟ ୨୦୦୩ ମସିହାରୁ ଭାରତ ସହିତ ସିକିମର ମିଶ୍ରଣକୁ ବୈଧୟିକ ବୋଲି ସ୍ୱୀକୃତି ଦେଇଛି। ତଥାପି କଣ୍ଟାବାଡ଼ରେ ଲୁଗା ପକାଇ କଳି କରିବା ଉଦ୍ଦେଶ୍ୟରେ କମ୍ୟୁନିଷ୍ଟ ପାର୍ଟି ଅଫ୍ ଚାଇନାର ଦୈନିକ ସମ୍ବାଦପତ୍ର *Global Times* ତାର ସଂପାଦକୀୟରେ ଲେଖିଛି ଯେ, ନୂଆଦିଲ୍ଲୀକୁ ବାଟକୁ ଆଣିବାକୁ ହେଲେ ସିକିମ ସ୍ୱାଧୀନତା ପ୍ରସଙ୍ଗକୁ ଉଠାଇ ଭାରତରୁ ପୃଥକ ହୋଇଯିବାକୁ ଯେଉଁ କେତେକ ମୁଷ୍ଟିମେୟ ସିକିମବାସୀ ଚାହୁଁଛନ୍ତି ସେମାନଙ୍କୁ ଦୃଢ଼ ସମର୍ଥନ ଜଣାଇବ।

୫ ଜୁଲାଇରେ ଭାରତରେ ଅବସ୍ଥାପିତ ଚୀନର ରାଷ୍ଟ୍ରଦୂତ ଲାଓ ଝାଓହୁଇ କହିଛନ୍ତି, ଡୋକଲାମଠାରେ ଉପୁଜିଥିବା ପରିସ୍ଥିତି ପାଇଁ ଭାରତ ସମ୍ପୂର୍ଣ୍ଣ ଦାୟୀ। ସେଠାରୁ ଭାରତ ତୁରନ୍ତ ସୈନ୍ୟ ପ୍ରତ୍ୟାହାର କରିବାକୁ ସେ ଦାବୀ କରିଛନ୍ତି। ନଚେତ ଚୀନ ସାମରିକ ପନ୍ଥା ଅବଲମ୍ବନ କରିବାକୁ ବାଧ୍ୟ ହେବ। ଜୋରଜବରଦସ୍ତ ବଳ ପ୍ରୟୋଗ କରି ଓ ଧମକ ଦେଇ ପଡ଼ୋଶୀମାନଙ୍କୁ ଭୟଭୀତ କରିବା ଚୀନର ଅଘୋଷିତ ରାଷ୍ଟ୍ରନୀତି। କେବଳ ଭାରତ ନୁହେଁ, ତାର ୧୮ଟି ପଡ଼ୋଶୀ ଦେଶ ସହ ଚୀନ ସୀମା ବିବାଦରେ ଲିପ୍ତ ରହିଛି। ଭାରତ ସରକାର ଏପର୍ଯ୍ୟନ୍ତ ଚୀନ ଧମକରେ ଡରିଯାଇ ନାହାଁନ୍ତି। ଭାରତର ପ୍ରତିରକ୍ଷା ମନ୍ତ୍ରୀ ଦାୟିତ୍ୱରେ ଥିବା ଅରୁଣ ଜେଟଲୀ ଚୀନର ଧମକ ପ୍ରସଙ୍ଗରେ ମନ୍ତବ୍ୟ ଦେଇ କହିଛନ୍ତି ଯେ ଭାରତ ଆଉ ୧୯୬୨ ସ୍ଥିତିରେ ନାହିଁ। ବିଗତ ୫୫ ବର୍ଷ ମଧ୍ୟରେ ଭାରତର ସାମରିକ ଶକ୍ତି ଯଥେଷ୍ଟ ବୃଦ୍ଧି ପାଇଛି ଏବଂ ଯେକୌଣସି ବାହ୍ୟ ଆକ୍ରମଣର ମୁକାବିଲା କରିବାକୁ ଭାରତ ସକ୍ଷମ ବୋଲି ସେ ଦୃଢ଼ତାର ସହ କହିଛନ୍ତି। ଏହାର ଜବାବରେ ଚୀନ ଭାରତକୁ ସତର୍କ କରିଦେଇ ଚୀନର ସମ୍ବାଦପତ୍ର *Global Times* ଲେଖିଛି ଯେ ଯଦି ଭାରତୀୟ ସୈନ୍ୟ ଡୋକଲାମ ଅଞ୍ଚଳରୁ ପଛକୁ ନ ହଟନ୍ତି ତେବେ ସେମାନଙ୍କୁ ୧୯୬୨ ମସିହାରେ ହୋଇଥିବା କ୍ଷତିଠାରୁ ବହୁ ଅଧିକ କ୍ଷତି ସହିବାକୁ ପଡ଼ିବ। ଚୀନର ଅନ୍ୟ ଏକ ସମ୍ବାଦପତ୍ର *China Daily* ତାର ସମ୍ପାଦକୀୟରେ ଭାରତକୁ ସୀମାରୁ ସୈନ୍ୟ ପ୍ରତ୍ୟାହାର କରିବାକୁ ଧମକ ଦେଇଛି।

ବର୍ତ୍ତମାନର ରାଷ୍ଟ୍ରପତି ପ୍ରଣବ ମୁଖାର୍ଜୀ ବୈଦେଶିକ ମନ୍ତ୍ରୀ (୨୦୦୬-୨୦୦୯) ଥିଲାବେଳେ ପାର୍ଲିଆମେଣ୍ଟରେ ଚୀନ ଅରୁଣାଚଳ ପ୍ରଦେଶରୁ ଏବଂ ଜାମ୍ମୁ ଓ କାଶ୍ମୀରର ବହୁ ଅଞ୍ଚଳ ଦଖଲ କରିବାକୁ ଯୋଜନା କରୁଛି ବୋଲି ବୟାନ ଦେଇଥିଲେ। ସେହି ପରିସ୍ଥିତିର ବର୍ତ୍ତମାନ କୌଣସି ପରିବର୍ତ୍ତନ ଘଟିନାହିଁ। ତେଣୁ ଭାରତକୁ ଯେକୌଣସି ପ୍ରକାରେ ଯୁଦ୍ଧକୁ ଟାଣି ନିଜର ସାମରିକ ସାମର୍ଥ୍ୟ ପ୍ରତିପାଦନ କରିବାକୁ ଚୀନ ଲାଗିପଡ଼ିଛି। ବର୍ତ୍ତମାନ ଭାରତ ସରକାର ନିଜ ସୈନ୍ୟବାହିନୀକୁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରିବାର ଜରୁରୀ ଆବଶ୍ୟକତା ରହିଛି। ଭାରତର ପୂର୍ବତନ ସେନାଧ୍ୟକ୍ଷ ତଥା ବର୍ତ୍ତମାନର ଭାରତ ସରକାରଙ୍କ ବୈଦେଶିକ ରାଷ୍ଟ୍ର ମନ୍ତ୍ରୀ ଜେନେରାଲ ବିଜୟ କୁମାର ସିଂହ (ସେନାଧ୍ୟକ୍ଷ ଥିଲାବେଳେ) ଗଣମାଧ୍ୟମରେ ପ୍ରକାଶ କରିଥିଲେ ଯେ ଭାରତର ଅସ୍ତ୍ରଭଣ୍ଡାରରେ ଯୁଦ୍ଧ ପରିସ୍ଥିତିର ମୁକାବିଲା କରିବାକୁ ଏକମାସ ପାଇଁ ଅସ୍ତ୍ରଶସ୍ତ୍ର ମହଜୁଦ

ରହିବା କଥା, କିନ୍ତୁ ଏବେ ସେତିକି ପରିମାଣରେ ଅସ୍ତ୍ରଶସ୍ତ୍ର ନାହିଁ। ସି.ଏ.ଜି ମଧ୍ୟ ତାଙ୍କ ରିପୋର୍ଟରେ ଏକଥା ଉଲ୍ଲେଖ କରିଥିଲେ। ବର୍ତ୍ତମାନ ଏହି ପରିସ୍ଥିତିର ସୁଧାର କେତେଦୂର ହୋଇଛି ତା'ର ସମୀକ୍ଷା ଅତ୍ୟନ୍ତ ଜରୁରୀ।

ପାକିସ୍ତାନ କାଶ୍ମୀରରେ ଚଳାଇଥିବା ଛାୟାଯୁଦ୍ଧ ଦିନକୁଦିନ ତୀବ୍ର ହେବାରେ ଲାଗିଛି। ୧୫ ଜୁଲାଇରେ ଦିଲ୍ଲୀଠାରେ କାଶ୍ମୀର ମୁଖ୍ୟମନ୍ତ୍ରୀ ମେହବୁବାମୁଫତି ଗଣମାଧ୍ୟମର ପ୍ରତିନିଧିମାନଙ୍କୁ କହିଛନ୍ତି ଯେ ଚୀନ କାଶ୍ମୀର ବ୍ୟାପାରରେ ପାକିସ୍ତାନକୁ ସକ୍ରିୟ ସହଯୋଗ ଯୋଗାଇ ଦେଉଛି। ଏହା ଅନୁମାନ କରିବା ଭୁଲ ହେବନାହିଁ ଯେ ପାକିସ୍ତାନ କିମ୍ବା ଚୀନ ସହିତ ନିକଟ ଭବିଷ୍ୟତରେ ଏକ ସୀମିତ କିମ୍ବା ଘମାଘୋଟ ଲଢ଼ାଇ ଭାରତ ଉପରେ ଲଦି ଦିଆଯିବ। ଏହିଭଳି ଅତର୍କିତ ଆକ୍ରମଣ ପାଇଁ ଭାରତର ପ୍ରସ୍ତୁତି ଯୁଦ୍ଧକାଳୀନ ଭିତ୍ତିରେ ହେବା ଆବଶ୍ୟକ, ଯାହା ଭାରତ ସରକାର କରୁନାହାଁନ୍ତି ବୋଲି ସାଧାରଣରେ ଆଲୋଚନା ହେଉଛି। ପୂର୍ବତନ ସେନାଧ୍ୟକ୍ଷ ଜେନେରାଲ ବିକ୍ରମ ସିଂହ ତାଙ୍କର ଏକ ନିବନ୍ଧ *Checkmating China*ରେ ଉଲ୍ଲେଖ କରିଛନ୍ତି ଯେ, ଆମଦେଶ ସବୁବେଳେ ଆଲୋଚନାରୁ ସୁଫଳ ପାଇବାକୁ ଆଶା ରଖିଥିଲେ ମଧ୍ୟ ଯେକୌଣସି ପରିସ୍ଥିତିର ମୁକାବିଲା ପାଇଁ ପ୍ରସ୍ତୁତ ରହିବା ଆବଶ୍ୟକ।

*ସମାଜ - ୨୧.୭.୨୦୧୭*



୧୯୩୭ ମସିହା ଡିସେମ୍ବର ୯ ତାରିଖରେ ଜଗତସିଂହପୁର ଜିଲ୍ଲା ପୁନଙ୍ଗ ଗ୍ରାମପଞ୍ଚାୟତର ମଙ୍ଗଳପୁର ଗ୍ରାମରେ ଜନ୍ମିତ **ଡକ୍ଟର ବିମଳେନ୍ଦୁ ମହାନ୍ତି** ଶିକ୍ଷା, ସଂସ୍କୃତି, ସମାଜସେବା, ପ୍ରଶାସନ, ଅଧ୍ୟାପନା ଓ ସାଙ୍ଗଠନିକ କ୍ଷେତ୍ରରେ ଜଣେ ପ୍ରତିଭାବାନ ବ୍ୟକ୍ତି ରୂପେ ସୁପରିଚିତ। ସେ ବହୁ କ୍ଷେତ୍ରରେ ପ୍ରଥମ, ଯଥା- ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି, ଜାଭିୟର୍ସ ଇନ୍ଷ୍ଟିଚ୍ୟୁଟ ଅଫ୍ ମ୍ୟାନେଜ୍‌ମେଣ୍ଟର ପ୍ରଥମ ରେଜିଷ୍ଟ୍ରାର, ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର ପ୍ରଥମ ଛାତ୍ରକଲ୍ୟାଣ ଡିନ୍ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଯୁବକଲ୍ୟାଣ ଅଧିକାରୀ। ଏହା ସହିତ ସେ ଓଡ଼ିଶା ସରକାରଙ୍କ କ୍ରୀଡ଼ା ଓ ଯୁବକଲ୍ୟାଣ ବିଭାଗର ନିର୍ଦ୍ଦେଶକ, ରାଜ୍ୟ ସଂସ୍କୃତି ବିଭାଗର ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରର ନିର୍ଦ୍ଦେଶକ, ଭାରତ ସରକାରଙ୍କର ଶିକ୍ଷା ଓ ସଂସ୍କୃତି ବିଭାଗ ଅଧୀନରେ ଜାତୀୟ ସେବା ଯୋଜନାର ଉପମୁଖ୍ୟ ପରାମର୍ଶଦାତା ଓ ଜାତୀୟ ସମର ଶିକ୍ଷାର୍ଥୀ ବାହିନୀର ମେଜର୍ ଆଦି ବହୁ ଉଚ୍ଚ ପଦପଦବୀରେ ସୁଚାରୁରୂପେ ଦାୟିତ୍ୱ ସମ୍ପାଦନ କରି ଉଚ୍ଚ ପ୍ରଶଂସିତ ହୋଇଛନ୍ତି। ଅଧୁନା ଡକ୍ଟର ମହାନ୍ତି ଭାରତ ମହାବୋଧି ସୋସାଇଟି, ଓଡ଼ିଶା ଶାଖାର ସଭାପତି ରୂପେ ଦାୟିତ୍ୱ ନିର୍ବାହ କରୁଛନ୍ତି।

ଡକ୍ଟର ମହାନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇତିହାସରେ ଏମ୍.ଏ., ଆମେରିକାର ମିସୌରୀ ବିଶ୍ୱବିଦ୍ୟାଳୟରୁ ଏମ୍.ଇଡି ଓ ରାଞ୍ଚି ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଡିଗ୍ରୀ ହାସଲ କରିଛନ୍ତି। କଟକ ଷ୍ଟୁଆର୍ଟ ସାଇନ୍ସ କଲେଜରୁ ୧୯୬୦ ଅଗଷ୍ଟ ୫ରେ ଅଧ୍ୟାପକ ରୂପେ କର୍ମଜୀବନ ଆରମ୍ଭ କରି ସେ ୪୧ ବର୍ଷକାଳ ବିଭିନ୍ନ କ୍ଷେତ୍ରରେ ସେବା ପ୍ରଦାନ କରିଛନ୍ତି। ଜଣେ ସୁବକ୍ତା, ଲେଖକ ଓ ସ୍ତମ୍ଭକାର ଭାବେ ସେ ସୁନାମ ଅର୍ଜନ କରିଛନ୍ତି।



**ତଥାଗତ ପବ୍ଲିଶର୍ସ**
୪୭, ମଧୁସୂଦନ ନଗର, ଭୁବନେଶ୍ୱର - ୭୫୧୦୦୧
E-mail : imcoindia@yahoo.com